ଜାତୀୟ ଜୀବନଚରିତ ମାଳା

# ପି.ସି. ଯୋଶୀ

ଏକ ଜୀବନୀ




ଗାର୍ଗୀ ଚକ୍ରବର୍ତ୍ତୀ

ଅନୁବାଦ

ସୌରୀବଂଧୁ କର





ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

*ପ୍ରଚ୍ଛଦ ଫଟୋ* : ସୁନୀଲ ଜାଣହା

ISBN 978-81-237-5590-8

ପ୍ରଥମ ସଂସ୍କରଣ 2009 (ଶକାବ୍ଦ 1931)



P. C. JOSHI - A BIOGRAPHY (*Oriya*)

**ଟ.50.00**

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, 5, ଇନ୍‌ଷ୍ଟିଚ୍ୟୁସ୍‌ନାଲ ଏରିଆ, ଫେଜ୍-II,
ବସନ୍ତ କୁଞ୍ଜ, ନୂଆ ଦିଲ୍ଲୀ-110070 କର୍ତ୍ତୃକ ପ୍ରକାଶିତ।

# ବିଷୟ ସୂଚୀ

# ଅଗ୍ରଲେଖ

ଜଣେ ଅଭିଜ୍ଞ ବ୍ୟକ୍ତି ଭାବରେ ୧୯୩୫ ମସିହାରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଦାୟିତ୍ୱରେ ୨୮ବର୍ଷ ବୟସ ବେଳେ ପି.ସି. ଜୋଷୀ ରହି ଏହାର ସଂଖ୍ୟା ୫୦ରୁ ଅଭିବୃଦ୍ଧି କରି ୧୯୪୭ ମସିହା ବେଳକୁ ୯୦,୦୦୦ ସଭ୍ୟରେ ପହଞ୍ଚାଇ ପାରିଥିଲେ । ଆହୁରି ଅଧିକ ଗୁରୁତ୍ୱପୂର୍ଣ୍ଣ ଯେ ସେ ଜାତୀୟ ରାଜନୀତିରେ ସିପିଆଇକୁ ଓ ତା ସହିତ କୃଷକ ଓ ଶ୍ରମିକ ଆନ୍ଦୋଳନକୁ ଶକ୍ତିଶାଳୀ ଭାବରେ ଠିଆ କରାଇ ପାରିଥିଲେ ।

ଜୋଷୀ ଥିଲେ ଏପରି ଏକ ଅସାଧାରଣ କମ୍ୟୁନିଷ୍ଟ ଯେ କି କଳାକାର, ଲେଖକ, ବୈଜ୍ଞାନିକ ଏବଂ ଅନ୍ୟାନ୍ୟ ବୁଦ୍ଧିଜୀବୀମାନଙ୍କର ସମାଜରେ ଥିବା ଭୂମିକା ସମ୍ପର୍କରେ ଅବଗତ ଥିଲେ । ସେ ଦେଶର କେତେକ ମୁଖ୍ୟ ବୁଦ୍ଧିଜୀବୀଙ୍କ ସହିତ ପାର୍ଟିର ସମ୍ପର୍କକୁ ନିବିଡ଼ କରିଥିଲେ। ସେ ଭାରତୀୟ ଗଣନାଟ୍ୟ ସଂଘ (IPTA) ପ୍ରତିଷ୍ଠା କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ସେ ବିକ୍ଷିପ୍ତ ହୋଇ ରହିଥିବା କେତେକ ଉଚ୍ଚକୋଟିର କଳାକାର, ସଙ୍ଗୀତଜ୍ଞ, ନୃତ୍ୟଶିଳ୍ପୀ/କବି, ନାଟ୍ୟକାରମାନଙ୍କୁ ଏକତ୍ରୀତ କରିଥିଲେ ଏବଂ ଏପରି ଏକ ସଂଗଠନ ଗଢ଼ିଥିଲେ ଯାହା ଅତୀତରେ ନ ଥିଲା ଏବଂ ସେବେଠାରୁ ମଧ ନାହିଁ ।

ସମୟ କ୍ରମେ ଏହା ଊର୍ଦ୍ଧ୍ୱରେ, ସେ ଭାରତୀୟ ଜାତୀୟ ଆନ୍ଦୋଳନର ଭୂମିକାକୁ ଭଲ ଭାବରେ ବୁଝିଥିଲେ ଏବଂ ସେଥିରେ ସିପିଆଇକୁ ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ଭାବରେ ପ୍ରସ୍ତୁତ କରିଥିଲେ ।

ଦୁର୍ଭାଗ୍ୟବଶତଃ, ସେ ଏକ ପ୍ରଜ୍ଞାଶୀଳ ରାଜନୈତିକ ନେତା ଭାବରେ ଠିଆ ହେବାବେଳେ ତାଙ୍କୁ ପାର୍ଟି ନେତୃତ୍ୱରୁ ଫିଙ୍ଗି ଦିଆଗଲା । ତାଙ୍କର ଦୋଷ ହେଲା ଯେ ସେ ୧୯୪୭ରେ ଭାରତ ସ୍ୱାଧୀନ ହେଲା ବୋଲି ଘୋଷଣା କଲେ ।

ଅତ୍ୟନ୍ତ ଗମ୍ଭୀର ଉତ୍ତେଜନା ପରିସ୍ଥିତି ତାଙ୍କ ପାଇଁ ସୃଷ୍ଟି କରାଯାଇଥିଲେ ମଧ ଜୋଷୀ ସିପିଆଇ ପ୍ରତି ଅନୁରକ୍ତ ରହିଥିଲେ ଏବଂ କୋମିନ୍‌ଫର୍ମ ଦ୍ୱାରା ଥୋପା ଯାଇଥିବା ରାଜନୈତିକ ଧାରା "ଏହି ସ୍ୱାଧୀନତା ମିଛ"ରୁ ମୁକୁଳିବାରେ ସାହାଯ୍ୟ କରିଥିଲେ।

ଜୋଷୀ ପ୍ରାୟତଃ ଭାରତୀୟ ରାଜନୀତିରେ ନୀତି ଆଧାରିତ ଭୂମିକା ନେଉଥିଲେ ଯଦିଓ ସେ ସିପିଆଇର ସାଂଗଠନିକ କାର୍ଯ୍ୟରେ ମୁଖ୍ୟ ଭୂମିକା ଗ୍ରହଣ କରିବାକୁ ମନା

କରିଦେଇଥିଲେ । ୧୯୬୨ରେ ଚୀନ୍‌ର ଭାରତ ଆକ୍ରମଣକୁ ନିନ୍ଦାକରି ସେ ବାମ କମ୍ୟୁନିଷ୍ଟ ନେତାମାନଙ୍କୁ ଅଟକ ରଖିବାର ବିରୋଧ କରିଥିଲେ । ସେ ୧୯୬୭ ମସିହାରେ ସାମ୍ପ୍ରଦାୟିକ ଦକ୍ଷିଣପନ୍ଥୀ ଶକ୍ତି ସହିତ ସଂଯୁକ୍ତ ବିଧାୟକ ଦଳ ଦ୍ୱାରା ଗଠିତ ସରକାର ସହିତ ସିପିଆଇର ନୀତିହୀନ ଗଠନ ବନ୍ଧନକୁ ବିରୋଧ କରିଥିଲେ ଏବଂ ଏତଦ୍‌ବ୍ୟତୀତ ସେ ଭାରତର ଲୋକମାନଙ୍କୁ ସାବଧାନ କରିଦେଇଥିଲେ ଯେ ସାମ୍ପ୍ରଦାୟିକ ଶକ୍ତି ଭାରତର ଗଣତନ୍ତ୍ର ଓ ବିକାଶର ବିରୋଧୀ।

ଗାର୍ଗି ଚକ୍ରବର୍ତ୍ତୀଙ୍କୁ ଧନ୍ୟବାଦ ଦେବାକୁ ହେବ ଯେ ସେ ପି.ସି. ଜୋଷୀ ଯେ କି ଭାରତର ଜଣେ ମୁଖ୍ୟ ରାଜନୈତିକ ଓ ସାଂସ୍କୃତିକ ବ୍ୟକ୍ତିତ୍ୱଙ୍କ ଜୀବନର ମୂଲ୍ୟବାନ ଘଟଣାବଳୀକୁ ତାଙ୍କ ଜନ୍ମ ଶତବାର୍ଷିକୀ ବର୍ଷରେ ଲିପିବଦ୍ଧ କରି ପାରିଛନ୍ତି ।

ପ୍ରଫେସର ବିପିନ ଚନ୍ଦ୍ର

# ମୁଖବନ୍ଧ

ପୁରନ୍ ଚନ୍ଦ୍ର ଜୋଷୀ ଯେ ପି.ସି. ଜୋଷୀ ନାମରେ ସର୍ବଜନୀନ ଜଣାଶୁଣା, ଏକ ମହାନ୍ ଦେଶପ୍ରେମୀ ଓ ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନର ନିର୍ମାତା, ବର୍ତ୍ତମାନ କିନ୍ତୁ ବିସ୍ମୃତିର ଗର୍ଭରେ। ଦେଶ ପ୍ରତି, ଜନଗଣଙ୍କ ପ୍ରତି ଏବଂ କମ୍ୟୁନିଷ୍ଟ ପାର୍ଟି ପ୍ରତି ଥିଲା ତାଙ୍କର ଏକ ସମର୍ପିତ ଜୀବନ । ଆମ ସ୍ୱାଧୀନତା ଆନ୍ଦୋଳନର ଏକ କଠିନ ସମୟରେ ତିରିଶ ଓ ଚାଳିଶ ଦଶକରେ ସେ କମ୍ୟୁନିଷ୍ଟ ପାର୍ଟିକୁ ଖଣ୍ଡିଏ ଖଣ୍ଡିଏ ଇଟା ଯୋଡ଼ିବା ପରି ଯୋଡ଼ିଥିଲେ । ତାଙ୍କ ଜୀବନ ଏକ ସାଧାରଣ ଜୀବନ ନ ଥିଲା - ଏହା ଥିଲା ସଂଗ୍ରାମମୟ ଜୀବନ - ବାହାରେ ଓ ଭିତରେ ଦୃଢ଼ବିଶ୍ୱାସର ସହିତ ଏକ କ୍ଲାନ୍ତିହୀନ ନିଜର ଅଭିଳଷିତ ସ୍ୱପ୍ନ ପାଇଁ, ଏପରିକି ଯେତେବେଳେ ସେ ଭଗ୍ନ ସ୍ୱାସ୍ଥ୍ୟ ହେତୁ ଶାରୀରିକ ଭାବେ ଚଳତ୍ ଶକ୍ତି ହୀନ ହୋଇଗଲେ।

ଏହି ହେଉଛନ୍ତି ସେହି ନେତା ଯାହାଙ୍କର ଆକର୍ଷଣୀୟ ବ୍ୟକ୍ତିତ୍ୱ ଏବଂ ମାନବିକତା ଅସଂଖ୍ୟ ତରୁଣ ଓ ବୃଦ୍ଧ ଲୋକଙ୍କୁ, ଖଟିଖିଆ ମେହନତି ମଣିଷଙ୍କୁ, ବୁଦ୍ଧିଜୀବୀଙ୍କୁ ଦଶନ୍ଧି ଦଶନ୍ଧି ଧରି ଉଦ୍‌ବୁଦ୍ଧ କରିଥିଲା । ସେ ଥିଲେ ଜଣେ ଦିବ୍ୟଦ୍ରଷ୍ଟା ଯେ ଏକା ସମୟରେ ଭାବି ପାରୁଥିଲେ, କାର୍ଯ୍ୟ କରିପାରୁଥିଲେ ଓ ରାଜନୈତିକ ବାସ୍ତବତାକୁ ବୁଝି ପାରୁଥିଲେ । ସେ ଥିଲେ ସଂଗଠକ ଯେ କି ଶିଶୁ କମ୍ୟୁନିଷ୍ଟ ପାର୍ଟିକୁ ଉଠାଇ ଜାତୀୟ ବୈଶିଷ୍ଟ୍ୟ ପ୍ରଦାନ କରିଥିଲେ ଏବଂ ତଥାପି ତାଙ୍କ ଜୀବନର ଶେଷ ସମୟରେ ତାଙ୍କର ସହଯାତ୍ରୀମାନେ ତାଙ୍କୁ ଉପେକ୍ଷା କରି ଏକଘରିକିଆ କରିଦେଲେ । ତାଙ୍କର ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ସେ ରାଷ୍ଟ୍ରର ଧର୍ମନିରପେକ୍ଷତା, ସବୁପ୍ରକାର ଦକ୍ଷିଣପନ୍ଥୀମାନଙ୍କର ପ୍ରତିକ୍ରିୟା ବିରୁଦ୍ଧରେ ଗଣତାନ୍ତ୍ରିକ ଶକ୍ତିକୁ ଏକାଠି କରିବା ପାଇଁ ଅନବରତ ସଂଗ୍ରାମ ଜାରୀ ରଖିଥିଲେ । ଏହା ଅତ୍ୟନ୍ତ ବିଡ଼ମ୍ବନା ଯେ ତାଙ୍କ ଜୀବଦ୍ଦଶାରେ କେହି ଯେପରି ତାଙ୍କର ଜାତୀୟ ଫ୍ରଣ୍ଟ ରାଜନୀତିକୁ ବୁଝିପାରି ନ ଥିଲେ । ବର୍ତ୍ତମାନ ସେହି ରାଜନୀତିକୁ ଆମ ଦେଶର ବାମପନ୍ଥୀ ଦଳମାନେ ଆଗକୁ ନେଉଛନ୍ତି ଏବଂ ତାହା ମଧ୍ୟ ଏପରି ସମୟରେ ଯେତେବେଳେ ଯଦି ସେ ବଞ୍ଚିଥାନ୍ତେ ଶହେ ବର୍ଷ ପୂରଣ କରିଥାନ୍ତେ ।

ଏହିପରି ଜଣେ ବହୁମୁଖୀ, ଅତି ଉତ୍କୃଷ୍ଟ, ଗଭୀର ରାଜନୈତିକ ଚିନ୍ତାନାୟକ ଓ ସଂଗଠକଙ୍କର ଜୀବନୀ ଲେଖିବା ବାସ୍ତବରେ ଏକ ଆହ୍ୱାନ । ପ୍ରାୟ ତାଙ୍କର ସମସ୍ତ ନିକଟ ସହଯୋଗୀ ଆଉ ନାହାଁନ୍ତି ଏବଂ ଏହି ଶୂନ୍ୟତା ପୂରଣ କରାଯାଇ ପାରିବ ନାହିଁ । ନଭେମ୍ବର

୧୯୮୦ ମସିହାରେ ପି.ସି. ଜୋଷୀଙ୍କର ମୃତ୍ୟୁ ପରେ, ଅଗ୍ରଣୀ କମ୍ୟୁନିଷ୍ଟ ନେତା ଯଥା ହୀରେନ୍ ମୁଖାର୍ଜୀ, ସତ୍ୟପାଲ ଡାଙ୍ଗ ଏବଂ ତାଙ୍କର ନିକଟତମ ଅନୁଗାମୀ ଗୋବିନ୍ଦ ବିଦ୍ୟାର୍ଥୀ, ଈଶ୍ୱର ଭଟ୍ଟ, ଦିଲୀପ ବୋଷ, ସୁନୀଲ ସେନ ଏବଂ ଅର୍ଥନୀତିଜ୍ଞ ପି.ସି. ଜୋଷୀ ତାଙ୍କ ସାଧାରଣ ସମ୍ପାଦକତ୍ୱ ସମୟକୁ ସ୍ମରଣ କରି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି । ତାଙ୍କ ଜନ୍ମ ଶତବାର୍ଷିକୀ (୨୦୦୭) ଅବସରରେ ଅନ୍ୟ କେତେଗୁଡ଼ିଏ ସ୍ମୃତିଚାରଣ ପ୍ରକାଶ ପାଇଛି ଯାହା ଅନେକ ତଥ୍ୟ ପ୍ରଦାନ କରିବା ସହିତ ଗଭୀର ମୂଲ୍ୟବାନ ଦୃଷ୍ଟିକୋଣ ଉନ୍ମୋଚନ କରିଛି । ଏଗୁଡ଼ିକ ମଧ୍ୟରୁ ଜୋଷୀଙ୍କ ଦ୍ୱାରା ପ୍ରତିଷ୍ଠିତ ସାଂସ୍କୃତିକ ସ୍କ୍ୱାର୍ଡ଼ର ପ୍ରମୁଖ କଳାକାର ରେଖା ଜୈନ, ଚାଳିଶ ଦଶକ ଧରି ବମ୍ବେ ମୁଖ୍ୟ କାର୍ଯ୍ୟାଳୟରେ ଥିବା ସୁବ୍ରତ ବାନାର୍ଜୀ, ସେ ସମୟର ଛାତ୍ରନେତା ସତ୍ୟପାଲ ଡାଙ୍ଗ ଓ ସୁନୀଲ ମୁନ୍‌ସିଙ୍କର ସ୍ମୃତିରେ ଅନେକ ଆମୋଦଦାୟକ ଘଟଣାର ସଂକ୍ଷିପ୍ତ ବିବରଣୀ ଏବଂ ଜୋଷୀଙ୍କ ସହିତ ବ୍ୟକ୍ତିଗତ ଅନୁଭୂତି ରହିଛି ।

ଜୋଷୀଙ୍କ ସମୟରେ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ପ୍ରକାଶ ପାଉଥିବା ଭଙ୍ଗୁର ହଳଦିଆ ପୃଷ୍ଠାର ପତ୍ରିକା - ନ୍ୟାସନାଲ ଫ୍ରଣ୍ଟ, ପିପୁଲ୍‌ସ ୱାର, ପିପୁଲ୍‌ସ ଏଜ୍ - ଯାହା ବିବରଣୀ, ଲେଖା, ଚିତ୍ତ ପ୍ରୋସାଦଙ୍କର ରେଖାଚିତ୍ର, ସୁନୀଲ ଜାଣହାଙ୍କର ଆନ୍ଦୋଳନ ସମୟର ଫଟୋଚିତ୍ର ଏବଂ ସେ ସମୟର ଲୋକମାନଙ୍କ ସମ୍ପର୍କରେ ତଥ୍ୟ ମୋତେ ଜୋଷୀ ସମ୍ପର୍କରେ ଓ ଆଦର୍ଶର ପ୍ରଯତ୍ନକୁ ଅଧିକ ଜାଣିବାକୁ ସମୃଦ୍ଧ କରିଛି । ମୁଁ ଅଜୟ ଭବନ ଲାଇବ୍ରେରୀର କର୍ମଚାରୀ, ଜବାହରଲାଲ୍ ନେହେରୁ ବିଶ୍ୱବିଦ୍ୟାଳୟର ସାମ୍ପ୍ରତିକ ଇତିହାସ ବିଭାଗର ଅଭିଲେଖାଗାର ଯାହା ପି.ସି. ଜୋଷୀଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଏବଂ ଏ ପର୍ଯ୍ୟନ୍ତ ଭାରତରେ ବାମପନ୍ଥୀ ଆନ୍ଦୋଳନ ସମ୍ପର୍କୀତ ଦଲିଲର ଗନ୍ତାଘର ହୋଇ ରହିଛି, ସେଥିପ୍ରତି ମୋର କୃତଜ୍ଞତା ଜ୍ଞାପନ କରୁଛି । ଅନ୍ୟ କେତେକ ଜୀବନୀମୂଳକ ପ୍ରକାଶନ ଯାହା ଆତ୍ମନିଷ୍ଠ ଓ ବ୍ୟକ୍ତିଗତ ହୋଇଥିଲେ ମଧ୍ୟ ଇତିହାସର ଏକ ଦରକାରୀ ଉତ୍ସ ଭାବରେ ମୁଁ ପାଇଛି ଯାହାକି ପାର୍ଟି ଅନ୍ତଃସ୍ଥଜୀବନର ଆଇନା ଏବଂ କମ୍ରେଡ଼ମାନଙ୍କର ଜାତୀୟ ଓ ଅନ୍ତର୍ଜାତୀୟ ଘଟଣାମାନଙ୍କ ପ୍ରତି ଜବାବ । ମୁଁ ଏ ସମ୍ପର୍କରେ ମଣିକୁନ୍ତଳା ସେନଙ୍କର "ଇନ୍ ସର୍ଚ୍ଚ ଅଫ୍ ଫ୍ରିଡ଼ମ୍", "ଆନ୍ ଅନ୍‌ଫିନିସ୍‌ଡ଼ ଜର୍ଣ୍ଣି", ମୋହିତ ସେନଙ୍କର "ଏ ଟ୍ରାଭଲର ଆଣ୍ଡ ଦି ରୋଡ଼୍", "ଦି ଜର୍ଣ୍ଣି ଅଫ୍ ଆନ୍ ଇଣ୍ଡିଆନ୍ କମ୍ୟୁନିଷ୍ଟ" ଏବଂ ଗଣେଶ ଶୁକ୍ଲାଙ୍କର ଅପ୍ରକାଶିତ ପାଣ୍ଡୁଲିପି "ସିପିଆଇ-ଆନ୍ ଇନସାଇଡ଼ର ଭିଉ" ବିଶେଷ ଭାବରେ ଉଲ୍ଲେଖ କରୁଛି । ମୁଁ ରବି ବକେୟାଙ୍କୁ ବିଶେଷ ଭାବରେ ଧନ୍ୟବାଦ ଦେଉଛି ଯେ ଜୋଷୀଙ୍କ ଦ୍ୱାରା ବହୁବର୍ଷ ଲିଖିତ ଦୁଷ୍ପ୍ରାପ୍ୟ ଲେଖାଗୁଡ଼ିକ ଯାହା ଦି ନିଉ ଥିଙ୍କିଙ୍ଗ୍ କମ୍ୟୁନିଷ୍ଟରେ ପ୍ରକାଶ ପାଉଥିଲା ସେଗୁଡ଼ିକ ମୋତେ ଦେଇଛନ୍ତି । ମୁଁ ମଧ୍ୟ ଅର୍ଥନୀତିଜ୍ଞ ପି.ସି. ଜୋଷୀଙ୍କୁ ଧନ୍ୟବାଦ ଦେଉଛି ଯାହାଙ୍କୁ ମୁଁ ମୋର ଅନୁସନ୍ଧାନ ପାଇଁ ବହୁ ସମୟରେ ହଇରାଣ କରିଛି ଏବଂ ଯେ ଅତ୍ୟନ୍ତ ଅକାତରରେ ଜୋଷୀଙ୍କ ବ୍ୟକ୍ତିଗତ ଜୀବନର ହଜିଯାଇଥିବା ଯୋଗସୂତ୍ରକୁ ଖୋଜି ବାହାର କରିଛନ୍ତି । ଦୁର୍ଭାଗ୍ୟବଶତଃ ଜୋଷୀଙ୍କ ଶୈଶବ ଓ ବାଲ୍ୟକାଳ ସମ୍ପର୍କରେ ଖୁବ୍ କମ୍ ସଂଗ୍ରହ

ହୋଇପାରିଛି ।

ନୂଆ ଦିଲ୍ଲୀର ହାଉଜ୍ ଖସ୍‌ରେ ସେ ରହୁଥିବା ସମୟରେ ନଭେମ୍ବର ୭, ୧୯୬୮ରେ ନିଜ ସମ୍ପର୍କରେ ତାଙ୍କଦ୍ୱାରା ଲିଖିତ ଲେଖାକୁ ମୁଁ ବ୍ୟାପକ ଭାବେ ଏଥିରେ ଉଦ୍ଧୃତ କରିଛି। ଯଦିଓ ପାଦ-ଟିପ୍ପଣୀରେ ଏହି ଉଦ୍ଧୃତିକୁ ସୂଚକ ପତ୍ରରେ ସାମିଲ କରାଯାଇ ନାହିଁ ।

ଜୋଷୀଙ୍କର ୭୫ବର୍ଷର ଜୀବନ ଅବଧି ଯାହା ଅଙ୍କାବଙ୍କା ଜଟିଳ ଦ୍ୱନ୍ଦ୍ୱାତ୍ମକ ଘଟଣା ପ୍ରବାହ ମଧ୍ୟଦେଇ ଗତି କରିଛି, ତାହାର ଏକ ରାଜନୈତିକ ଜୀବନୀ ପ୍ରସ୍ତୁତ କରିବା ଏକ କଷ୍ଟସାଧ କାର୍ଯ୍ୟ । ମୋର ସୀମାବଦ୍ଧତାକୁ ପାଠକମାନେ କ୍ଷମା ଦେବେ । ମୁଁ କେବଳ ଆଶା କରିବି ଯେ ଏହି ପ୍ରଥମ ପଦକ୍ଷେପ ପରେ ପି.ସି. ଜୋଷୀଙ୍କର ଜୀବନ, ରାଜନୀତି ଓ କାର୍ଯ୍ୟାବଳୀ ସମ୍ପର୍କରେ ଆଗାମୀ ଦିନରେ ଆହୁରି ସୁସଂହତ ଓ ଆଲୋଚନାତ୍ମକ କାର୍ଯ୍ୟ କରାଯିବ ।

ଗାର୍ଗୀ ଚକ୍ରବର୍ତ୍ତୀ

## ୧

# ଆଦ୍ୟ ଜୀବନ

୧୯୦୭ ଏପ୍ରିଲ ୧୪ ତାରିଖରେ ହିମାଳୟର ପାଦଦେଶରେ ଥିବା ଅଲମୋଡ଼ାଠାରେ ପି.ସି. ଜୋଷୀଙ୍କର ଜନ୍ମ । ତାଙ୍କର ପିତା ପଣ୍ଡିତ ହର ନନ୍ଦନ ଜୋଷୀ, ସେ ସମୟର ଥିଲେ ପ୍ରସିଦ୍ଧ ପ୍ରଧାନ ଶିକ୍ଷକ । ପରବର୍ତ୍ତୀ ସମୟରେ ସେ ତତ୍କାଳୀନ କେନ୍ଦ୍ରୀୟ ପ୍ରଦେଶ ଅନ୍ତର୍ଗତ ରେୱା ରାଜ୍ୟର ଶିକ୍ଷା ବିଭାଗ ନିର୍ଦ୍ଦେଶକ ହୋଇଥିଲେ । ରେୱା ଦୁର୍ଗ ନିକଟରେ ଥିବା ଘାଗ୍ରା ନଦୀରେ ବୁଡ଼ିଯିବା ଫଳରେ ତାଙ୍କର ଅସମୟରେ ମୃତ୍ୟୁ ହୋଇଥିଲା । ଜୋଷୀଙ୍କୁ ମାତ୍ର ଦଶବର୍ଷ ବୟସ ହୋଇଥିବାବେଳେ ତାଙ୍କର ମା' ମାଳତୀ ଦେବୀଙ୍କର ଅତି ଅଳ୍ପ ବୟସରେ ଯକ୍ଷ୍ମାରେ ମୃତ୍ୟୁ ହୋଇଥିଲା । ତାଙ୍କର ଏକମାତ୍ର ଭଉଣୀ ମା'ଙ୍କର ସେବାଶୁଶ୍ରୂଷା କରିବା ହେତୁ ସେହି ରୋଗର ଶିକାର ହୋଇ ଅଳ୍ପଦିନରେ ମୃତ୍ୟୁଲାଭ କଲେ । ତାଙ୍କ ଜୀବନ ଉପରେ ଏହାର ପ୍ରଭାବ ଚିରଦିନ ରହିଥିଲା ।

ତାଙ୍କ ପିତାଙ୍କର ଥିଲା ବଦଳି ଚାକିରି । ମାତୃହରା ଜୋଷୀଙ୍କର ପିଲାଦିନ ଯୁକ୍ତ ପରିବାରର ଦାଦା ଖୁଡ଼ିଙ୍କ ପାଖରେ କିମ୍ବା ହଷ୍ଟେଲରେ ବିତିଥିଲା । ସ୍କୁଲରେ ଥିବା ବର୍ଷମାନଙ୍କରେ, ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନର ଢେଉ ପାର୍ବତ୍ୟାଞ୍ଚଳ ପର୍ଯ୍ୟନ୍ତ ପହଞ୍ଚି ଯାଇଥିଲା । ଗାନ୍ଧିଜୀଙ୍କ କାର୍ଯ୍ୟକ୍ରମରେ ଥିବା ସରକାରୀ ପଦବୀକୁ ଫେରସ୍ତ ଦେବା, ସରକାରୀ ସ୍କୁଲ, କଲେଜ, କଚେରିକୁ ବର୍ଜନ କରିବା, ବିଦେଶୀ ବସ୍ତ୍ର ପରିତ୍ୟାଗ କରିବା, ଟିକସ ପଇଠ ନ କରିବା ଇତ୍ୟାଦି ଏକ ନୂତନ ସ୍ୱଦେଶୀ ପରିବେଶ ସୃଷ୍ଟି କରିଥାଏ । ତାଙ୍କର ଅହିଂସା ଓ ଅସହଯୋଗ ବିଚାର ଆଶାର କିରଣ ଆଣିଥାଏ ଏବଂ ପାଇନ୍ ଜଙ୍ଗଲ ଓ ପାର୍ବତ୍ୟ ପାଦଦେଶ ମଧ୍ୟରେ ବିଶ୍ୱାସ ଜାଗ୍ରତ କରୁଥାଏ । ତରୁଣ ପୁରନ୍ ଗାନ୍ଧିଜୀଙ୍କ ଆହ୍ୱାନ ସ୍ୱରାଜ ଦ୍ୱାରା ନିଜକୁ ଉନ୍ନୀତ ଅନୁଭବ କରୁଥାଆନ୍ତି । ୧୯୨୦ ମସିହାରେ ସେ ମିରଟ୍ ଜିଲ୍ଲାର ହାପୁରଠାରେ ଥିବା ସରକାରୀ ହାଇସ୍କୁଲରୁ ମାଟ୍ରିକ୍ ପାସ୍ କରିଥାନ୍ତି ।

କିନ୍ତୁ ହିନ୍ଦୁ-ମୁସଲମାନ ଦଙ୍ଗା ଆରମ୍ଭ ହୋଇ ଯିବାରୁ ଆନ୍ଦୋଳନକୁ ପ୍ରତ୍ୟାହାର କରି ନିଆଗଲା । ପୁରନ୍ ସେତେବେଳେ ଅତ୍ୟନ୍ତ ତରୁଣ । ସେ ଘଟଣାପ୍ରବାହକୁ ଲକ୍ଷ୍ୟ କରି ଅତ୍ୟନ୍ତ

ବିବ୍ରତ ଓ ହତୋତ୍ସାହ ହେବା ସହିତ ଦ୍ୱିଧାଗ୍ରସ୍ତ ହୋଇପଡ଼ିଲେ । ୧୯୨୨ ମସିହାରେ ସେ ଅଲମୋଡ଼ା ସରକାରୀ କଲେଜରୁ ସଂସ୍କୃତରେ ସ୍ୱର୍ଣ୍ଣ ପଦକ ସହିତ ଆଇ.ଏ. ପାସ୍ କଲେ। ତା'ପରେ ତାଙ୍କୁ ଏଲାହାବାଦ ପଠାଗଲା । କାରଣ ଆଇସିଏସ୍ ପାଇବା ପାଇଁ ତାହା ପ୍ରକୃଷ୍ଟ କ୍ଷେତ୍ର ବୋଲି ବିବେଚନା କରାଯାଉଥିଲା । ସେ ୧୯୨୪ ମସିହାରେ ଏଲାହାବାଦ ବିଶ୍ୱବିଦ୍ୟାଳୟରୁ ଇଂରାଜୀ, ଅର୍ଥନୀତି ଓ ଇତିହାସ ନେଇ ବି.ଏ. ପାସ୍ କଲେ। ୧୯୨୮ ମସିହାରେ ସେ ଏମ୍.ଏ. ଓ ତା ପରବର୍ଷ ଏଲ୍.ଏଲ୍.ବି. ସେହି ବିଶ୍ୱବିଦ୍ୟାଳୟରୁ ପାସ୍ କଲେ।

ଜୋଷୀଙ୍କ ପରିବର୍ତ୍ତନ ହିଁ ଏଲାହାବାଦରୁ ହେଲା । ଏଲାହାବାଦ ବିଶ୍ୱବିଦ୍ୟାଳୟର ଛାତ୍ର ଭାବରେ ସେଠାରେ ଥିବା ଅନେକ ପ୍ରତିଷ୍ଠାବାନ ଅଧ୍ୟାପକ – ତାରାଚାନ୍ଦ, ବେଣୀ ପ୍ରସାଦ, ଆର୍.ପି. ତ୍ରିପାଠୀ, ଈଶ୍ୱରୀ ପ୍ରସାଦଙ୍କ ସମ୍ପର୍କରେ ଆସିବାର ସୁଯୋଗ ମିଳିଥିଲା । ଏହି ଐତିହାସିକମାନଙ୍କର ପ୍ରଭାବ ତାଙ୍କ ଉପରେ ଗଭୀର ଭାବରେ ପଡ଼ିଥିଲା । ଏହାର ବହୁବର୍ଷ ପରେ ଜୋଷୀଙ୍କୁ ଐତିହାସିକ ଭାବରେ ଦେଖିବାକୁ ମିଳେ, କାରଣ ସେ ୧୮୫୭ ବିଦ୍ରୋହର ଶତବାର୍ଷିକୀ ଅବସରରେ ଏକ ଉଚ୍ଚକୋଟିର ପୁସ୍ତକ ପ୍ରକାଶ କରିଥିଲେ ।

ଏଲାହାବାଦ ମଧ୍ୟ ଥିଲା ଜାତୀୟ ରାଜନୀତିର କେନ୍ଦ୍ରସ୍ଥଳୀ । ଏକ ପକ୍ଷରେ ଥିଲେ ପରମ୍ପରାବାଦୀ ମଦନ ମୋହନ ମାଲବ୍ୟ ଓ ଅପର ପକ୍ଷରେ ସାର୍ବଭୌମିକ ଓ ଧର୍ମ ନିରପେକ୍ଷ ମୋତିଲାଲ ନେହେରୁ । ଜୋଷୀ ରାଜନୀତି ଆଡ଼କୁ ଟାଣିହୋଇ ଆସିଲେ, ମୋତିଲାଲଙ୍କ ଗୋଷ୍ଠୀରେ ଯୋଗଦେଲେ ଏବଂ ୧୯୨୫ ମସିହା ବେଳକୁ ସେ ଖଦୀ ପିନ୍ଧା ଜାତୀୟବାଦୀ ପାଲଟିଗଲେ । ବର୍ଷକ ମଧ୍ୟରେ ସେ ନବ ଯୁବକ ଭାରତ ସଭାର ସକ୍ରିୟ ସଭ୍ୟ ପାଲିଟି ଗଲେ।

ସେ ଏଲାହାବାଦ ଯୁବ ଲିଗ୍‌ର ସଭ୍ୟ ହେଲେ ଯାହାର ସଭାପତି ଥିଲେ ଜବାହରଲାଲ ନେହେରୁ । ଏହା ତରୁଣ ବୁଦ୍ଧିଜୀବୀମାନଙ୍କର ଷ୍ଟଡ଼ି ସର୍କଲ ସମୂହର ଫେଡ଼େରେସନ (ସଂଘ) ଥିଲା । ତତ୍କାଳୀନ ରାଜନୈତିକ ମନ ରଖୁଥିବା ଯୁବକମାନେ ଆକର୍ଷିତ ହେବାପରି, ଜୋଷୀ ଆନନ୍ଦଭବନ ଆଡ଼କୁ ଆକର୍ଷିତ ହେଲେ । ପ୍ରାଥମିକ ଅବସ୍ଥାରେ ସେ ଦେଖିଥିଲେ ନେହେରୁ ବିବ୍ରତ ଜଣାପଡୁଛନ୍ତି, ଭାବ ଆଦାନପ୍ରଦାନ କରୁନାହାନ୍ତି ଏବଂ ଅନ୍ତଃସ୍ଥ ଭାବେ ଚିନ୍ତାଗ୍ରସ୍ତ। ବ୍ରସେଲସ୍‌ଠାରେ ୧୯୭୪ ମସିହାରେ ଉପନିବେଶବାଦ ନିର୍ଯ୍ୟାତନା ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ହେଉଥିବା ଆନ୍ତର୍ଜାତୀୟ କଂଗ୍ରେସରେ ଯୋଗଦେବା ପରେ ଏବଂ ସୋଭିଏତ୍ ୟୁନିୟନ ଯାଇ ଦେଖାକରି ଫେରିବା ପରେ ନେହେରୁ ନିଜର ବାର୍ତ୍ତା ଦେବାକୁ ସକ୍ଷମ ହୋଇଥିଲେ । ସେ ଜଣେ "ସ୍ୱ-ସଚେତନ ଉଗ୍ରବାଦୀ ବିପ୍ଳବୀ" ଭାବରେ ପ୍ରତ୍ୟାବର୍ତ୍ତନ କରିଥିଲେ ଏବଂ ସୋଭିଏତ୍ ୟୁନିୟନ୍ ସମ୍ପର୍କରେ ତାଙ୍କର ଲେଖା ଆଖି ଖୋଲି ଦେଇଥିଲା । ପୂର୍ଣ୍ଣ ସ୍ୱାଧୀନତା ପାଇଁ ନେହେରୁଙ୍କର ଅତ୍ୟଧିକ ସମ୍ବେଗାନ୍ୱିତ ଆପତ୍ତି ଗାନ୍ଧିଜୀଙ୍କର କୌଣସି ସଂଜ୍ଞା ନ ଥିବା ସ୍ୱରାଜ୍ୟ ବିରୁଦ୍ଧରେ ଜୋଷୀଙ୍କ ହୃଦୟକୁ ସ୍ପର୍ଶ କରିଥିଲା, ତେଣୁ ସେ ତତ୍‌କ୍ଷଣାତ୍ ଏଲାହାବାଦ ଯୁଥ୍ ଲିଗ୍‌ର ସଭ୍ୟ ହୋଇଥିଲେ ।

୧୯୨୮ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର କଲିକତାଠାରେ ଅଧିବେଶନ ହେଲା । ନେହେରୁ ତାଙ୍କ ପିତା ମୋତିଲାଲ ନେହେରୁଙ୍କ ନେତୃତ୍ୱରେ ଗଠିତ ସର୍ବଦଳୀୟ କମିଟି ରିପୋର୍ଟକୁ ବିରୋଧ ନ କରିବା ଫଳରେ ଜୋଷୀଙ୍କର ମୋହଭଙ୍ଗ ଘଟିଥିଲା । ଏହା ସାମ୍ପ୍ରଦାୟିକତା ସହିତ ବୁଝାମଣା ଥିଲା ଏବଂ ବ୍ରିଟିଶ୍ ସରକାର ସ୍ୱାୟତ୍ତଶାସନ ପ୍ରଦାନ ବର୍ଷକ ମଧ୍ୟରେ କରିବା ପାଇଁ ସମ୍ମତି ଦେବାକୁ କୁହାଯାଇ ପୂର୍ଣ୍ଣ ସ୍ୱାଧୀନତା ଦାବିକୁ ବାଦ ଦିଆଯାଇଥିଲା । ଜୋଷୀ ଆଶା କରୁଥିଲେ ନେହେରୁ ଏହାକୁ ବିରୋଧ କରିବେ । ନେହେରୁ ରିପୋର୍ଟ ଓ ମୁସଲମାନମାନଙ୍କର ଦାବିକୁ ହିନ୍ଦୁ ମହାସଭାର ଦୃଢ଼ ବିରୋଧ, ଜାତୀୟତାବାଦୀ ମୁସଲମାନମାନଙ୍କୁ ବାସ୍ତବରେ ପୃଥକ୍ କରିଦେଲା ଏବଂ ସେମାନଙ୍କର ସ୍ଥିତିକୁ ଦୁର୍ବଳ କରି ପକାଇଲା । ନେହେରୁ ବରିଷ୍ଠ କଂଗ୍ରେସ ନେତାମାନଙ୍କ ଚାପ ଆଗରେ ମୁଣ୍ଡ ନୁଆଁଇଲେ । ଜୋଷୀ ପରବର୍ତ୍ତୀ ସମୟରେ ଏହି ଦିନମାନଙ୍କୁ ଏପରି ମନେ ପକାଇଥିଲେ "ନେହେରୁ ମୋ ଦୃଷ୍ଟିରେ ହୋଇଥିବା ଶ୍ରଦ୍ଧା ଓ ଭକ୍ତିର ବିଗ୍ରହରୁ ନ୍ୟୂନ ହୋଇଗଲେ ଏବଂ ଯେଉଁ ବାମପନ୍ଥୀ ଯୁବକମାନେ ପ୍ରଥମ ସର୍ବଭାରତୀୟ ଯୁବ କଂଗ୍ରେସ କଲିକତାଠାରେ ଅନୁଷ୍ଠିତ କରିବା ପାଇଁ ସମବେତ ହୋଇଥିଲେ ସେମାନଙ୍କ ନିକଟରେ ମଧ୍ୟ ।"[୧] ଏହି ମୋହଭଙ୍ଗ ତାଙ୍କୁ କମ୍ୟୁନିଷ୍ଟ ହେବା ଆଡ଼କୁ ବାଧ୍ୟ କରିଥିଲା ।

ପ୍ରଥମ ଥର ପାଇଁ ସେ କଲିକତାର ଶ୍ରମିକ ନେତା ଆଫ୍‌ତାବ୍ ଅଲ୍ଲୀଙ୍କୁ ସାକ୍ଷାତ କଲେ, ଯେ କି ତାଙ୍କ ଜନ୍ମିତ ଜିଲ୍ଲା ଅଲମୋଡ଼ାର ଥିଲେ ଏବଂ ସେ ତାଙ୍କଠାରୁ ଚୋରାରେ ଆସିଥିବା ରଜନୀ ପାମେ ଦତ୍ତଙ୍କର 'ଆଧୁନିକ ଭାରତ' (୧୯୨୬) ଏବଂ ଏମ୍.ଏନ୍. ରାୟଙ୍କର 'ଭାରତ ରାଜନୀତିର ଭବିଷ୍ୟତ' (୧୯୨୬) ପାଇଥିଲେ । ସେ ଆର୍.ପି. ଦତ୍ତଙ୍କର ଅନୁଶୀଳନ ଦ୍ୱାରା ପ୍ରଭାବିତ ହୋଇଥିଲେ । ଯଦିଓ ସେତେବେଳେ ଏମ୍.ଏନ୍. ରାୟଙ୍କ ପ୍ରତି ତାଙ୍କର ସମ୍ମାନ ଅଧିକ ଥିଲା । ଜୋଷୀ ଲେଖିଥିଲେ, "ଆର୍‌ପିଡ଼ି ଆମର ଗୁରୁ ଓ ମାର୍ଗଦର୍ଶକ ହୋଇଥିଲେ । ତାଙ୍କର ମଡ଼ର୍ଣ୍ଣ ଇଣ୍ଡିଆ ଆମର ପାଠ୍ୟପୁସ୍ତକ ହୋଇଗଲା ଏବଂ ତାଙ୍କର ଲେବର ମନ୍ଥଲି (ମାସିକ ଶ୍ରମିକ) - ମାସକର ଟିପ୍ପଣୀ - ବ୍ୟାଖ୍ୟା ଆମକୁ ଆଗେଇ ନେଲା ।"[୨] ସେ ସେତେବେଳେ, ତାଙ୍କ ନିଜ ଭାଷାରେ "ଜଣେ ଛାତ୍ର କମ୍ୟୁନିଷ୍ଟ, ବିଭିନ୍ନ ବିଶ୍ୱବିଦ୍ୟାଳୟରେ ଯୁବଲିଗ୍ ସଂଗଠିତ କରିବାରେ ବ୍ୟସ୍ତ ଏବଂ କଂଗ୍ରେସ-ବାମକୁ ଯୋଡ଼ିବାର ପ୍ରୟାସ ଏବଂ ଆଞ୍ଚଳିକ ସ୍ତରରେ ଥିବା କମ୍ୟୁନିଷ୍ଟ ସପକ୍ଷବାଦୀ ବିପ୍ଳବୀ

---

୧. ପି.ସି. ଜୋଷୀ, "ଦି ନେହେରୁ ଲେଗାସୀ : ଏ ସେଲ୍‌ଫ୍ କ୍ରିଟିକାଲ କମ୍ୟୁନିଷ୍ଟ ଇଭାଲ୍ୟୁଏସନ୍" ନିଉ ଥିଙ୍କିଙ୍ଗ୍ କମ୍ୟୁନିଷ୍ଟ, ଡିସେମ୍ବର ୧, ୧୯୯୮ ।

୨. ପି.ସି. ଜୋଷୀ, "ରଜନୀ ପାମେ ଦତ୍ତ ଆଣ୍ଡ ଇଣ୍ଡିଆନ କମ୍ୟୁନିଷ୍ଟ", "ନିଉ ଥିଙ୍କିଙ୍ଗ୍ କମ୍ୟୁନିଷ୍ଟ ମାର୍ଚ୍ଚ ୧, ୨୦୦୧ ।

ଗୋଷ୍ଠୀମାନଙ୍କୁ ଶ୍ରମିକ ଓ କୃଷକ ଦଳର ଶାଖା ଭାବରେ ଗଠନ କରିବାର ପ୍ରୟାସ (ଏହା ସେତେବେଳେ ସିପିଆଇର ମୁକ୍ତମଞ୍ଚ ଥିଲା) ।"[୩] ସେହିଠାରୁ ଆରମ୍ଭ ହେଲା ତାଙ୍କର ରାଜନୈତିକ ଯାତ୍ରା ନୂତନ କମ୍ୟୁନିଷ୍ଟ ମାର୍ଗରେ ।

୩. ସତ୍ୟପାଲ ଡାଙ୍ଗଙ୍କ ଦ୍ୱାରା ଉଦ୍ଧୃତ, ତାଙ୍କର ପି.ସି. ଜୋଷୀଙ୍କ ଉପରେ ଅପ୍ରକାଶିତ ଲେଖା ଏପ୍ରିଲ ୧୩, ୨୦୦୧ ।

୨

# ରାଜନୈତିକ ଦୀକ୍ଷା

## ମିରଟ୍ ଷଡ଼ଯନ୍ତ୍ର ମାମଲା ଏବଂ ତା'ପର ଘଟଣା

ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଜାତୀୟତାବାଦୀ ଆନ୍ଦୋଳନ ଏକ ଘଡ଼ିସନ୍ଧି ପର୍ଯ୍ୟାୟ ମଧ୍ୟଦେଇ ଯାଉଥାଏ । ଗାନ୍ଧିଙ୍କର କୌଶଳ ଅସହଯୋଗ ଆନ୍ଦୋଳନ ସମ୍ପର୍କରେ ବହୁ ସଂଖ୍ୟକ ଯୁବକଙ୍କର ମୋହଭଙ୍ଗ ଘଟିଥାଏ । ବିଶେଷ କରି ୧୯୨୨ ମସିହାରେ ହଠାତ୍ ଅସହଯୋଗ ଆନ୍ଦୋଳନକୁ ଉଠାଇ ନେବା ଫଳରେ । ରାଷ୍ଟ୍ରର ବିଭିନ୍ନ ପ୍ରାନ୍ତରରେ ସାମ୍ପ୍ରଦାୟିକ ଦଙ୍ଗା ଦେଖା ଦେଇଥାଏ ଏବଂ ମୁସଲମାନମାନଙ୍କ ମଧ୍ୟରେ ତାବଲିକ୍ ଓ ତାନ୍‌ଜିମ୍ ଏବଂ ହିନ୍ଦୁମାନଙ୍କ ମଧ୍ୟରେ ଶୁଦ୍ଧି ଓ ସଂଗଠନ ଆନ୍ଦୋଳନ ରୂପନେବାକୁ ଆରମ୍ଭ କରିଥାଏ । ସାଧାରଣ ମୋହଭଙ୍ଗ ଏକ ନୂତନ ଦୃଶ୍ୟପଟ ଉନ୍ମୋଚନ କରିଥାଏ ଯେଉଁଠାରେ ବୈପ୍ଲବିକ ବୀରତ୍ୱ ଶିକ୍ଷିତ ଯୁବପିଢ଼ିମାନଙ୍କୁ ଆକର୍ଷିତ କରିଥାଏ, ଯେତେବେଳେ ସେମାନଙ୍କ ମଧ୍ୟରୁ କେତେକ ମାର୍କ୍ସବାଦ ଆଡ଼କୁ ଆକର୍ଷିତ ହୋଇଥାନ୍ତି । ନଭେମ୍ବର ୧୯୨୭ରେ ଗୋରା ସଭ୍ୟମାନଙ୍କ ଦ୍ୱାରା ଗଠିତ ସାଇମନ କମିସନର ଭାରତ ଆଗମନ ସାମ୍ରାଜ୍ୟବାଦ ବିରୋଧୀ ବ୍ୟାପକ ସ୍ୱଦେଶୀ ଆନ୍ଦୋଳନ ପାଇଁ ଲୋକମାନଙ୍କ ମଧ୍ୟରେ ଜୁଆର ଉଠିଥାଏ, କିନ୍ତୁ ଏହାର ପ୍ରଭାବ ଥିଲା କ୍ଷଣସ୍ଥାୟୀ । କଂଗ୍ରେସ ଲୋକମାନଙ୍କର ଆଶା ଓ ଆକାଂକ୍ଷା ପୂରଣ କରିବାରେ ବିଫଳ ହୋଇଥାଏ ଏବଂ ତାହା ଫଳରେ ଟ୍ରେଡ୍ ୟୁନିୟନ ଓ କୃଷକ ସଭା ମାଧ୍ୟମରେ ବାମଗୋଷ୍ଠୀ ଗଠନ ହୁଏ ।

ଏହି ସମୟରେ ପି.ସି. ଜୋଷୀଙ୍କର କୃଷକ ଓ ଶ୍ରମିକ ଦଳ ମାଧ୍ୟମରେ ରାଜନୈତିକ ଦୀକ୍ଷା ହୁଏ । ସେପ୍ଟେମ୍ବର ୧୯୨୮ରେ ମିରଟ୍ ଅଧିବେଶନବେଳେ ସେ ଉତ୍ତର ପ୍ରଦେଶ ଶାଖାର ଯୁଗ୍ମ ସମ୍ପାଦକ ହେଲେ । ସେ ଏହିଠାରେ କମ୍ୟୁନିଷ୍ଟ କର୍ମୀ ଆର୍. ଡି. ଭରଦ୍ୱାଜ ଓ ଏସ୍. ଜି. ସରଦେଶାଇଙ୍କର ସମ୍ପର୍କରେ ଆସିଲେ । ଜୋଷୀଙ୍କର ବିଶ୍ୱାସ ହେଲା ଯେ ସର୍ବଭାରତୀୟ ଶ୍ରମିକ ଓ କୃଷକ ଦଳ ବିପ୍ଲବ ମାଧ୍ୟମରେ ବ୍ରିଟିଶ୍ ସାମ୍ରାଜ୍ୟବାଦଠାରୁ ସ୍ୱାଧୀନତା ହାସଲ କରିପାରିବ। କମ୍ୟୁନିଷ୍ଟମାନେ ସଂଖ୍ୟାରେ ଅଳ୍ପ ଥିଲେ ଏବଂ ବ୍ରିଟିଶ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପ୍ରଭାବିତ ହୋଇଥିଲେ କାରଣ ସେମାନେ ଆଦର୍ଶଗତ ଉପଦେଷ୍ଟା ଭାବରେ କାର୍ଯ୍ୟ

କରୁଥିଲେ । ଯେଉଁ ବ୍ରିଟିଶ୍ କମ୍ୟୁନିଷ୍ଟମାନେ ଭାରତରେ ଶ୍ରମିକଶ୍ରେଣୀର ଆନ୍ଦୋଳନରେ ଭିତ୍ତିଭୂମି ପକାଇବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ରଜନୀ ପାମେ ଦତ୍ତ, ଫିଲ୍ଲିପ ସ୍ପ୍ରାଟ୍ ଏବଂ ବେନ୍ ବ୍ରାଡ଼ଲେ । ଏହି ବ୍ରିଟିଶ୍ କମ୍ୟୁନିଷ୍ଟମାନେ ଜୋଶୀଙ୍କୁ ତାଙ୍କର ତରୁଣ ଅବସ୍ଥାରେ ଅତ୍ୟଧିକ ପ୍ରଭାବିତ କରିଥିଲେ । ସେ ୧୯୨୮ ମସିହାରେ ସ୍ପ୍ରାଟ୍ ଓ ବ୍ରାଡ଼ଲେଙ୍କୁ ସାକ୍ଷାତ କରିଥିଲେ ଯେତେବେଳେ ସେ ଦେଖିଲେ ଯେ ସେମାନେ ସମ୍ପୂର୍ଣ୍ଣ ଭାରତୀୟ ହୋଇ ଯାଇଛନ୍ତି, ସେମାନଙ୍କ ସହିତ ରହୁଛନ୍ତି ଏବଂ ସେମାନଙ୍କ ପରି ବ୍ୟବହାର କରୁଛନ୍ତି ।

> "ସେମାନେ ଉତ୍ପ୍ରେରକ ଅଭିକର୍ତ୍ତା ଭାବରେ କାର୍ଯ୍ୟ କରୁଛନ୍ତି । କେମ୍ବ୍ରିଜ ସ୍ନାତକ ସ୍ପ୍ରାଟ୍ ଇତସ୍ତତଃ ବିକ୍ଷିପ୍ତ ଭାରତୀୟମାନଙ୍କୁ ସେମାନଙ୍କ ମଧ୍ୟରେ ଆଲୋଚନା କରି ଏକ ସହମତିଭିତ୍ତିକ ଜାତୀୟ ନୀତି ଗ୍ରହଣପୂର୍ବକ ସଂଗଠିତ ଆଞ୍ଚଳିକ ଗୋଷ୍ଠୀ ଗଠନ କରିବାରେ ସାହାଯ୍ୟ କରିଥିଲେ । ବ୍ରାଡ଼ଲେ ଯେ ଥିଲେ ଜଣେ ଇଞ୍ଜିନିୟରିଂ ଶ୍ରମିକ ଭାରତୀୟ ଶ୍ରମିକମାନଙ୍କୁ ପଢ଼ିବା, ଗପିବା ଏବଂ ସାମୟିକ ଶ୍ରମିକ ଶ୍ରେଣୀ ସମ୍ପର୍କରେ ଲେଖିବାଠାରୁ ଶ୍ରମିକ ଶ୍ରେଣୀ ସହିତ ଶାରିରୀକ ଭାବରେ ନିମଜ୍ଜିତ କରିବା ଏବଂ ସଂଗଠିତ କରିବାକୁ ଶିକ୍ଷା କରିବା ଓ ଶ୍ରମିକମାନଙ୍କୁ ନେତୃତ୍ୱ ଆଡ଼କୁ ନେବାରେ ନେତୃତ୍ୱ ନେଇଥିଲେ । ସେମାନେ ମିଳିତ ଭାବରେ ଭାରତୀୟମାନଙ୍କର ସହଜିଆ ମାର୍ଗ ମଧ୍ୟରେ କାର୍ଯ୍ୟପ୍ରଣାଳୀ ଓ ସଂଗଠନକୁ ପ୍ରବେଶ କରାଇଥିଲେ ।"[୧]

ସେମାନେ ଗାନ୍ଧି ଓ ଭାରତୀୟ ଜାତୀୟ କଂଗ୍ରେସ ନେତୃତ୍ୱର ଥିଲେ ସମାଲୋଚକ ।

ଏହି ସମୟରେ ଦେଶରେ ରେଳ, ବୟନ ଓ ଝୋଟଶିଳ୍ପ ଶ୍ରମିକମାନଙ୍କ ମଧ୍ୟରେ ବ୍ୟାପକ ଉଦ୍‌ବେଳନ ସୃଷ୍ଟି ହୋଇଥିଲା ।

> "ଡିସେମ୍ବର ୧୯୨୮ରେ କଲିକତାର ଶ୍ରମିକଶ୍ରେଣୀ ନିଜର ବର୍ଦ୍ଧିତ ରାଜନୈତିକ ପ୍ରତିବଦ୍ଧତା ଓ ପ୍ରଜ୍ଞାକୁ ପ୍ରଦର୍ଶନ କରି, ହଜାର ହଜାର ସଂଖ୍ୟାରେ ଶ୍ରମିକ ଓ କୃଷକ ଦଳର ନେତୃତ୍ୱରେ ଶୋଭାଯାତ୍ରାରେ ଯାଇ କଂଗ୍ରେସ ଅଧିବେଶନ ସ୍ଥଳରେ ପହଞ୍ଚି ଥିଲେ ଏବଂ ସଭାମଞ୍ଚକୁ ଦୁଇଘଣ୍ଟା ନିଜ ଅକ୍ତିଆରରେ ରଖି ସମ୍ପୂର୍ଣ୍ଣ ସ୍ୱାଧୀନତାର ପ୍ରସ୍ତାବ ଗ୍ରହଣ କରିଥିଲେ ।"[୨]

କମ୍ୟୁନିଷ୍ଟମାନଙ୍କର ଟ୍ରେଡ୍ ୟୁନିୟନ ମଧ୍ୟରେ ପ୍ରବେଶ ହେତୁ ଏହା ସମ୍ଭବ ହୋଇଥିଲା ।

---

୧. ପି.ସି. ଜୋଶୀ "ରଜନୀ ପାମେ ଦତ୍ତ ଓ ଭାରତୀୟ କମ୍ୟୁନିଷ୍ଟ" ।

୨. ସୁମିତ୍ ସରକାର, ମଡର୍ଣ୍ଣ ଇଣ୍ଡିଆ, ମ୍ୟାକ୍ ମିଲାନ୍, ଦିଲ୍ଲୀ, ୧୯୮୩, ପୃଷ୍ଠା ୨୬୯-୨୭୦ ।

ଧର୍ମଘଟ ଖୁବ୍ ଦ୍ରୁତଗତିରେ ଜାମସେଦପୁର, ବମ୍ବେ, କଲିକତାରୁ ଦେଶର ଅନ୍ୟ ପ୍ରାନ୍ତକୁ ବ୍ୟାପିଯିବା ଫଳରେ ବ୍ରିଟିଶ୍ ସରକାର ଚକିତ ହୋଇ ପଡ଼ିଥିଲେ । ସରକାର ପବ୍ଲିକ୍ ସେଫ୍ଟି ବିଲ୍ ଆଣି ବ୍ରିଟିଶ୍ କମ୍ୟୁନିଷ୍ଟମାନଙ୍କୁ ଅଟକ ରଖିବାକୁ ଚେଷ୍ଟା କରିଥିଲେ ଯେଉଁମାନେ ବଙ୍ଗ ଓ ବମ୍ବେ ଶ୍ରମିକମାନଙ୍କୁ ସଂଗଠିତ କରୁଥିଲେ। ଦି ଟ୍ରେଡ୍ ଡିସ୍‌ପ୍ୟୁଟ୍ ଆକ୍ଟ ୧୯୨୯ ଦ୍ୱାରା ଗଠିତ ଟ୍ରିବ୍ୟୁନାଲ ଧର୍ମଘଟକୁ ବେଆଇନ ଘୋଷଣା କରିବା ଉଦ୍ଦେଶ୍ୟରେ ଥିଲା । ସରକାର ଶ୍ରମିକ ନେତାମାନଙ୍କୁ ଦମନ କରିବାକୁ ଆରମ୍ଭ କଲେ। ମାର୍ଚ୍ଚ ୨୦, ୧୯୨୯ରେ ୩୧ଜଣ ଶ୍ରମିକ ନେତାଙ୍କୁ ବନ୍ଦୀ କରାଗଲା; ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ କମ୍ୟୁନିଷ୍ଟ ଏବଂ ସେଥି ସହିତ ଥିଲେ ତିନିଜଣ ବ୍ରିଟିଶ୍ କମ୍ୟୁନିଷ୍ଟ - ବ୍ରାଡ଼ଲେ, ସ୍ପ୍ରାଟ୍ ଏବଂ ହଚିନ୍‌ସନ- ଏବଂ ଭାରତୀୟ ଶ୍ରମିକ ନେତାମାନେ ଥିଲେ ଏସ୍.ଭି. ଘାଟେ, ଏସ୍.ଏ. ଡଙ୍ଗେ, ଏସ୍. ଏସ୍. ମିରାଜକର, ଡକ୍ଟର ଜି. ଅଧିକାରୀ, ମୁଜାଫର ଅହମ୍ମଦ, ଧରଣୀ ଗୋସ୍ୱାମୀ ଏବଂ ଗୋପେନ ଚକ୍ରବର୍ତ୍ତୀ । ମାର୍ଚ୍ଚ ୨୦, ୧୯୨୯ରେ ପି.ସି. ଜୋଷୀଙ୍କୁ ଏଲାହାବାଦର ହଲାଣ୍ଡ ହଷ୍ଟେଲରୁ ଉଠାଇ ନିଆଗଲା। ଅପରାଧୀମାନଙ୍କ ମଧ୍ୟରେ ସେ ଥିଲେ ସର୍ବ କନିଷ୍ଠ - ମାତ୍ର ୨୨ବର୍ଷ ବୟସ । ବାସ୍ତବରେ, ସେ ସେହିବର୍ଷ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇଥିଲେ । ମିରଟ୍‌ଠାରେ ଏହି ବିଚାର ତିନିବର୍ଷ ଧରି ଚାଲିଲା ଏବଂ ସେଇଥିପାଇଁ ଏହି କେଶ୍ ମିରଟ୍ ଷଡ଼ଯନ୍ତ୍ର ମାମଲା ଭାବରେ ଜଣାଶୁଣା ହେଲା।

ଏହି ବିଚାର ବ୍ରିଟିଶ୍‌ମାନଙ୍କ ପାଇଁ ଓଲଟା ଫଳ ହେଲା । ଜୋଷୀ କମ୍ୟୁନିଷ୍ଟମାନେ ସେମାନଙ୍କର ସରଳ ଓ ପ୍ରାଞ୍ଜଳ ତଥା ବିଶ୍ୱାସଯୋଗ୍ୟ ଆତ୍ମପକ୍ଷ ସମର୍ଥନ ବକ୍ତବ୍ୟ ମାଧ୍ୟମରେ ଅତ୍ୟନ୍ତ ସକ୍ଷମ ଭାବରେ ସେମାନଙ୍କର ଆଦର୍ଶ ଓ ସ୍ୱାଧୀନ ଭାରତର ପୁରୋଦୃଷ୍ଟିକୁ ଉପସ୍ଥାପିତ କରିଥିଲେ । ସେହିସବୁ ଭାଷଣମାନ ଗଣମାଧ୍ୟମରେ ବ୍ୟାପକ ଭାବେ ପ୍ରଚାରିତ ହୋଇଥିଲା। କଂଗ୍ରେସ ନେତୃତ୍ୱ ମିରଟ୍ ଷଡ଼ଯନ୍ତ୍ରକୁ ନିନ୍ଦା କରିଥିଲା ଓ ସର୍ବଭାରତୀୟ କଂଗ୍ରେସ କମିଟିର ପ୍ରାୟ ଆଠଜଣ ସଦସ୍ୟ ମିରଟ୍ ବନ୍ଦୀମାନଙ୍କର ସପକ୍ଷରେ କାର୍ଯ୍ୟ କରିବାରେ ସଂପୃକ୍ତ ଥିଲେ। ମିରଟ୍ ପ୍ରତିବାଦ ସମର୍ଥନ କମିଟି ମୋତିଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଗଠିତ କରାଯାଇଥିଲା। ମହାତ୍ମାଗାନ୍ଧି ଜେଲ୍‌କୁ ଯାଇ ବନ୍ଦୀମାନଙ୍କୁ ଭେଟିଥିଲେ । ଏହି ବିଚାର ଜାତୀୟତାବାଦୀ ଶକ୍ତିମାନଙ୍କ ସହିତ କମ୍ୟୁନିଷ୍ଟମାନଙ୍କର ସମ୍ପର୍କକୁ ନିକଟତର କରାଇଥିଲା।

ଅପରପକ୍ଷରେ ବନ୍ଦୀଶାଳା ମାର୍କ୍ସବାଦ ଶିକ୍ଷାର ପ୍ରକୃତ କେନ୍ଦ୍ର ହୋଇଥିଲା। ଏହି ସମୟରେ ଜୋଷୀ ଅତ୍ୟନ୍ତ ବ୍ୟଗ୍ରତାର ସହିତ ମାର୍କ୍ସବାଦର ସମସ୍ତ ସାହିତ୍ୟ ଅଧ୍ୟୟନ କରିଥିଲେ ଏବଂ ଜେଲ୍‌ରେ ଥିବା ପ୍ରବୀଣମାନେ ତାଙ୍କର ଦିଗ ନିର୍ଦ୍ଦେଶ କରୁଥିଲେ । ବନ୍ଦୀଜୀବନ ତାଙ୍କର ପରବର୍ତ୍ତୀ ଜୀବନ ପାଇଁ ଆଦର୍ଶଭିତ୍ତିକ ଶିକ୍ଷାଳୟ ହୋଇଯାଇଥିଲା । ସେ ସେହି ସମୟରେ ଅତ୍ୟନ୍ତ ମୂଲ୍ୟବାନ ଅନୁଭୂତି ନିଜ ପାଇଁ ଅର୍ଜନ କଲେ ଏବଂ ପରବର୍ତ୍ତୀ ସମୟରେ ନିଜ ଜୀବନ ସମ୍ପର୍କରେ ଲେଖିଥିଲେ,

"ସଂକ୍ଷେପରେ ଯେଉଁ ପ୍ରଖ୍ୟାତ ଓକିଲମାନେ ଆମ୍ଭମାନଙ୍କ ସପକ୍ଷରେ ଲଢୁଥିଲେ

କିନ୍ତୁ ଆମମାନଙ୍କର ଆଦର୍ଶ, ନୀତି ଏବଂ କାର୍ଯ୍ୟ ସମ୍ପର୍କରେ ଅବଗତ ନ ଥିଲେ, ମୁଁ ସମସ୍ତ ପ୍ରକାର ସାକ୍ଷ୍ୟକୁ (ଭାଷଣର ବିବରଣୀ, ରାଜନୈତିକ, ଟ୍ରେଡ୍ ୟୁନିୟନ ଏବଂ କୃଷକ ସମ୍ପର୍କିତ) ସେମାନଙ୍କ ପାଇଁ ଲେଖୁଥିଲି ଏବଂ ଏପରି ଲେଖୁଥିଲି ଯେ ସେମାନେ ତାହାକୁ ବୁଝିପାରିବେ ଏବଂ ତାହାକୁ କେବଳ ଆଇନଗତ କିମ୍ବା ନ୍ୟାୟଗତ ଭାବରେ ଉପସ୍ଥାପିତ ନକରି ରାଜନୈତିକ ପ୍ରତିବାଦ ଭାବରେ ଉପସ୍ଥାପିତ କରିବେ। ଆମର ପଣ୍ଡିତ ମୋତିଲାଲ ନେହେରୁଙ୍କ ଅଧ୍ୟକ୍ଷତାରେ ଗଠିତ ପ୍ରତିବାଦ କମିଟି ସହିତ ଚୁକ୍ତି ହୋଇଥିଲା ଯେ, ଏମ୍.ସି.ଚଗଲା, ଦିୱାନ ଚମନଲାଲ ପ୍ରଭୃତି ଓକିଲ ଯେଉଁମାନେ ନିମ୍ନକୋର୍ଟରେ ଲଢୁଥିଲେ ଏବଂ ହାଇକୋର୍ଟରେ ଲଢୁଥିବା ଓକିଲ ଡକ୍ଟର କେ.ଏନ୍. କାଟଜୁ ଓ ତାଙ୍କର ସହକାରୀ ମିସ୍ ଶ୍ୟାମାକୁମାରୀ ନେହେରୁ ଆମେ ଯେପରି ନିର୍ଦ୍ଦେଶ ଦେବୁ ସେପରି ରାଜନୈତିକ ପ୍ରତିବାଦ ସହିତ ସେମାନେ ଯାହା ଭଲ ଭାବିବେ ସେପରି ଆଇନଗତ ପ୍ରତିବାଦ ଉପସ୍ଥାପିତ କରିବେ। ଆନ୍ତର୍ଜାତୀୟ ନୀତି ପରିପ୍ରେକ୍ଷୀରେ ଭାରତର ଜାତୀୟ-ରାଜନୈତିକ ବାସ୍ତବତା ଏବଂ ଆମର ସର୍ବଶ୍ରେଷ୍ଠ ଆଭିମୁଖ୍ୟର ପ୍ରଚାର କିପରି ଉପସ୍ଥାପିତ କରାଯାଇପାରିବ, ଏହା ମୋତେ ମାର୍କ୍ସବାଦ-ଲେନିନ୍‌ବାଦ ଭାବିବାକୁ ଶିକ୍ଷା ଦେଇଥିଲା ।

ପ୍ରତ୍ୟେକ ଦିନ କୋର୍ଟର ବିବରଣୀ ସମ୍ବାଦଦାତାମାନଙ୍କ ନିକଟରେ ଉପସ୍ଥାପିତ କରିବାକୁ ହେଉଥିଲା ଯେଉଁମାନେ ଏ ସମ୍ପର୍କରେ ଅଜ୍ଞ ଥିଲେ ଏବଂ ନିଜେ କରିବାରେ ଅଳସୁଆ ଥିଲେ ଏବଂ ସେମାନଙ୍କୁ ମାଗଣାରେ ଓ ନିରାପଦରେ ନକଲ ଯୋଗାଇ ଦିଆ ଯାଉଥିବାରୁ କୃତଜ୍ଞ ଥିଲେ । ଏହି କାରଣରୁ ମିରଟ୍ ଷଡ଼ଯନ୍ତ୍ର ମାମଲା ରାଜନୈତିକ ଦୃଷ୍ଟିରୁ ଅଧିକ ପ୍ରଚାରିତ ହୋଇଥିଲା । ଯଦିଓ ଲାହୋର ମକଦ୍ଦମା (ଭଗତ ସିଂହଙ୍କର) ଥିଲା ଅତ୍ୟଧିକ ଉତ୍ତେଜନାପୂର୍ଣ୍ଣ ଓ ଚାଞ୍ଚଲ୍ୟକର।

ନିଜର ପ୍ରତିବାଦରେ, ପି.ସି. ଯୋଷୀ ଅତ୍ୟନ୍ତ ଚତୁରତାର ସହିତ ଯୁକ୍ତି କରିଥିଲେ। ପ୍ରତିବାଦ ଦସ୍ତାବିଜ ୬୫ ଟାଇପ୍ ପୃଷ୍ଠା ଥିଲା, ଯେକୌଣସି ରାଜନୈତିକ ମାମଲା ଅଧ୍ୟୟନ କରିବାର ଏକ ସ୍ୱୟଂ ସମ୍ପୂର୍ଣ୍ଣ ଶ୍ରେଷ୍ଠକୃତି । ସେ ଏପ୍ରିଲ ୨୪, ୧୯୩୧ ମସିହାରେ ଅତିରିକ୍ତ ସେସନ୍‌ସ ଜଜ୍ ଆର୍.ଏଲ୍. ୟୁର୍କେଙ୍କ ସମ୍ମୁଖରେ ନିଜର ପ୍ରତିବାଦ ନିମ୍ନପ୍ରକାର ଶବ୍ଦରେ ଉପସ୍ଥାପିତ କଲେ,

"ମୋ ନାମ ହେଉଛି ପୁରନ୍ ଚନ୍ଦ୍ର* ଯୋଷୀ, ମୋର ପିତାଙ୍କ ନାମ ପଣ୍ଡିତ ହରନନ୍ଦନ ଯୋଷୀ। ମୋର ଜାତି ଅନୁସାରେ ଜାତିବିହୀନ, ବୟସ ୨୪ବର୍ଷ, ବୃତ୍ତିରେ ଛାତ୍ର,

---

* ଯଦିଓ ଯୋଷୀ ନିଜକୁ ବନ୍ଧୁ ଓ ସମ୍ପର୍କୀୟମାନଙ୍କ ନିକଟରେ ପୁରନ୍ ଚନ୍ଦ୍ର ଯୋଷୀ ଭାବରେ ପରିଚିତ ଥିଲେ, କିନ୍ତୁ ସେ ଜଣାଶୁଣା ଥିଲେ ପୁରନ୍ ଚନ୍ଦ ଯୋଷୀ ଭାବେ ।

ମୋର ବାସସ୍ଥାନ ସହର ହେଉଛି ଅଲମୋଡ଼ା ପୁଲିସ୍ ଷ୍ଟେସନ ନିକଟରେ, ଅଲମୋଡ଼ା ଜିଲ୍ଲା, ଅଲମୋଡ଼ା; ମୁଁ ଅଲମୋଡ଼ାରେ ରହେ।"

ପୁଣି ଏକ ସମୟରେ ସେ କହିଲେ,

"ବ୍ରିଟିଶ୍ ସାମ୍ରାଜ୍ୟବାଦ କମ୍ୟୁନିଷ୍ଟର ଦ୍ୱାହି ଦେଇ ଏବଂ ଏହି ମାମଲାର ଆଧାରରେ ବିବେଚନା କରି ଜାତୀୟ ମୁକ୍ତି ପାଇଁ ସମସ୍ତ ସଂଗ୍ରାମ ଓ ସଂଗଠନକୁ ଅର୍ଥାତ୍ ବିପ୍ଳବ ମାଧ୍ୟମରେ ସ୍ୱାଧୀନତାର ମଞ୍ଚକୁ ଅବୈଧ ଘୋଷଣା କରୁଛି ଏବଂ ପରବର୍ତ୍ତୀ ସମୟରେ ଆଇନ କରି ଅପରାଧୀ ବୋଲି କହୁଛି । ଏହି ମାମଲା (ମିରଟ୍ ଷଡ଼ଯନ୍ତ୍ର ମାମଲା) ଅହିତକାରୀ ପ୍ରତିବିପ୍ଳବ ଭାବେ କୁତ୍ସା ପ୍ରଚାର ବ୍ୟତୀତ ଅନ୍ୟ କିଛି ନୁହେଁ।"

ସେ ବ୍ରିଟିଶ୍ ସାମ୍ରାଜ୍ୟବାଦର ଶୋଷଣ ଚରିତ୍ରକୁ ଉନ୍ମୋଚନ କରି ପରିସମାପ୍ତି କଲେ। ତାଙ୍କ ଯୁକ୍ତିର ତନ୍ତୁ ବିନ୍ୟାସ ଜଣେ ନେତା ଗଠନ ହେବାର ଦେଖିଲା।

ବ୍ରିଟିଶ୍ ସାମ୍ରାଜ୍ୟବାଦ, ପଚମାନ ଭାରତୀୟ ସାମନ୍ତବାଦ ଓ ଦୁର୍ନୀତିଗ୍ରସ୍ତ ଭାରତୀୟ ପୁଞ୍ଜିବାଦ ସହିତ ମିଶି ଏପରି ଏକ ସାମାଜିକ ବ୍ୟବସ୍ଥା ସୃଷ୍ଟି କରିଛି ଯାହା ଭାରତୀୟ ଜନଗଣଙ୍କୁ ଅବର୍ଣ୍ଣନୀୟ ଦାରିଦ୍ର୍ୟ ଓ ଅସମାନ୍ତର କ୍ରୀତଦାସତ୍ୱ ମଧ୍ୟକୁ ଠେଲି ଦେଇଛି। ଭାରତର ସାମାଜିକ ବିକାଶ ଓ ଭାରତୀୟ ଲୋକମାନଙ୍କର ଜୀବନ ଏହି ବୁର୍ଜୁଆ-ସାମନ୍ତବାଦୀ ସାମ୍ରାଜ୍ୟବାଦ ସମ୍ପୂର୍ଣ୍ଣ ଭାଙ୍ଗିଯିବାକୁ ଦାବିକରେ । ଏହି ତ୍ରୁଟିପୂର୍ଣ୍ଣ ଓ ଅସହ୍ୟ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ କରି, ବିପ୍ଳବୀ ଭାବରେ ଗଣାହୋଇ, ଆମ୍ଭମାନଙ୍କୁ ଦୋଷୀ ସାବ୍ୟସ୍ତ ବନ୍ଦୀ ବୋଲି ଗଣାଯିବ । କେତେକ ବିପ୍ଳବୀମାନଙ୍କଠାରୁ ସେମାନଙ୍କର ବ୍ୟକ୍ତିଗତ ସ୍ୱାଧୀନତା ଛଡ଼ାଇ ନେଲେ ମଧ୍ୟ ବିପ୍ଳବକୁ ମୁଲତବି ରଖାଯାଇ ପାରିବ ନାହିଁ । ବିପ୍ଳବ ଅବଶ୍ୟମ୍ଭାବୀ ଓ ଆବଶ୍ୟକ । ଏହା ନିଶ୍ଚିତ ଆସିବ । ଜାତୀୟ ବିପ୍ଳବ ହେଉଛି ଭାରତୀୟ ଜନଗଣଙ୍କ ଦ୍ୱାରା ବ୍ରିଟିଶ୍ ସାମ୍ରାଜ୍ୟବାଦର ଐତିହାସିକ ଗାଦିଚ୍ୟୁତ ଏବଂ ଏହା ପରେ ଗୁଳି, ଶବ୍ଦ କଥା କହିବ ନାହିଁ ।

ଆମ ବିରୁଦ୍ଧରେ ହୋଇଥିବା ଅଭିଯୋଗ ସମ୍ପର୍କରେ କହିବାକୁ ଗଲେ, ଆମେ ଏହାକୁ ଆମ ଚିନ୍ତାର ପ୍ରବଞ୍ଚନାତ୍ମକ ଅଭିଯୋଜନ ଭାବେ ବିଚାର କରୁ ଏବଂ ଏହାକୁ ଗୁରୁତ୍ୱର ସହ ଗ୍ରହଣ କରୁନୁ, କିନ୍ତୁ ଆମେ ଏହି ବିଚାରଣକୁ ଗୁରୁତ୍ୱର ସହିତ ନେଉନୁ । ଏହି ମାମଲାରେ ଆମେ ବିଚାରଣରେ ନାହୁଁ ବରଂ ଆମର ଶେଷ ନ୍ୟାୟମୂର୍ତ୍ତି, ଭାରତର ଜନଗଣଙ୍କ ସମ୍ମୁଖରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିଚାରଣରେ ଅଛି। ଆମେମାନେ ଦୋଷୀ ନୋହୁଁ ବରଂ ଆମେ ଅଭିଯୋକ୍ତା। ଆମ୍ଭମାନଙ୍କର ତିଳେମାତ୍ର ସନ୍ଦେହ ନାହିଁ ଯେ ଆମ୍ଭମାନଙ୍କର ପ୍ରକୃତ ନ୍ୟାୟମୂର୍ତ୍ତିମାନଙ୍କର ପରିସମାପ୍ତି ରାୟ "ବିପ୍ଳବ" ଦିଗକୁ ବ୍ୟାପ୍ତ ହେବ । ମିଃ ମିତ୍ର, କନିଷ୍ଠ ସରକାରୀ

ଓକିଲ, ମୋତେ ଜାଣିଶୁଣି ବାଧା ପ୍ରଦାନ କରୁଛନ୍ତି, କିନ୍ତୁ ସେହି ଐତିହାସିକ ଦିନରେ ସେ ନ ହସି, କାନ୍ଦିବେ ।

ମିଃ କେମ୍ପିଙ୍କର ଅନୁଭବ ହେବା ଉଚିତ ଯେ ଆମ୍ଭେମାନେ ବିପ୍ଳବୀ, ସଂସ୍କୃତିବିହୀନ ଗୁଣ୍ଡା ନୋହୁଁ ।

ଭାରତରେ ବ୍ରିଟିଶ୍ ସାମ୍ରାଜ୍ୟବାଦର ଆର୍ଥିକ ଶୋଷଣକୁ ଅନାବୃତ କରି, ସେ ପ୍ରଚଳିତ ସାମନ୍ତବାଦୀ ବ୍ୟବସ୍ଥା ସମ୍ପର୍କରେ ବ୍ୟାଖ୍ୟା କଲେ । ଏ ସମ୍ପର୍କରେ ସେ ଆରପିଡ଼ି ଓ ଅଟୋ କଉସିନେନ୍ ୧୯୨୮ ମସିହାରେ କୋମିନ୍‌ଟର୍ନର ଷଷ୍ଠ ବିଶ୍ୱ କଂଗ୍ରେସକୁ ଦେଇଥିବା ରିପୋର୍ଟ ଦ୍ୱାରା ପ୍ରଭାବିତ ହୋଇଥିଲେ । ଏହି ଦସ୍ତାବିଜ ଓ ମାର୍ଚ୍ଚ ୧୯୩୦ରେ ଭାରତରେ ହୋଇଥିବା ଚିଠା ପ୍ରସ୍ତାବରେ ଭାରତୀୟ କମ୍ୟୁନିଷ୍ଟମାନେ ଗାନ୍ଧୀବାଦ ବିରୁଦ୍ଧରେ ସଂଗ୍ରାମ କରିବାକୁ କୁହାଯାଇଥିଲା କାରଣ ଏହା ପ୍ରତି-ବିପ୍ଳବର ଭୂମିକା ତୁଲାଉଥିଲା ।

"ଶ୍ରମିକ କୃଷକ ଦଳମାନଙ୍କୁ ଛୋଟିଆ ବୁର୍ଜୁଆ ସଂଗଠନ ଭାବରେ ଚିତ୍ରିତ କରାଯାଇ ଶ୍ରମିକ ଓ କୃଷକମାନଙ୍କର ଆନ୍ଦୋଳନ ଉପରେ ହସ୍ତକ୍ଷେପ କରାଯାଉଥିଲା । ଏକ କେନ୍ଦ୍ରୀୟ ଦଳ ସ୍ଥାପନ କରିବାର ଆହ୍ୱାନ କରାଯାଇ, କମ୍ୟୁନିଷ୍ଟମାନଙ୍କୁ ସେମାନଙ୍କର ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବର କାର୍ଯ୍ୟକ୍ରମକୁ ନିମ୍ନୋକ୍ତ ଆହ୍ୱାନ ଆଧାରରେ ଉପସ୍ଥାପିତ କରିବାକୁ କୁହାଗଲା । ସାଧାରଣ ରାଜନୈତିକ ଧର୍ମଘଟ ହେଉଛି କେନ୍ଦ୍ରୀୟ କାର୍ଯ୍ୟ, ସଶସ୍ତ୍ର ବିପ୍ଳବ ପାଇଁ ପ୍ରଚାର ଏବଂ ସୋଭିଏତ୍ ବିପ୍ଳବ ଏହାର ସଂଗଠନ, କୃଷିକ୍ଷେତ୍ରରେ ବିପ୍ଳବ, ସାମ୍ରାଜ୍ୟବାଦର ସଂଗଠନର ଉନ୍ମୁଳନ ଏବଂ ସୋଭିଏତ୍ ଢାଞ୍ଚାରେ ଶ୍ରମିକ ଶ୍ରେଣୀ ଓ କୃଷକମାନଙ୍କର ବୈପ୍ଳବିକ ଏକଛତ୍ରବାଦ ।"[୩]

ପ୍ରସିଦ୍ଧ କମ୍ୟୁନିଷ୍ଟ ସାଂସଦ ହୀରେନ୍ ମୁଖାର୍ଜୀଙ୍କ ଭାଷାରେ ଯୋଶୀ ହୋଇଯାଇଥିଲେ 'ତରୁଣ ଚମତ୍କାରିତା' ।

"ଶିକ୍ଷାଗତ ଉତ୍କର୍ଷତା ସତ୍ତ୍ୱେ ଯୋଶୀ ଗଭୀର ଭାବରେ ବିପ୍ଳବ ଆଡ଼କୁ ଟାଣି ହୋଇ ଆସିଥିଲେ ଯଦିଓ ସେ ବଞ୍ଚିବା ପାଇଁ ସୁବିଧା ବାଟକୁ ଆପଣାଇ କରିଥାନ୍ତେ । ସେ ଥିଲେ ମିରଟ୍ ଷଡ଼ଯନ୍ତ୍ର ବନ୍ଦୀମାନଙ୍କ ମଧ୍ୟରେ ସର୍ବକନିଷ୍ଠ । ତାଙ୍କର ଗୁଣାତ୍ମକ ଇଂରାଜୀ ପ୍ରୟୋଗ ଆଶ୍ଚର୍ଯ୍ୟ ଭାବରେ ଥିଲା ବୁଦ୍ଧିଗତ ଓ ସଂକ୍ଷିପ୍ତ (ଯାହା ବ୍ରିଟିଶ୍ ବିଚାରପତିଙ୍କୁ ଆଶ୍ଚର୍ଯ୍ୟ କରିଥିଲା) । ଜେଲ୍ ମଧ୍ୟରେ କେତେକ ଉଚ୍ଚ ଶ୍ରମିକ ନେତାଙ୍କ ସହିତ ରହି କିପରି ସାମ୍ରାଜ୍ୟବାଦ ଦ୍ୱାରା ପ୍ରାଚୀନ ଭାରତର ଅବସ୍ଥା

---

୩. ଶୋଭନ ଲାଲ ଦତ୍ତ ଗୁପ୍ତା, କୋମିନ୍‌ଟର୍ନ ଆଣ୍ଡ ଦି ଡେଷ୍ଟିନୀ ଅଫ୍ କମ୍ୟୁନିଜମ୍ ଇନ୍ ଇଣ୍ଡିଆ, ୧୯୧୯-୧୯୪୩, ସେରିବାନ୍, କଲିକତା ୨୦୦୬, ପୃଷ୍ଠା ୧୪୧ ।

ଜଟିଳ ହୋଇଥିଲା, ତାହାର ସଠିକ୍ ଅବଧାରଣ ତାଙ୍କ ମନରେ ହୋଇଥିଲା।"[୪]

ଜଣେ ବନ୍ଦୀ ଭାବରେ ଜୋଷୀ ନିଜ ପାଇଁ ତିନିଗୋଟି କାରଣ ଯୋଗୁଁ ସ୍ଥାନ ପ୍ରସ୍ତୁତ କରିଥିଲେ । ପ୍ରଥମତଃ ସେ ଅତ୍ୟନ୍ତ ଉଚ୍ଚକୋଟିର ଚିଠାକାର ଥିଲେ, କାରଣ ଲେଖିବାର କୁଶଳତା ତାଙ୍କୁ ଜଣାଥିଲା । ସେ ଆଇନଗତ ଚିଠା, ଦାବିପତ୍ର ଇତ୍ୟାଦି ଲେଖୁଥିଲେ । ଦ୍ୱିତୀୟତଃ, ସେ ନିଜର ନମ୍ର ଓ ସ୍ୱୟଂ ନ୍ୟୂନତା ପ୍ରକୃତି ହେତୁ ଅନ୍ୟମାନଙ୍କୁ ପ୍ରଭାବିତ କରିପାରୁଥିଲେ ଏବଂ ସମସ୍ତଙ୍କୁ ଏକାଠି କରିବାକୁ ଚେଷ୍ଟା କରୁଥିଲେ । ତୃତୀୟତଃ, ଜେଲ୍‌ରେ ରହି ମଧ୍ୟ ସେ ଏକ ଶୃଙ୍ଖଳିତ ଜୀବନ ବଞ୍ଚୁଥିଲେ – ତାଙ୍କର ଚମତ୍କାର ବଗିଚାକାମ ସମସ୍ତଙ୍କର ପ୍ରଶଂସନୀୟ ଥିଲା।

୧୯୩୩ରେ ଜେଲରୁ ମୁକ୍ତି ପାଇବା ପରେ, ଜୋଷୀ ଉତ୍ତର ପ୍ରଦେଶରେ ପାର୍ଟି ସଂଗଠକ ଭାବରେ କାର୍ଯ୍ୟ କଲେ । ତାଙ୍କର କର୍ମସ୍ଥଳ ହେଲା ଶିଳ୍ପାଞ୍ଚଳ କାନପୁର । 'ସେଠାରେ' ଜୋଷୀଙ୍କ ଭାଷାରେ, "ମୁଁ ମୋର ଆବଶ୍ୟକ ହେଉଥିବା ଶ୍ରମିକଶ୍ରେଣୀର ଆନ୍ଦୋଳନ ସମ୍ପର୍କରେ ଦୀକ୍ଷିତ ହେଲି, କିନ୍ତୁ ଯେହେତୁ ମୋର ତାରୁଣ୍ୟର ଉଦ୍‌ବେଳନ ଥିଲା, ମୁଁ ମୁରମିଲ ଧର୍ମଘଟରେ ନିଜକୁ ବନ୍ଦୀ କରାଇଲି ଯାହା ୧୯୩୪ ମସିହା ଅବରୋହ ବର୍ଷରେ ହୋଇଥିବା ସର୍ବଭାରତୀୟ ବୟନଶିଳ୍ପ ଧର୍ମଘଟର ଅଂଶବିଶେଷ ଥିଲା । ଧାରା ୧୨୪ (କ) ଓ ୧୫୩ (କ) ଅନୁସାରେ ଜୋଷୀଙ୍କୁ ଦୁଇବର୍ଷ କାରାଦଣ୍ଡ ଦିଆଯାଇଥିଲା, କିନ୍ତୁ ଆଦର୍ଶ ମାଳି ଓ ଧୋବା ଭାବରେ ଉତ୍ତମ କାର୍ଯ୍ୟକରି ତାଙ୍କୁ ସର୍ବାଧିକ ଛ'ମାସର ଅବ୍ୟାହତି ଦିଆଯାଇଥିଲା ।

ଜାତୀୟ ଦୃଶ୍ୟପଟରେ, ବ୍ରିଟିଶ୍ ସରକାର ଓ ଭାରତୀୟ ନେତାମାନଙ୍କ ମଧ୍ୟରେ ଲଣ୍ଡନଠାରେ ଚାଲିଥିବା ଗୋଲ ଟେବୁଲ ବୈଠକ ଅସଫଳ ହୋଇଥିଲା। ଏହାର ପରିଣାମ ହେଲା ଗାନ୍ଧିଜୀଙ୍କ ଦ୍ୱାରା ଆଇନ ଅମାନ୍ୟ ଆନ୍ଦୋଳନର ପୁନଃ ପ୍ରାରମ୍ଭ। ଏହା ଫଳରେ କଂଗ୍ରେସ ଦଳକୁ ଅବୈଧ ଘୋଷଣା କରାଗଲା ଏବଂ ଜନଗଣଙ୍କ ଉପରେ ଦମନଲୀଳା ଚାଲିଲା। କମ୍ୟୁନିଷ୍ଟମାନେ ଗାନ୍ଧିଜୀଙ୍କର ଆଇନ ଅମାନ୍ୟ ଆନ୍ଦୋଳନର ରାଜନୈତିକ ଗୁରୁତ୍ୱକୁ ସଠିକ୍ ଭାବରେ ହୃଦୟଙ୍ଗମ କରି ପାରିଲେ ନାହିଁ ଏବଂ ସ୍ୱାଧୀନତା ସଂଗ୍ରାମର ମୂଳସ୍ରୋତଠାରୁ ବିଚ୍ଛିନ୍ନ ହୋଇ ରହିଗଲେ । କମ୍ୟୁନିଷ୍ଟ ଆନ୍ଦୋଳନର ଅଗ୍ରଗାମୀମାନଙ୍କ ଦ୍ୱାରା ଯେଉଁ ସଫଳତା ମିଳିଥିଲା, ତାହାର ଦ୍ରୁତ ଅବକ୍ଷୟ ହେଉଥିବାର ଅସହାୟ ଦର୍ଶକ ଥିଲେ ଜୋଷୀ ମିରଟ୍ ବନ୍ଦୀ ହେବା ଫଳରେ ଯେଉଁ ଶୂନ୍ୟତା ସୃଷ୍ଟି ହୋଇଥିଲା ତାହା ବି.ଟି. ରଣଦିଭେ ଓ ଦେଶପାଣ୍ଡେଙ୍କ ଦ୍ୱାରା ପୂର୍ଣ୍ଣ ହେବାକୁ ଲାଗିଲା, ଯେଉଁମାନେ କି କୋମିନ୍‌ଟର୍ନଙ୍କ ନିର୍ଦ୍ଦେଶରେ କେବଳ ଜାତୀୟ ବୁର୍ଜୁଆ ନେତୃତ୍ୱକୁ ନିନ୍ଦା କଲେ ନାହିଁ, ବରଂ ସ୍ୱାଧୀନତା ସଂଗ୍ରାମକୁ ଗ୍ରହଣ କଲେ ନାହିଁ ଏବଂ ୧୯୩୦-୩୪ ମସିହା ପର୍ଯ୍ୟନ୍ତ ଯେଉଁ ଆଇନ ଅମାନ୍ୟ ଆନ୍ଦୋଳନ ହେଲା ସେଥିରୁ ନିଜକୁ ବିଚ୍ଛିନ୍ନ ରଖିଲେ। ଏ ସମ୍ପର୍କରେ ବି ଜୋଷୀ ଲେଖିଥିଲେ, "ଏହି ଅପରିଣତ ଭୁଲ୍ ପାଇଁ ଐତିହାସିକ

---

୪. ହୀରେନ୍ ମୁଖାର୍ଜୀ, "ଜୋଷୀ - ଦି ମ୍ୟାନ୍", ନିଉ ଏଜ୍, ନଭେମ୍ବର ୧୬, ୧୯୮୦ ।

ମୂଲ୍ୟ ଦେବାକୁ ପଡ଼ିଲା ଓ ୧୯୩୧ ମସିହାରେ ପାର୍ଟି ମଧ୍ୟରେ ପ୍ରଥମ ବିଭାଜନ ହେଲା। କମ୍ରେଡ଼ ରଣଦିଭେ ଓ ଦେଶପାଣ୍ଡେଙ୍କ ମଧ୍ୟରେ ବାମପନ୍ଥୀବାଦ ଭିତରେ ପ୍ରତିଯୋଗିତା ଲାଗିଲା।"[୫]

କମ୍ୟୁନିଷ୍ଟ ପାର୍ଟି ପ୍ରାଥମିକ ସ୍ତରରେ ଥିଲା, ନିଜର ସାଂଗଠନିକ ଦୋଷ ଦୁର୍ବଳତା ପ୍ରତି ଅଧିକ ସଚେତନ ଥିଲା ଏବଂ ସେହି ହେତୁ ଷଷ୍ଠ କମ୍ୟୁନିଷ୍ଟ ଆନ୍ତର୍ଜାତୀୟରେ ଯେଉଁ ରାଜନୈତିକ ମାର୍ଗ ଗ୍ରହଣ କରାଗଲା, ତାହାର ଫଳ ଦାୟିକା ଶକ୍ତି ବା ସମ୍ଭବପରତା ସମ୍ପର୍କରେ ପ୍ରଶ୍ନ କରାଗଲା ନାହିଁ । ମିରଟ୍ ଦୋଷୀମାନେ ଜେଲ୍ ମଧ୍ୟରେ ଥାଇ ବାହାରେ ଥିବା କମ୍ରେଡ଼ମାନଙ୍କ ନିକଟକୁ ସେମାନଙ୍କର ମତ ପଠାଇଲେ । ସେମାନେ ମତଦେଲେ ଯେ ସେମାନଙ୍କର ରାଜନୈତିକ ମାର୍ଗ ଅବାସ୍ତବ ଏବଂ ଏପରିକି ବୈପ୍ଳବିକ ଉଦ୍‌ଘୋଷଣା ସେମାନଙ୍କୁ ଏପରିକି କମ୍ୟୁନିଷ୍ଟ କର୍ମୀମାନଙ୍କଠାରୁ ଅଲଗା କରିଦେବ ଏବଂ ଜନଗଣଙ୍କଠାରୁ ମଧ୍ୟ, କିନ୍ତୁ ଅନୁରକ୍ତ କମ୍ରେଡ଼ ହୋଇଥିବା ହେତୁ ସେମାନେ ସେହି ମୌଳିକତା ଉପରେ ପ୍ରଶ୍ନ ଉଠାଇ ନ ଥିଲେ । ପି.ସି. ଯୋଷୀ ଲେଖିଥିଲେ,

> "ମିରଟ୍‌ର ସେସନ୍‌ସ ବିଚାରପତିଙ୍କ ସମ୍ମୁଖରେ ଆମେ ଯେଉଁ ମିଳିତ ବିବୃତି ପ୍ରଦାନ କରିଥିଲୁ ତାହା ଷଷ୍ଠ କଂଗ୍ରେସ ମାର୍ଗ ଉପରେ ଆଧାରିତ ଥିଲା, ଏକ ସଶକ୍ତ ପେଟି-ବୁର୍ଜୁଆ ବୈପ୍ଳବିକ ଦସ୍ତାବିଜ ଏବଂ ଭାରତୀୟ ଅବସ୍ଥାକୁ ଚାହିଁ ମାର୍କ୍ସବାଦ-ଲେନିନ୍‌ବାଦର ସର୍ଜନାତ୍ମକ ପ୍ରୟୋଗ ନ ଥିଲା ।"[୬]

ଏଥିରୁ ସ୍ପଷ୍ଟ ଦେଖାଯାଏ ଯେ ଯୋଷୀ କମ୍ୟୁନିଷ୍ଟମାନେ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗ ନ ଦେଇ ଯେଉଁ ରାଜନୈତିକ ମାର୍ଗ ଗ୍ରହଣ କଲେ, ସେଥିରେ ସେ ସନ୍ତୁଷ୍ଟ ନ ଥିଲେ।

ବର୍ଦ୍ଧିତ ଫାସିବାଦର ବିପଦ ଏବଂ ଯୁଦ୍ଧ ଏବଂ ପରିଶେଷରେ ମିତ୍ରଶକ୍ତି ଭାବେ ବ୍ରିଟେନ୍, ଫ୍ରାନ୍ସ, ଆମେରିକା ଓ ମିଳିତ ଶକ୍ତି ଭାବେ ଜର୍ମାନୀ, ଇଟାଲୀ, ଜାପାନ ଇତ୍ୟାଦି ରାଷ୍ଟ୍ରର ବିଭାଜନ ସମଗ୍ର ବିଶ୍ୱକୁ ଟାଗୋରଙ୍କ ଭାଷାରେ "ସଭ୍ୟତାର ସଂକଟ" ସୃଷ୍ଟି କଲା । ଆନ୍ତର୍ଜାତିକ କମ୍ୟୁନିଷ୍ଟଗୁଡ଼ିକରେ ବିଶେଷ କରି ଭାରତ ଓ ଚୀନ୍‌ରେ ଆନ୍ଦୋଳନ ଫାସିବାଦର ବିପଦକୁ ଲକ୍ଷ୍ୟକରି, ମେହନତି ମଣିଷମାନଙ୍କ ଉପନିବେଶବାଦ ଓ ଅର୍ଦ୍ଧଉପନିବେଶବାଦ ରାଷ୍ଟ୍ର ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ଗୋଷ୍ଠୀମାନଙ୍କୁ ସମର୍ଥନ କରିବାକୁ ଏବଂ ପାଶ୍ଚାତ୍ୟର ବିକଶିତ ରାଷ୍ଟ୍ରମାନଙ୍କରେ ଲୋକପ୍ରିୟ ମଞ୍ଚ ଗଠନ କରିବାକୁ ଆହ୍ୱାନ ଦେଲେ । ୧୯୩୫ର କମ୍ୟୁନିଷ୍ଟ ଆନ୍ତର୍ଜାତୀୟ ତା'ର ଶେଷ-ସପ୍ତମ କଂଗ୍ରେସରେ ସଂଯୁକ୍ତ ମୋର୍ଚ୍ଚା ନୀତିର ନୂତନ ମାର୍ଗ ଗ୍ରହଣ କଲେ। ସେହିପରି ଭାବରେ, ଆନ୍ତର୍ଜାତିକ କମ୍ୟୁନିଷ୍ଟ କଂଗ୍ରେସ ନେତୃତ୍ୱ ଉପରେ ଥିବା ତାଙ୍କ ବିଚାର

---

୫. ପି.ସି. ଯୋଷୀ "ରଜନୀ ପାମେ ଦତ୍ତ ଓ ଭାରତୀୟ କମ୍ୟୁନିଷ୍ଟ ।"

୬. ତତ୍ରୈବ।

ପରିବର୍ତ୍ତନ କଲେ ଏବଂ କଂଗ୍ରେସକୁ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ସଂଗଠନ ଭାବେ ବିଚାର କରିବାକୁ ଆରମ୍ଭ କଲେ ।

୧୯୩୫ ମସିହାରେ ହୋଇଥିବା କୋମିନ୍‌ଟର୍ନର ୭ମ ବିଶ୍ୱ କଂଗ୍ରେସ କମ୍ୟୁନିଷ୍ଟ ଆନ୍ଦୋଳନ ଇତିହାସରେ ଏକ ସନ୍ଧିକ୍ଷଣ । ସେହି କଂଗ୍ରେସରେ ଭାରତ ପକ୍ଷରୁ ଗ୍ରେଟ୍ ବ୍ରିଟେନ୍ କମ୍ୟୁନିଷ୍ଟ ପାର୍ଟିର ବେନ୍ ବ୍ରାଡ଼ଲେ ଓରଫ୍ ଡାମ୍ଭେ ଯେ କି ମିରଟ୍ ଷଡ଼ଯନ୍ତ୍ର ମାମଲାରେ ଅଭିଯୁକ୍ତ ଥିଲେ, ବକ୍ତବ୍ୟ ରଖିଥିଲେ ।

ସେ କହିଥିଲେ,

"ଭାରତର ଯୁବ କମ୍ୟୁନିଷ୍ଟ ପାର୍ଟି ଜାତୀୟ ସଂସ୍କାରବାଦୀ ନୀତିର ଦୋଷତ୍ରୁଟିକୁ ଅନାବୃତ କରିଛି ଏବଂ ସାମ୍ରାଜ୍ୟବାଦ ବିରୋଧୀ ଓ ସାମନ୍ତବାଦ ବିରୋଧୀ ଆହ୍ୱାନ ଦେଇ ଜନଗଣଙ୍କ ମଧ୍ୟରେ କାର୍ଯ୍ୟ କରୁଛି । ତଥାପି, ଏ ପର୍ଯ୍ୟନ୍ତ ଜାତୀୟ ସଂସ୍କାରବାଦୀଙ୍କ ପ୍ରଭାବକୁ ପଙ୍ଗୁ କରିବାକୁ ସମର୍ଥ ହୋଇନାହିଁ । ଏକ ବୈପ୍ଳବିକ ଆନ୍ଦୋଳନ ପାଇଁ ଏହା ଲୋକମାନଙ୍କ ମଧ୍ୟରୁ ଆଗୁଆ ଓ କର୍ମଠ ବ୍ୟକ୍ତିମାନଙ୍କୁ ନିଜ ଆଡ଼କୁ ଆକର୍ଷିତ କରିବାରେ ସକ୍ଷମ ହୋଇନି, କିମ୍ବା ଜାତୀୟ କଂଗ୍ରେସର ପ୍ରଭାବରୁ ସେମାନଙ୍କୁ ମୁକ୍ତ କରିପାରିନି । ତଥାପି ଏ ଦିଗରେ କିଛି ଆଂଶିକ ସଫଳତା ମିଳିଛି ।

ସେହି କାରଣରୁ ଜନଗଣ, ଗାନ୍ଧିଙ୍କ ନେତୃତ୍ୱ ପ୍ରତି ଅସନ୍ତୋଷ ବ୍ୟକ୍ତ କରୁଥିଲେ ମଧ୍ୟ ଏବଂ ଅନ୍ୟମାନେ, ଯେଉଁମାନେ ସାମ୍ରାଜ୍ୟବାଦ ସହିତ ସମଝୋତା ଓ ସର୍ତ୍ତ ସହିତ ଆତ୍ମସମର୍ପଣ କରୁଛନ୍ତି ସେମାନେ କଂଗ୍ରେସଠାରୁ ଅଲଗା ହେଉନାହାନ୍ତି ଏବଂ କେତେକ ଦୃଷ୍ଟିରୁ ସେମାନେ ବିଚାର କରୁଛନ୍ତି ଯେ କଂଗ୍ରେସ ଯାହାକି ଜାତୀୟ ସଂସ୍କାରବାଦୀ ବୁର୍ଜୁଆ ଓ ଜମିଦାରମାନଙ୍କ ପ୍ରତି ଉଦାର ତଥାପି ସାମ୍ରାଜ୍ୟବାଦ ବିରୁଦ୍ଧରେ ଜାତୀୟସ୍ତରରେ ବିରୋଧ କରୁଥିବା ସଂଗଠନ ।"[୭]

୧୯୩୬ ମସିହାରେ ରଜନୀ ପାମେ ଦତ୍ତ - ବେନ୍ ବ୍ରାଡ଼ଲେ ତତ୍ତ୍ୱ ଯାହା ସଂଯୁକ୍ତ ମୋର୍ଚ୍ଚାର କୌଶଳକୁ ପ୍ରୋତ୍ସାହନ ଦେଇଥିଲା ତାହାକୁ ଭାରତୀୟ କମ୍ୟୁନିଷ୍ଟ ପାର୍ଟି କାର୍ଯ୍ୟରେ ଲଗାଇଲା । ଏହି ତତ୍ତ୍ୱ ଫେବୃୟାରୀ ୨୯, ୧୯୩୬ରେ ଇମ୍‌ପ୍ରେକରରେ ପ୍ରକାଶିତ ହୋଇଥିଲା । ଏହା ଷଷ୍ଠ କଂଗ୍ରେସର ଗୋଷ୍ଠୀଗତ ମାର୍ଗ ଓ ସପ୍ତମ କଂଗ୍ରେସର ଜାତୀୟ ମୋର୍ଚ୍ଚାର ସମ୍ଭାବନା ମଧ୍ୟରେ ଦୋଳାୟମାନ ସ୍ଥିତିକୁ ଦୂର କରିଥିଲା । ଏହି ପରିବର୍ତ୍ତିତ ରାଜନୈତିକ ମାର୍ଗକୁ ଭାରତୀୟ କମ୍ୟୁନିଷ୍ଟମାନେ ଗ୍ରହଣ କରି ଯାହାକୁ ଏ ପର୍ଯ୍ୟନ୍ତ ସଂସ୍କାରବାଦୀ ସଂଗଠନ ଭାବେ ଅଭିହିତ କରୁଥିଲେ, ତାହା ସହିତ ଏକାଠି କାର୍ଯ୍ୟ କରିବା ସେମାନଙ୍କ ପକ୍ଷରେ କଷ୍ଟକର ଥିଲା କିନ୍ତୁ ୟୁରୋପର ଘଟଣାବଳୀ, ଫାସିବାଦର ଉଦ୍ଭବ ଏବଂ ପ୍ରତିରୋଧ ପାଇଁ ଲୋକପ୍ରିୟ ମଞ୍ଚର

---

୭. ଶୋଭନ ଲାଲ ଦତ୍ତ ଗୁପ୍ତା - ପୃଷ୍ଠା ୧୮୩-୧୮୪ ।

ଆବଶ୍ୟକତା ହେତୁ ପରବର୍ତ୍ତୀ ସମୟରେ ସେମାନଙ୍କର ମାନସିକତାର ପରିବର୍ତ୍ତନ ହେଲା। ସମଗ୍ର ଦେଶବ୍ୟାପି ଏହି ନୂତନ ମାର୍ଗକୁ ଗ୍ରହଣ କରିବା ପାଇଁ ବୁଝାଇବାରେ ଯୋଶୀ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲେ ।

କମ୍ୟୁନିଷ୍ଟ ପାର୍ଟି ଅଫ୍ ଇଣ୍ଡିଆ ମଧ୍ୟରେ ଥିବା ଏକ କ୍ଷୁଦ୍ର ଗୋଷ୍ଠୀ ଏବଂ ତା ସହିତ ଶ୍ରମିକ ଶ୍ରେଣୀରେ କାର୍ଯ୍ୟ କରୁଥିବା କେତେକ ସଭ୍ୟ ଏହି ମାର୍ଗକୁ ଗ୍ରହଣ କରିବାକୁ ବିରୋଧ କରୁଥିଲେ । ପ୍ରାୟ ଅଧିକାଂଶ ଭାରତୀୟ କମ୍ୟୁନିଷ୍ଟଙ୍କ ପାଇଁ, କଂଗ୍ରେସ ଜନସାଧାରଣଙ୍କର ଶ୍ରେଣୀ ସ୍ୱାର୍ଥକୁ ପ୍ରତିନିଧିତ୍ୱ କରୁନାହିଁ ବୋଲି ବିଚାର ଥିଲା ଏବଂ ଏହାର ମଧ୍ୟ କିଛି ଗ୍ୟାରେଣ୍ଟି ନ ଥିଲା ଯେ ଭବିଷ୍ୟତରେ ମଧ୍ୟ କଂଗ୍ରେସ ଏହି ସ୍ୱାର୍ଥକୁ ସୁରକ୍ଷା କରିବ । କଂଗ୍ରେସ ମଧ୍ୟରେ ଯେଉଁମାନେ ଦକ୍ଷିଣପନ୍ଥୀ ଥିଲେ, ସେମାନେ ସେମାନଙ୍କର ପ୍ରଭାବକୁ ସୁସଂହତ କରୁଥିଲେ କାରଣ ୧୯୩୪ ମସିହା ପରଠାରୁ ସେମାନଙ୍କ ଉପରେ ବ୍ୟବସାୟୀ ଗୋଷ୍ଠୀମାନଙ୍କର ଚାପ ଓ ପ୍ରୋତ୍ସାହନ ଥିଲା ।

କିନ୍ତୁ ଏହି ଘଟଣାର ଅନ୍ୟ ଦିଗଟି ମଧ୍ୟ ଥିଲା । ୧୯୩୫ ମସିହାରେ କୋମିନ୍‌ଟର୍ନର ସପ୍ତମ କଂଗ୍ରେସ ପୂର୍ବରୁ, ଯେଉଁ କମ୍ୟୁନିଷ୍ଟମାନେ ମିରଟ୍ ଜେଲ୍‌ରେ ଥିଲେ, ସେମାନେ ମୁକ୍ତ ହେବାପରେ ଗୋଷ୍ଠୀଗତ ଘୋଡ଼ଣି ମଧ୍ୟରୁ ବାହାରିବାକୁ ଟ୍ରେଡ୍ ୟୁନିୟନ ମଧ୍ୟରେ ଏକତା ଓ ନିରବଚ୍ଛିନ୍ନ ଭାବରେ ସାମ୍ରାଜ୍ୟବାଦ ବିରୋଧୀ ବାମ ଜାତୀୟତାବାଦୀଙ୍କ ସହିତ କାର୍ଯ୍ୟ କରିବାକୁ ଚେଷ୍ଟା କଲେ । ସେହିହେତୁ ସାମ୍ରାଜ୍ୟବାଦୀ ବିରୋଧୀ ଲିଗ୍ ଗଠନ ହେଲା । ଲୋକପ୍ରିୟ ଭାବରେ ଡିଓସି ନାମରେ ଜଣାଶୁଣା ଡକ୍ଟର ଗଙ୍ଗାଧର ଅଧିକାରୀଙ୍କୁ କମ୍ୟୁନିଷ୍ଟ ପାର୍ଟିର ସାଧାରଣ ସମ୍ପାଦକ ହେବାପାଇଁ ପ୍ରବର୍ତ୍ତା ଗଲା, କିନ୍ତୁ ଇଂରେଜ ସରକାର ସବୁ କମ୍ୟୁନିଷ୍ଟମାନଙ୍କୁ ବନ୍ଦୀ କଲେ ଯେତେବେଳେ ସେମାନେ ବୟନଶିଳ୍ପର ଶ୍ରମିକମାନଙ୍କୁ ନେଇ ସର୍ବଭାରତୀୟ ଧର୍ମଘଟ କରିବାକୁ ଚେଷ୍ଟା କରୁଥିଲେ।

ଏହିପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ୨୮ ବର୍ଷର ତରୁଣ ଯୁବକ ପି.ସି. ଯୋଶୀ ଅନଭିଜ୍ଞ କମ୍ୟୁନିଷ୍ଟ ପାର୍ଟିର ଦାୟିତ୍ୱ ନେଲେ । ନିରବଚ୍ଛିନ୍ନ ଭାବରେ ସଂଗଠନର କାର୍ଯ୍ୟ ପରିଚାଳନା କରିବା ନିମନ୍ତେ ପାର୍ଟିର ଏକ କେନ୍ଦ୍ରସ୍ଥାନ ପାଇଁ ଅବିରାମ ଚେଷ୍ଟା ଚାଲୁଥିଲା । ଜେଲ୍ ଭିତରେ ଓ ବାହାରେ ବ୍ୟାପକ ଗୋଷ୍ଠୀଗତ ଓ ଦଳାଦଳି ଦ୍ୱନ୍ଦ୍ୱ ବାସ୍ତବରେ କମ୍ୟୁନିଷ୍ଟମାନଙ୍କୁ ଭାଗ ଭାଗ କରି କଳହ ଗୋଷ୍ଠୀରେ ପରିଣତ କରିଥିଲା । ଏକ ସର୍ବଭାରତୀୟ କମ୍ୟୁନିଷ୍ଟ ପାର୍ଟି ଗଠନ କରିବା ସମ୍ଭାବନାକୁ ବାହାର କରିବା ପାଇଁ ଆରପିଡ଼ି (ରଜନୀ ପାମେ ଦତ୍ତ)ଙ୍କୁ ପଠାଗଲା। କମ୍ୟୁନିଷ୍ଟ ଓ ଜାତୀୟ ଆନ୍ଦୋଳନ ସମ୍ବନ୍ଧରେ ରାଜନୈତିକ କୌଶଳ ନିରୂପଣ କରିବା ସହିତ ଆନ୍ତର୍ଜାତିକ କମ୍ୟୁନିଷ୍ଟର ସପ୍ତମ କଂଗ୍ରେସର ନିର୍ଦ୍ଧାରଣ ଅନୁସାରେ ଏକ ସାମ୍ରାଜ୍ୟବାଦୀ ବିରୋଧୀ ଜାତୀୟ ମୋର୍ଚ୍ଚା ଗଠନ କରିବାକୁ କୁହାଗଲା । ସେ ବମ୍ବେ, କଲିକତା ଓ କାନପୁରଠାରେ କାର୍ଯ୍ୟ କରୁଥିବା ସମସ୍ତ ବିଶିଷ୍ଟ କମ୍ୟୁନିଷ୍ଟ ଗୋଷ୍ଠୀର ନେତୃବୃନ୍ଦଙ୍କୁ ସାକ୍ଷାତ କଲେ ଏବଂ ଦେଖିବାକୁ ପାଇଲେ ଯେ ସେମାନେ ପରସ୍ପର ନିଜ ନିଜ କାର୍ଯ୍ୟରେ ବ୍ୟସ୍ତ । ସେମାନଙ୍କ ମଧ୍ୟରେ ବ୍ୟତିକ୍ରମ

ଥିଲେ ତରୁଣ ଓ ଉତ୍ସାହୀ ପି.ସି. ଜୋଷୀ, ଯାହାଙ୍କର ପାର୍ଟିକୁ ଗୋଷ୍ଠୀଗତ ଓ ରାଜନୈତିକ ନିଃସଙ୍ଗତାରୁ ମୁକ୍ତ କରିବା ପାଇଁ ଦୂରଦୃଷ୍ଟି ରହିଛି, ଯେକି ରାଷ୍ଟ୍ର ସମ୍ମୁଖରେ କାର୍ଯ୍ୟ ଓ ସ୍ୱାର୍ଥକୁ ସମନ୍ୱୟ କରି ରଖିପାରିବେ ଏବଂ ଏକ ବ୍ୟାପକ ଜାତୀୟ ସାମ୍ରାଜ୍ୟବାଦ ବିରୋଧୀ ମୋର୍ଚ୍ଚା କମ୍ୟୁନିଷ୍ଟମାନଙ୍କ ସହିତ ମିଶି ଗଠନ କରିପାରିବେ । ଏହି ଉତ୍ସାହୀ ଯୁବକଙ୍କ ପ୍ରତି ଗଭୀର ପ୍ରଭାବିତ ହୋଇ ଆରପିଡ଼ି ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନର ବିଭିନ୍ନ ସଂସ୍ଥାକୁ ତାଙ୍କର ନାମ ସୁପାରିସ୍ କଲେ ଏବଂ ସେହି ଅନୁସାରେ ଜୋଷୀ ସର୍ବଭାରତୀୟ କମ୍ୟୁନିଷ୍ଟ ପାର୍ଟି ଗଠନର ଦାୟିତ୍ୱ ନିଜ କାନ୍ଧ ଉପରକୁ ନେଲେ । କିନ୍ତୁ ଜୀବନର କିଛି ବର୍ଷ ପରେ ଜୋଷୀ ଅତ୍ୟନ୍ତ ଦୁଃଖର ସହିତ ଲେଖିଥିଲେ, "ଏହି ଦାୟିତ୍ୱ ମୋ ଜୀବନର ଅଳ୍ପ ବୟସରେ ଆସିଥିଲା ଏବଂ ଏହା ମୋତେ ଓ ପାର୍ଟିକୁ ଦୀର୍ଘ ସମୟ ପରେ ବହୁମୂଲ୍ୟ ଦେବାକୁ ପଡ଼ିଥିଲା ।"

ଜେଲରୁ ମୁକ୍ତ ହେବା ପରେ ପି.ସି. ଜୋଷୀ ଭାରତୀୟ କମ୍ୟୁନିଷ୍ଟ ପାର୍ଟି (CPI)ର କାର୍ଯ୍ୟତଃ ସାଧାରଣ ସମ୍ପାଦକ ହୋଇଥିଲେ ଏବଂ ଅଜୟ ଘୋଷ ଓ ଆର.ଡି.ଭରଦ୍ୱାଜଙ୍କ ସହିତ ମିଶି ଅବ୍ୟବସ୍ଥିତ ଗୋଷ୍ଠୀ ଓ ଭୂମିଗତ ପାର୍ଟି କେନ୍ଦ୍ରମାନଙ୍କୁ ଏକତ୍ର କରି ଏକ ସୁସଜ୍ଜିତ ପାର୍ଟି ଢାଞ୍ଚାରେ ପକାଇଥିଲେ, କାରଣ ସେତେବେଳେ ପାର୍ଟି ବେଆଇନ ଥିଲା ଏବଂ ସେ ପାର୍ଟିର ପ୍ରଚାର ପତ୍ର, ପ୍ରଚାର ପତ୍ରିକା ଓ ପତ୍ରିକା ପ୍ରକାଶ କଲେ । ଜୋଷୀ ଇତସ୍ତତଃ ବିକ୍ଷିପ୍ତ ଗୋଷ୍ଠୀମାନଙ୍କୁ ଏକତ୍ର କରିବା ପାଇଁ ଫଳପ୍ରଦ ବ୍ୟବସ୍ଥା ଗ୍ରହଣ କଲେ । ବାହାରେ ଥିବା ପାର୍ଟି କର୍ମକର୍ତ୍ତା କାତଦେରେଙ୍କ ଜରିଆରେ କଲିକତାରେ ନିଯୁକ୍ତ ଥିବା ଆଇ.ସି.ଏସ୍. ଅଫିସର ମାଇକେଲ କାରିଟ୍ ଓ ବମ୍ବେରେ ଥିବା ମାଇକେଲ ସ୍କଟଙ୍କ ସହିତ ଯୋଗସୂତ୍ର ସ୍ଥାପନ କଲେ ଏବଂ ୧୯୩୬ ଜୁନ୍ ମାସରେ ଏକ ମିଟିଂ ହେଲା । ଏହି ବୈଠକରେ ଜୋଷୀ, ଅଜୟ ଘୋଷ, ଭରଦ୍ୱାଜ ଏବଂ ମାଇକେଲ ସ୍କଟ ଯୋଗ ଦେଇଥିଲେ । ଜୁନ୍ ୧୯୩୬ରେ ଅଳ୍ପକାଳୀନ କେନ୍ଦ୍ରୀୟ କମିଟିର ସୁରଟ୍ ଅଧିବେଶନରେ ଜୋଷୀଙ୍କୁ ସାଧାରଣ ସମ୍ପାଦକ ଭାବରେ ନିର୍ବାଚିତ କରାଗଲା ଏବଂ ସେ ସେହି ପଦବୀରେ ୧୯୪୮ ପର୍ଯ୍ୟନ୍ତ ରହିଥିଲେ । କଲିକତାରେ ପାର୍ଟିକେନ୍ଦ୍ର ସ୍ଥାପନ କରାଯାଇ ଅଜୟ ଘୋଷ ପଶ୍ଚିମ ଅଞ୍ଚଳ ସହିତ ଭରଦ୍ୱାଜ ଉତ୍ତରାଞ୍ଚଳ, ଏସ୍.ଭି. ଘାଟେ ଦକ୍ଷିଣାଞ୍ଚଳ ସହିତ ଯୋଗସୂତ୍ର ସ୍ଥାପନର ଦାୟିତ୍ୱରେ ରହିବା ବେଳେ ଡକ୍ଟର ଜି. ଅଧିକାରୀ କଲିକତା କେନ୍ଦ୍ରରେ ଯୋଗଦେଲେ ।

ବାମପନ୍ଥୀ ଗଣ ଆନ୍ଦୋଳନ ଇତିହାସରେ ୧୯୩୬ ମସିହା ଏକ ପ୍ରଧାନ ଘଟଣା । ଜୋଷୀ କେବଳ ସିପିଆଇର ସାଧାରଣ ସମ୍ପାଦକ ହେଲେ ନାହିଁ, ଅପରନ୍ତୁ ପ୍ରଗତିଶୀଳ ଲେଖକ ସଂଘ, ଅଖିଳ ଭାରତ ଛାତ୍ର ସଂଘ, ଛାତ୍ରୀ ସଂଘ ଇତ୍ୟାଦି ସଂଗଠନ ମଧ୍ୟ ଜନ୍ମ ଲାଭ କଲା । ଜୁନ୍ ୨୧, ୧୯୩୫ ମସିହାରେ ପ୍ୟାରିସ୍‌ଠାରେ ଆନ୍ତର୍ଜାତୀୟ ଲେଖକ ସମ୍ମିଳନୀ ହେବା ଅବକାଶରେ ଭାରତରେ ଏକ ପ୍ରଗତିଶୀଳ ଲେଖକ ଆନ୍ଦୋଳନର ଆବଶ୍ୟକତାକୁ ପି.ସି. ଜୋଷୀ ଅନୁଭବ କରିପାରିଥିଲେ । ପ୍ୟାରିସ୍ ସମ୍ମିଳନୀ ଥିଲା ଫାସିବାଦ ବିରୁଦ୍ଧରେ ସଂସ୍କୃତିର ସୁରକ୍ଷା ପାଇଁ ଏକ ମିଳନ କେନ୍ଦ୍ର ଯେଉଁଥିରେ ମାର୍କ୍ସିମ ଗର୍କି, ଲୁଇସ୍ ଆରାଗନ, ଆଣ୍ଡ୍ରୁ ମାଲରକ୍ସ, ଇ.ଏମ୍. ଫଷ୍ଟର

ଏବଂ ଅନ୍ୟମାନେ ଯୋଗ ଦେଇଥିଲେ । ଫାସିବାଦ ଶକ୍ତିମାନଙ୍କ ଦ୍ୱାରା ବ୍ୟାପକଭାବେ ଲେଖକ, ବୈଜ୍ଞାନିକ, ବୁଦ୍ଧିଜୀବୀ ଇତ୍ୟାଦିମାନଙ୍କୁ ନିର୍ଯ୍ୟାତନା ଦିଆଯାଉଥିଲା । ଏକ ଗଣତାନ୍ତ୍ରିକ ସ୍ଥାନ ଅଭାବରୁ ଏମାନଙ୍କ ମଧ୍ୟରୁ ଅନେକ ନିଜ ନିଜର ଦେଶ ଛାଡ଼ି ଚାଲି ଯାଉଥିଲେ । ଏପରିକି ବିଶ୍ୱ ପ୍ରସିଦ୍ଧ ବୈଜ୍ଞାନିକ ଆଲବର୍ଟ ଆଇନ୍‌ଷ୍ଟାଇନ୍ ଜର୍ମାନୀରୁ ଚାଲିଯିବାକୁ ବାଧ୍ୟ ହୋଇଥିଲେ । ଏହି ବିଶ୍ୱ ସମ୍ମିଳନୀ ଏକ ନୂତନ ଚେତନା ଆଣିବାକୁ ସକ୍ଷମ ହେଲା ଯାହାଫଳରେ ଏକ ପ୍ରଗତିଶୀଳ ଫାସିବାଦ ବିରୋଧୀ ଆନ୍ଦୋଳନ ଭାରତରେ ଗଠନ କରିବାର ସୂତ୍ରପାତ ହେଲା । ଏହାର ଗୁରୁତ୍ୱ ସମ୍ପର୍କରେ ଯୋଷୀ ଦୂରଦୃଷ୍ଟି ସହିତ ଅନୁଭବ କରିଥିଲେ ଏବଂ ତତ୍‌କ୍ଷଣାତ୍ ଏକ ଘୋଷଣାପତ୍ର ପ୍ରସ୍ତୁତ ହେଲା । ଏହା ୧୯୩୬ ମସିହା ଫେବୃୟାରୀ ମାସରେ ଉନ୍ମୋଚିତ ହେଲା । ଏଥିରେ ସେ ସମୟର ପ୍ରଖ୍ୟାତ ଲେଖକ – ସଜ୍ଜାଦ ଜହିର, ପ୍ରେମଚାନ୍ଦ, ଆବିଦ ହୁସେନ, ଦୟା ନାରାୟଣ ନିଗମ, ଅବଦୁଲ ହକ୍ ଏବଂ ଆହୁରି ଅନେକ ଦସ୍ତଖତ କରିଥିଲେ । ଏହାର ପ୍ରଚେଷ୍ଟା ଥିଲା କଳାକୁ ଲୋକମାନଙ୍କ ନିକଟକୁ ଆଣିବା । ୧୯୩୬ ଏପ୍ରିଲ ୧୦ ତାରିଖରେ ଦେଶର ବିଭିନ୍ନ ସ୍ଥାନରୁ ଲେଖକମାନେ ଲକ୍ଷ୍ନୌଠାରେ ଏକତ୍ରୀତ ହେଲେ ଏବଂ ବେଶି କିଛି ପ୍ରସ୍ତୁତି ବ୍ୟତୀତ ପ୍ରଥମ ସର୍ବଭାରତୀୟ ପ୍ରଗତିଶୀଳ ଲେଖକ ସମ୍ମିଳନୀ ସଂଗଠିତ କଲେ ଯେଉଁଠାରେ ସାମାଜିକ ଓ ରାଜନୈତିକ ଭାବେ ପ୍ରତିବଦ୍ଧ ଲେଖକମାନେ ସୃଜନଶୀଳ ଲେଖାକୁ ଏକ ନୂତନ ପରିସର ଦେଲେ । କଲିକତା ଓ ଅନ୍ୟାନ୍ୟ ସହରମାନଙ୍କରେ ପ୍ରଗତିଶୀଳ ଲେଖକ ସଂଘର ଶାଖାମାନ ପ୍ରତିଷ୍ଠା ହେଲା । ମେହନତି ଜନଗଣଙ୍କ ପ୍ରତି ଏକ ବିଶାଳ ବୁଦ୍ଧିଜୀବୀ ଗୋଷ୍ଠୀମାନଙ୍କୁ ପି.ସି. ଯୋଷୀ ସମ୍ବେଦନଶୀଳ  କରିପାରିଲେ । ପ୍ରେମଚାନ୍ଦଙ୍କର ଗୋଦାନ (୧୯୩୬) ଯେଉଁଥିରେ କୃଷକମାନଙ୍କର ଦୁର୍ଦ୍ଦଶାର ଚିତ୍ର ବର୍ଣ୍ଣିତ, ତାହା ତାଙ୍କର ପୂର୍ବବର୍ତ୍ତୀ ଗାନ୍ଧିବାଦ ଆଦର୍ଶଭିତ୍ତିକ ଉପନ୍ୟାସ ରଙ୍ଗଭୂମି (୧୯୨୫) ଠାରୁ ସମ୍ପୂର୍ଣ୍ଣ ଭିନ୍ନ ଧରଣର ।  ଏହି ସର୍ଜନାତ୍ମକ ଲେଖକ ଗୋଷ୍ଠୀ ଫାସିବାଦ ବିରୋଧୀ, ସାମନ୍ତବାଦ ବିରୋଧୀ ଜନଗଣଙ୍କ ସଂସ୍କୃତି ସୃଷ୍ଟି କରି ଏକ ନୂତନ ପରିବେଶ ସୃଷ୍ଟି କଲେ ଏବଂ ଏହି ଧାରା ଯୋଷୀ ସାଧାରଣ ସମ୍ପାଦକ ଥିବା ସମୟତକ, ୧୯୩୮ରେ ଫରିଦାବାଦଠାରେ କୃଷକ କବିମାନଙ୍କର ସମ୍ମିଳନୀଠାରୁ ସରୋଜିନୀ ନାଇଡୁଙ୍କ ଦ୍ୱାରା ଉଦ୍‌ଘାଟିତ ଅକ୍ଟୋବର ୧୪ ରୁ ୧୭, ୧୯୪୫ ମସିହାରେ ହାଇଦ୍ରାବାଦଠାରେ ଅନୁଷ୍ଠିତ ସର୍ବଭାରତୀୟ ଉର୍ଦ୍ଦୁ ପ୍ରଗତିଶୀଳ ଲେଖକ ସମ୍ମିଳନୀ ପର୍ଯ୍ୟନ୍ତ ଅବ୍ୟାହତ ରହିଥିଲା ।

ଗାନ୍ଧିବାଦ ଆବେଦନ କ୍ରମଶଃ ହ୍ରାସ ପାଇଥିଲା ଏବଂ ବୈପ୍ଳବିକ ନାୟକତ୍ୱ ହୋଇ ଆସୁଥିଲା ମୃତପ୍ରାୟ । ବହୁ ସଂଖ୍ୟାରେ ଛାତ୍ର ବାମପନ୍ଥୀ ଆଦର୍ଶ ପ୍ରତି ଆକୃଷ୍ଟ ହେଉଥିଲେ । ୧୯୩୬ରେ ସର୍ବଭାରତୀୟ ଛାତ୍ରସଂଘ ଗଠନ ହେଲା । ଆଞ୍ଚଳିକ, ଜାତୀୟ ଓ ଆନ୍ତର୍ଜାତୀୟ ଘଟଣାମାନ ପୁସ୍ତକ ଆକାରରେ ପ୍ରସ୍ତୁତ କରାଯାଇ ଛାତ୍ରମାନଙ୍କୁ ଏକ ନୂତନ ଆଭିମୁଖ୍ୟ ଦେଲା । ୧୯୩୭-୩୮ରେ ଅଖିଳ ଭାରତ ଛାତ୍ର ସଂଘ ସମସ୍ତ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିବାକୁ ପ୍ରଚାର କଲେ । ଛାତ୍ର ୟୁନିୟନ ନିର୍ବାଚନ କରିବାକୁ ଦାବି କଲେ ଏବଂ ସ୍ପେନର ଗୃହଯୁଦ୍ଧ ବିରୁଦ୍ଧରେ ସ୍ପେନ ଲୋକମାନଙ୍କ ପ୍ରତି ଜାପାନର ଚୀନ୍ ଆକ୍ରମଣ ବିରୁଦ୍ଧରେ ଐକ୍ୟ ପ୍ରକାଶ କରି

ବିକ୍ଷୋଭ କଲେ । କ୍ରମବର୍ଦ୍ଧିଷ୍ଣୁ ଛାତ୍ର ଆନ୍ଦୋଳନ ପୌଢ଼ଶିକ୍ଷା ପରି ସାମାଜିକ କାର୍ଯ୍ୟର ପ୍ରଚାର ଓ ସାମ୍ରାଜ୍ୟବାଦର ବିପଦ ସମ୍ପର୍କିତ ରାଜନୈତିକ ସଂଗ୍ରାମ ଗ୍ରହଣ କରିବା ଦ୍ୱାରା ଏକ ନୂତନ ଅର୍ଥ ସୃଷ୍ଟି କଲା । ପ୍ରଥମ ଥର ପାଇଁ ତରୁଣ ପୁରୁଷ ଓ ମହିଳାମାନଙ୍କୁ ଜାତୀୟ ସମସ୍ୟା ସହିତ ଆନ୍ତର୍ଜାତିକ ପ୍ରଶ୍ନକୁ ମିଶାଇ କରି ଶିକ୍ଷା ପ୍ରଦାନ କରାଗଲା ।

ପି.ସି. ଯୋଷୀ ଏହି ତରୁଣ ଛାତ୍ର ସାଥୀମାନଙ୍କର ପ୍ରେରଣା ହୋଇଗଲେ । ସେମାନଙ୍କୁ ଯାହା ଆକୃଷ୍ଟ କଲା, ତାହା କେବଳ ତାଙ୍କର ସାମ୍ରାଜ୍ୟବାଦ, ଫାସିବାଦ ଓ କମ୍ୟୁନିଷ୍ଟ ଏବଂ ଜାତୀୟତାବାଦୀମାନଙ୍କ ମଧ୍ୟରେ ଆବଶ୍ୟକ ହେଉଥିବା ମିଳିତ ମୋର୍ଚ୍ଚା ସମ୍ପର୍କିତ ରାଜନୈତିକ ଯୁକ୍ତି ନ ଥିଲା ବରଂ ତାଙ୍କର ଦୃଢ଼ ଉପଦେଶ ଥିଲା ଯେ ସେମାନେ ଯେପରି ସେମାନଙ୍କ କାର୍ଯ୍ୟରେ ଓ ଅଧ୍ୟୟନରେ ପାରଙ୍ଗମ ହୁଅନ୍ତି । ସେ ଛାତ୍ରମାନଙ୍କୁ ସେମାନଙ୍କର ଶିକ୍ଷାଗତ ଜୀବନରେ ଉଚ୍ଚକୋଟିର ହେବାପାଇଁ କହୁଥିଲେ କାରଣ ଅନ୍ୟ ଛାତ୍ରମାନେ ତାଙ୍କୁ ଦେଖିବେ, ଏବଂ ତାହା ପରବର୍ତ୍ତୀ ସମୟରେ ସେମାନଙ୍କୁ ତାଙ୍କ ଆଡ଼କୁ ଆକର୍ଷିତ କରିବାରେ ସାହାଯ୍ୟ କରିବ । ପି.ସି. ଯୋଷୀ ବକ୍ତୃତା ଓ ଶ୍ରେଣୀଗୃହ ଅଧ୍ୟୟନ ପରିଚାଳନା କଲେ ଏବଂ ଉପଦେଶ ମଧ୍ୟ ଦେଲେ - ବ୍ୟକ୍ତିଗତ ଓ କେତେବେଳେ ସାମୂହିକ ସ୍ତରରେ । ଅଖିଳ ଭାରତ ଛାତ୍ର ସଂଘର ପୂର୍ବତନ ସାଧାରଣ ସମ୍ପାଦକ ସତ୍ୟପାଲ ଡାଙ୍ଗ ତାଙ୍କର ଛାତ୍ରଜୀବନ ସମୟ କଥା ଏବଂ ତାଙ୍କୁ ଯୋଷୀ ଯେଉଁ ଉପଦେଶ ଦେଇଥିଲେ ତାହାକୁ ମନେ ପକାଇଛନ୍ତି,

> "ତୁମେ ଯେତେବେଳେ ରାତିରେ ଶୋଇବାକୁ ଯିବ, ଦିନସାରା ଯାହା କିଛି କରିଛ ସେ ସମ୍ପର୍କରେ ଭାବିବ, କ'ଣ ଠିକ୍ ଓ କ'ଣ ଭୁଲ୍ ତାକୁ ବାଛିବ ଏବଂ ଶପଥ କରିବ ଯେ ଭବିଷ୍ୟତରେ ସେପରି ଭୁଲ୍ କେବେ କରିବ ନାହିଁ ।"

ଆଗପିଛି ସୁଇଜରଲ୍ୟାଣ୍ଡରେ ଜବାହରଲାଲ ନେହେରୁଙ୍କୁ ଭେଟି ଭାରତରେ ଭାରତୀୟ ଜାତୀୟ କଂଗ୍ରେସକୁ ଏକ ବ୍ୟାପକ ମିଳିତ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ମଞ୍ଚ କରିବା ପାଇଁ ସମସ୍ତ ସଂଗ୍ରାମରତ ଲୋକମାନଙ୍କୁ ସେଥିରେ ସାମିଲ କରିବା ସମ୍ପର୍କରେ ଆଲୋଚନା କଲେ। ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ନେତାମାନଙ୍କ ସହିତ ପି.ସି. ଯୋଷୀ ନେହେରୁଙ୍କ ସଭାପତିତ୍ୱରେ ୧୯୩୬ରେ ଲକ୍ଷ୍ନୌଠାରେ ଅନୁଷ୍ଠିତ ହେଉଥିବା କଂଗ୍ରେସ ଅଧିବେଶନ ସମୟରେ ସାକ୍ଷାତ କଲେ। ନେହେରୁ ଅଖିଳ ଭାରତ ଟ୍ରେଡ୍ ୟୁନିୟନ କଂଗ୍ରେସ ଓ ଅଖିଳ ଭାରତ କୃଷକ ସଭାକୁ ଭାରତୀୟ ଜାତୀୟ କଂଗ୍ରେସ ସହିତ ସହବନ୍ଧିତ କରିବା ପ୍ରସ୍ତାବରେ ସହମତ ହେଲେ। ସେ ଯୋଷୀଙ୍କୁ ମହାତ୍ମାଗାନ୍ଧିଙ୍କ ନିକଟକୁ ସାଥିରେ ଧରି ଗଲେ । ସେ ଏହି ପ୍ରସ୍ତାବକୁ ଗ୍ରହଣ କରିବେ ଯଦି ବଲ୍ଲଭଭାଇ ପଟେଲ ତାଙ୍କର ସମ୍ମତି ପ୍ରଦାନ କରନ୍ତି ବୋଲି ଗାନ୍ଧି କହିଲେ। ଯୋଷୀ ପଟେଲଙ୍କ ପାଖକୁ ଯାଇ ଅନୁରୋଧ କରିବାରୁ ସେ ତାଙ୍କୁ ସତର୍କ କରାଇ କହିଲେ ଯେ କମ୍ୟୁନିଷ୍ଟମାନେ କଂଗ୍ରେସ ଭିତରେ ରହିବେ ନା କୃଷକ ଓ ଶ୍ରମିକ ସଂଗଠନର ସହବନ୍ଧିତା ପାଇଁ ଚେଷ୍ଟା କରିବେ। ଯୋଷୀ ଦୃଢ଼ଭାବରେ ଉତ୍ତର ଦେଲେ ଯେ କମ୍ୟୁନିଷ୍ଟମାନେ କଂଗ୍ରେସ ଭିତରେ

ରହିବେ ଏବଂ ଭାରତୀୟ ଜାତୀୟ କଂଗ୍ରେସରେ ଏଆଇଟିୟୁସି ଓ ଏଆଇକେଏସ୍ ସହବନ୍ଧିତା ପାଇଁ ସଂଗ୍ରାମ କରିବେ । କୌଣସି ସମୟରେ ଯୋଷୀ ନିଜର ରାଜନୈତିକ ଦୃଢ଼ବିଶ୍ୱାସ ସହିତ ସମଝୋତା କରୁନଥିଲେ ।

ଏହି ସମୟ ମଧ୍ୟରେ କୃଷକମାନଙ୍କର ଆଞ୍ଚଳିକ ସମସ୍ୟାକୁ ନେଇ ର୍ୟାଲି, ସଭା ଓ ସଂଗ୍ରାମ ସଂଗଠିତ ହେଉଥିଲା । ୧୯୩୬ ଏପ୍ରିଲ ମାସରେ ଅଖିଳ ଭାରତ କିଷାନ ସଭାର ପ୍ରଥମ ଅଧିବେଶନ ଲକ୍ଷ୍ନୌଠାରେ ଅନୁଷ୍ଠିତ ହୋଇ ସର୍ବଭାରତୀୟ କୃଷକ ସଂଗଠନ ଗଠନ କରାଗଲା । ୧୯୩୬ର କୃଷକ ଇସ୍ତାହାରରେ ଜମିଦାରୀ ପ୍ରଥା ଲୋପ କରିବା, କୃଷି ଆୟ ଉପରେ ସୀମିତ ଟିକସ ବସାଇବା ଏବଂ ସୁଧ ଛାଡ଼ କରିବା ସମ୍ପର୍କରେ ସ୍ୱର ଉତ୍ତୋଳନ ହେଲା । ଏହା ମଧ୍ୟ ପ୍ରସ୍ତାବ ଦେଲା ଯେ "ଯେଉଁମାନଙ୍କର ପାଞ୍ଚ ଏକରରୁ କମ୍ ଜମି ଅଛି ଏବଂ ଭୂମିହୀନମାନଙ୍କୁ ଚାଷ ନ ହୋଇ ପଡ଼ି ରହିଥିବା ସରକାରୀ ଓ ଜମିଦାରୀ ଜମି ବଣ୍ଟନ କରାଯାଉ ।"[୮] ମାର୍ଚ୍ଚ ୧୯୩୭ ମସିହାରେ ବଙ୍ଗପ୍ରଦେଶ କୃଷକ ସଭା ବାଙ୍କୁଡ଼ା ଜିଲ୍ଲାରେ ପ୍ରତିଷ୍ଠିତ ହେଲା ଏବଂ ୧୯୩୮ ମସିହା ସୁଦ୍ଧା କୃଷକସଭାର ସଭ୍ୟ ସଂଖ୍ୟା ଅଧ ନିୟୁତ ହୋଇଗଲା । ଯୋଷୀ ଉତ୍ତର ପ୍ରଦେଶ କୃଷକ ଆନ୍ଦୋଳନ ପ୍ରତି ବିଶେଷ ଧ୍ୟାନ ଦେଲେ ଏବଂ ନ୍ୟାସନାଲ ଫ୍ରଣ୍ଟ ପତ୍ରିକାରେ ସେପ୍ଟେମ୍ବର ୪, ୧୯୩୮ ସଂଖ୍ୟାରେ ଏହାର ରାଜନୈତିକ ଗୁରୁତ୍ୱ ସମ୍ପର୍କରେ ଲେଖିଲେ । ସଂଯୁକ୍ତ ଜାତୀୟ ମୋର୍ଚ୍ଚା ଯାହାକି କୃଷକ କର୍ମୀମାନଙ୍କର ନେତୃତ୍ୱ ନେଉଥିଲା, ସେମାନଙ୍କର ଅନୁଭୂତି ମାଧ୍ୟମରେ ସର୍ବଭାରତୀୟ କୃଷକ କମିଟି ଗଠିତ ହେଲା । ଯୋଷୀ ଲେଖିଥିଲେ:

> "କୃଷକମାନେ ଉତ୍ତର ପ୍ରଦେଶ କଂଗ୍ରେସକୁ ବାମପନ୍ଥୀ କଂଗ୍ରେସ କରି ଦେଇଥିଲେ, ଉତ୍ତର ପ୍ରଦେଶ କଂଗ୍ରେସ ମନ୍ତ୍ରୀମଣ୍ଡଳ ସବୁଠାରୁ ପ୍ରଗତିଶୀଳ ଥିଲା ଏବଂ ସବୁଠାରୁ ଦୂରଦୃଷ୍ଟି କୃଷକ ଆନ୍ଦୋଳନ ସୃଷ୍ଟି କରିଥିଲା, ବୋଧହୁଏ ସେପରି ଆନ୍ଦୋଳନ ଅନ୍ୟ କେଉଁଠାରେ ନ ଥିଲା ।"[୯]

୧୯୩୭ ତୁଳନାରେ ୧୯୩୮ ବେଳକୁ ଟ୍ରେଡ୍ ୟୁନିୟନ ସଭ୍ୟ ସଂଖ୍ୟା ୫୦ପ୍ରତିଶତ ବୃଦ୍ଧି ପାଇଥିଲା । ଏଆଇଟିୟୁସି ନ୍ୟାସନାଲ ଫେଡ଼େରେସନ୍ ଅଫ୍ ଟ୍ରେଡ଼୍ ୟୁନିୟନର ନିକଟବର୍ତ୍ତୀ ହୋଇ ଏପ୍ରିଲ ୧୯୩୮ରେ ନାଗପୁରଠାରେ ଏକ ମିଳିତ ଅଧିବେଶନ ହୋଇଥିଲା ଯଦିଓ ଟ୍ରେଡ଼୍ ୟୁନିୟନ ଆନ୍ଦୋଳନ ବାମପନ୍ଥୀ ନେତୃତ୍ୱ ଅଧୀନରେ ପ୍ରାୟତଃ ଥିଲା । ବିଭିନ୍ନ ଔଦ୍ୟୋଗିକ କ୍ଷେତ୍ରରେ ଧର୍ମଘଟରେ ହଜାର ହଜାର ସଂଖ୍ୟାରେ ଶ୍ରମିକ ବିରୋଧ କରୁଥିବା ଶୋଭାଯାତ୍ରାରେ ଯୋଗ ଦେଇଥିଲେ ।

---

୮. ସୁମିତ ସରକାର - ମଡ଼ର୍ଣ୍ଣ ଇଣ୍ଡିଆ, ପୃଷ୍ଠା-୩୪୦ ।
୯. ପି.ସି. ଯୋଷୀ - "ଦି ୟୁପି କିଶାନ ମୁଭ୍‌ମେଣ୍ଟ" ନ୍ୟାସନାଲ ଫ୍ରଣ୍ଟ, ସେପ୍ଟେମ୍ବର ୪, ୧୯୩୮ ।

କଲିକତାର ବ୍ୟବସାୟିକ କେନ୍ଦ୍ର ବଡ଼ ବଜାରରେ କମ୍ୟୁନିଷ୍ଟ ପାର୍ଟି ତା'ର କାର୍ଯ୍ୟାଳୟ ଖୋଲିଲା । ଏହା ଏକ ସାହସିକ ପଦକ୍ଷେପ ଥିଲା । କିନ୍ତୁ ଜୋଷୀ ଓ ଅଧିକାରୀ ଏହି କାର୍ଯ୍ୟାଳୟରେ ସର୍ଦ୍ଦାର ପୃଥ୍ୱୀ ସିଂହଙ୍କର ବ୍ୟବସାୟ ସହଯୋଗୀ ଭାବରେ ଛଦ୍ମ ଭାବରେ ଯୋଗ ଦେଉଥିଲେ। ଦୈନନ୍ଦିନ ଖର୍ଚ୍ଚ ପାଇଁ କଲିକତା ପାର୍ଟି ନିକଟରେ କୌଣସି ନିୟମିତ ଅର୍ଥ ନ ଥିଲା । ସେ ଅଞ୍ଚଳର ସାଥୀମାନେ ସବାବେଳିଆ କର୍ମୀମାନେ ଟିଉସନ କରି ନିଜକୁ ଚଳାଉଥିଲେ ଏବଂ ପାର୍ଟି ପାଇଁ ସ୍ୱେଚ୍ଛାକୃତ ଭାବରେ କାର୍ଯ୍ୟ କରୁଥିଲେ । ସର୍ଦ୍ଦାର ପୃଥ୍ୱୀ ସିଂହ ଅଫିସ୍ ଖର୍ଚ୍ଚର ଦାୟିତ୍ୱ ନେଇଥିଲେ ଯେହେତୁ ତାଙ୍କର କେତେକ ଧନୀ ବ୍ୟବସାୟୀଙ୍କ ସହିତ ସମ୍ପର୍କ ଥିଲା। ଜୋଷୀ ସମୟ ସମୟରେ କଲିକତା ବାହାରକୁ ଯାଇ ତାଙ୍କର ସମ୍ପର୍କୀୟମାନଙ୍କଠାରୁ ଅର୍ଥ ସଂଗ୍ରହ କରୁଥିଲେ ।

ପାର୍ଟିର ଏକ ପ୍ରକାଶନ କେନ୍ଦ୍ର ଥିଲା ଯେଉଁଠାରୁ 'ଦି କମ୍ୟୁନିଷ୍ଟ' ପତ୍ରିକା ପ୍ରକାଶିତ ହେଉଥିଲା । ଯେଉଁଥିରେ ଆଦର୍ଶଗତ ସମ୍ବନ୍ଧୀୟ ଲେଖା ଏବଂ ସଂଯୁକ୍ତ ମୋର୍ଚ୍ଚାର କୌଶଳ କିପରି ପ୍ରୟୋଗ ହେବ, ତାହାର ରାଜନୈତିକ ଧାରା ପ୍ରକାଶ ପାଉଥିଲା ।

୧୯୩୭ ନିର୍ବାଚନରେ ସାତଗୋଟି ରାଜ୍ୟରେ କଂଗ୍ରେସ କ୍ଷମତାକୁ ଆସିଲା ଯେଉଁଠାରେ କମ୍ୟୁନିଷ୍ଟମାନଙ୍କୁ ଜେଲରୁ ମୁକ୍ତ କରି ଦିଆଗଲା ଏବଂ ସେମାନେ କିଛିଟା ସ୍ୱାଧୀନତା ଉପଭୋଗ କଲେ । ବମ୍ବେକୁ ପାର୍ଟିର ମୁଖ୍ୟ କାର୍ଯ୍ୟାଳୟକୁ ସ୍ଥାନାନ୍ତରିତ କରିବାକୁ ସ୍ଥିର କରାଗଲା କାରଣ ସାତଟି ରାଜ୍ୟ ମଧ୍ୟରୁ ତାହା ଥିଲା ଅନ୍ୟତମ ଓ ପାର୍ଟିର ବିକାଶ ପାଇଁ ଅନୁକୂଳ ପରିସ୍ଥିତି ଥିଲା । ଏକ ଆଇନ ସମ୍ବନ୍ଧୀୟ ପତ୍ରିକା ପ୍ରକାଶନର ବ୍ୟବସ୍ଥା କରିବା ପାଇଁ ଡକ୍ଟର ଅଧିକାରୀଙ୍କୁ ସେଠାକୁ ପଠାଗଲା । ଏଚ୍.ଡି.ରାଜାଙ୍କ ଦ୍ୱାରା ମାନ୍ଦ୍ରାଜଠାରେ ପରିଚାଳିତ ନିଉ ଏଜ୍ ପତ୍ରିକାକୁ ପାର୍ଟି ପକ୍ଷରୁ ଏସ୍.ଭି.ଘାଟେ ପରିଚାଳନା କଲେ । ପାର୍ଟି ଗଠନ କରିବା ପାଇଁ ଏହା ଥିଲା ସବୁଠାରୁ ଘଡ଼ିସନ୍ଧି ମୁହୂର୍ତ୍ତ । ପି.ସି. ଜୋଷୀ ମୁଖ୍ୟ ପାର୍ଟି ସଂଗଠକ ଭାବରେ କାର୍ଯ୍ୟ କଲେ, ସମସ୍ତ ପ୍ରଦେଶକୁ ବର୍ଷକରେ ଦୁଇଥରରୁ ଅଧିକ ଗଲେ ଏବଂ ସାଥୀମାନଙ୍କର ବିକାଶରେ ସାହାଯ୍ୟ କଲେ ଯେଉଁମାନେ ଭବିଷ୍ୟତରେ ପାର୍ଟିର ଓ ଗଣ ସଂଗଠନର ନେତା ହେବେ ।

ଜୋଷୀ ତାଙ୍କର ବହୁ ସମୟ ଅନ୍ୟାନ୍ୟ ରାଜନୈତିକ ଦଳର ନେତାମାନଙ୍କୁ ଭେଟି ସାମ୍ରାଜ୍ୟବାଦ ବିରୋଧୀ ସଂଯୁକ୍ତ ମୋର୍ଚ୍ଚା ଗଠନ ପାଇଁ ଚେଷ୍ଟା କରୁଥିଲେ । ଏହି ସମୟରେ ଜୋଷୀ ଜୟପ୍ରକାଶ ନାରାୟଣଙ୍କୁ ଭେଟି ତାଙ୍କ ସହିତ ଦୀର୍ଘ ଆଲୋଚନା କରିଥିଲେ । ଏକ ବ୍ୟାପକ ସାମ୍ରାଜ୍ୟବାଦ ବିରୋଧୀ ସଂଯୁକ୍ତ ମୋର୍ଚ୍ଚା ଗଠନ ପାଇଁ କଂଗ୍ରେସ ସମାଜବାଦୀ ପାର୍ଟି କମ୍ୟୁନିଷ୍ଟମାନଙ୍କ ସହିତ ଯୋଗ ଦେବା ପୂର୍ବରୁ ଏହି ସାକ୍ଷାତ ହୋଇଥିଲା ।

୧୯୩୮ର ପ୍ରାକ୍ ସମୟରେ ପାର୍ଟି ମୁଖ୍ୟ କାର୍ଯ୍ୟାଳୟ ବମ୍ବେକୁ ସ୍ଥାନାନ୍ତରିତ ହୋଇଥିବା ହେତୁ ଜୋଷୀ ସେଠାରୁ ଏକ ସାପ୍ତାହିକ ପତ୍ରିକା ନିଜ ସମ୍ପାଦନାରେ ପ୍ରକାଶ କରୁଥିଲେ ନୂତନ ରାଜନୈତିକ ମାର୍ଗକୁ ଅଗ୍ରଗାମୀ କରିବା ପାଇଁ । ଜୋଷୀଙ୍କ ସହିତ କାର୍ଯ୍ୟ କରୁଥିବା ତିରିଶ ଓ ଚାଳିଶ ଦଶକର ସହଯୋଗୀ ଗୋବିନ୍ଦ ବିଦ୍ୟାର୍ଥୀ ସେହି ସମୟରେ ନ୍ୟାସନାଲ ଫ୍ରଣ୍ଟ କାର୍ଯ୍ୟାଳୟର କାର୍ଯ୍ୟ ବିବରଣୀ ସମ୍ପର୍କରେ କହିଛନ୍ତି,

"ଏହା କ୍ରମଶଃ ବର୍ଦ୍ଧିଷ୍ଣୁ ଗଣ ଆନ୍ଦୋଳନ ଶ୍ରମିକ, କୃଷକ, ଛାତ୍ର ଓ ବୁଦ୍ଧିଜୀବୀମାନଙ୍କର ପଥ ନିର୍ଦ୍ଦେଶ ଓ ସମନ୍ୱୟର ପ୍ରାଣକେନ୍ଦ୍ର ହୋଇଗଲା । ଏହା ମଧ୍ୟ ବେଆଇନ ପାର୍ଟିର ଖୋଲା କାର୍ଯ୍ୟାଳୟ ହେଲା । ଜଣେ ସଂଗଠକ ଭାବରେ ଜୋଷୀଙ୍କର ଅପ୍ରତିଦ୍ୱନ୍ଦୀ ଦକ୍ଷତା ଏବଂ ଦିନ ଦିନ ଧରି କ୍ଲାନ୍ତିହୀନ ଭାବରେ କାର୍ଯ୍ୟ କରିବାର ସାମର୍ଥ୍ୟ ତାଙ୍କ ସହିତ ଥିବା ଲୋକମାନଙ୍କୁ ଆଶ୍ଚର୍ଯ୍ୟ କରିଥିଲା ।"[୧୦]

ଏହି ସାପ୍ତାହିକ ପତ୍ରିକାର ସମ୍ପାଦନା ମଣ୍ଡଳୀରେ ଥିଲେ ପି.ସି. ଜୋଷୀ, ଅଜୟ ଘୋଷ, ଆର୍.ଡି.ଭରଦ୍ୱାଜ ଓ ଡକ୍ଟର ଜି. ଅଧିକାରୀ । ପତ୍ରିକା କେବଳ ପାର୍ଟିର ବିଚାରକୁ ପ୍ରଚାର କରିବାର ମାଧ୍ୟମ ନ ଥିଲା ବରଂ ସମ୍ମିଳିତ ସଂଗଠକ ଭାବରେ କାର୍ଯ୍ୟ କରୁଥିଲା । ଏହା ଖୁବ୍ ଶୀଘ୍ର ଭାରତୀୟ କମ୍ୟୁନିଷ୍ଟ ପାର୍ଟିକୁ ପରିଚୟ ପ୍ରଦାନ କଲା ।

ଯଦିଓ ପାର୍ଟି ବେଆଇନ ଥିଲା, ଜୋଷୀ ଆତ୍ମଗୋପନରୁ ଏହି ପତ୍ରିକାକୁ ନିୟମିତ ପ୍ରକାଶ କରୁଥିଲେ ଏବଂ ପାର୍ଟିର ସ୍ଥିତିକୁ ପରିଷ୍କାର କରି ଜାତୀୟ ସଂଗ୍ରାମରେ ଯୋଗ ଦେବା ଉପରେ ଗୁରୁତ୍ୱ ଆରୋପ କରୁଥିଲେ ଯାହା ଫଳରେ ପୂର୍ବରୁ ଚାଲିଥିବା ମୁଖ୍ୟ ରାଜନୈତିକ ଧାରାରୁ ଏକାକୀ ରହିବାକୁ ଭାଙ୍ଗୁଥିଲେ । ସେ କମ୍ୟୁନିଷ୍ଟମାନେ ସଫଳ ରାଜନୈତିକ ଶକ୍ତି ଭାବରେ କାର୍ଯ୍ୟ କରନ୍ତୁ ଏହି ଚେଷ୍ଟା କରୁଥିଲେ ।

ଏପ୍ରିଲ୍ ୧୭, ୧୯୩୮ରେ ପାର୍ଟି 'ଜାତୀୟ କଂଗ୍ରେସ ଓ ଶ୍ରମିକ ଶ୍ରେଣୀ' ସମ୍ପର୍କରେ ଏକ ଚିଠାତତ୍ତ୍ୱ ପ୍ରକାଶ କଲା ଯେଉଁଥିରେ କୁହାଯାଇଥିଲା,

"ଭାରତୀୟ ସର୍ବହରାଶ୍ରେଣୀ ଦୁର୍ଦ୍ଦଶାଗ୍ରସ୍ତ ଜନଗଣଙ୍କର ସାମାଜିକ ଶକ୍ତିର କାର୍ଯ୍ୟପାଇଁ ନିଜକୁ ସମ୍ପୂର୍ଣ୍ଣ ଯୋଗ୍ୟ କରି ପାରିବନାହିଁ ଯଦି ଏହା ରାଜନୈତିକ ସଂଗ୍ରାମରେ ଯାହା ଦେଶରେ ଚାଲିଛି, ସେଥିରେ ଯୋଗ ନ ଦିଏ, ଯଦି ଏହା ଅତ୍ୟନ୍ତ ଦୃଢ଼ତାର ସହିତ ସମଗ୍ର ଭାରତୀୟ ଜନତାର ଗଣତାନ୍ତ୍ରିକ ଅଧିକାରର ପୃଷ୍ଟପୋଷକତା ନ କରେ, ଯଦି ଏହା ସ୍ୱାଧୀନତା ସଂଗ୍ରାମର ଅଗ୍ରଭାଗରେ ନିଜକୁ ନିକ୍ଷେପ ନ କରେ ଯାହା ଜାତୀୟ କଂଗ୍ରେସ ନେତୃତ୍ୱରେ ଚାଲିଅଛି ଏବଂ ବ୍ୟାପକତା ଲାଭ କରୁଛି ଓ ବିଦେଶୀ ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ଜନଗଣଙ୍କର ସଂଗ୍ରାମକୁ ଐକ୍ୟବଦ୍ଧ କରୁଛି ।"[୧୧]

ଏହି ସମୟରେ ଜୋଷୀଙ୍କ ନେତୃତ୍ୱରେ କମ୍ୟୁନିଷ୍ଟମାନେ ଏକ ତୀକ୍ଷ୍ଣ ମୋଡ଼ଦେଇ ସ୍ୱାଧୀନତା ସଂଗ୍ରାମର ଜାତୀୟ ଅଂଶଗ୍ରହଣ ପଥରେ ପଥିକ ହେଲେ । "ଜାତୀୟ କଂଗ୍ରେସ ଓ ଶ୍ରମିକ ଶ୍ରେଣୀ" ସମ୍ପର୍କିତ ଚିଠାତତ୍ତ୍ୱରେ କୁହାଯାଇଥିଲା,

---

୧୦. ଗୋବିନ୍ଦ ବିଦ୍ୟାର୍ଥୀ - ରିମେମ୍ବରିଂ ପି.ସି. ଜୋଷୀ ମେନଷ୍ଟ୍ରିମ, ନଭେମ୍ବର ୧୫, ୧୯୮୦ ।

୧୧. ନ୍ୟାସନାଲ ଫ୍ରଣ୍ଟ, ଏପ୍ରିଲ ୧୭, ୧୯୩୮ ।

"କମ୍ୟୁନିଷ୍ଟମାନେ ଦେଶ ଭିତରେ ଏକ ରାଜନୈତିକ ଶକ୍ତି ହେବେ ଏହା ସମ୍ଭବ ନୁହେଁ ଯଦି ଆମେ ଆମର ଭାରତୀୟ ଜାତୀୟ କଂଗ୍ରେସ ସମ୍ପର୍କିତ ବିଚାରରେ ଏକ ସିଦ୍ଧାନ୍ତମୂଳକ ମୋଡ଼ ନ ଦେବା, ଯଦି ଆମେ କଂଗ୍ରେସ ଭିତରେ ସୈଦ୍ଧାନ୍ତିକ ଶକ୍ତି ଭାବରେ ଉଭା ନ ହେବା, ସମସ୍ତ ବାମପନ୍ଥୀ ଶକ୍ତିକୁ ଏକତ୍ରୀତ କରି ଓ ସାମାଜିକ ଶକ୍ତିମାନଙ୍କୁ ଜାତୀୟ କଂଗ୍ରେସ ଆଧାରରେ ଏକ ମିଳିତ ଜାତୀୟ ମୋର୍ଚ୍ଚା ଗଠନ କରିବାର ନୀତିକୁ କାର୍ଯ୍ୟକାରୀ ନ କରିବା ଏବଂ ସେହି ନୀତିକୁ ଆମେ ଅଗ୍ରଗାମୀ ଓ ନିଷ୍ଠାପର ଭାବରେ ଦୃଢ଼ ସମର୍ଥନ କରି ଆଗକୁ ବଢ଼ାଇବା । କେବଳ ଆମ୍ଭେମାନେ କଂଗ୍ରେସର ସଭ୍ୟ ହେଲେ ହେବନାହିଁ ବରଂ ଆମକୁ ସମସ୍ତ ଶ୍ରମିକମାନେ ଏକାଥରକେ କଂଗ୍ରେସରେ ଯୋଗଦେବାକୁ ତୀବ୍ର ପ୍ରଚାର କରିବାକୁ ହେବ ।"[୧୨]

ନ୍ୟାସନାଲ ଫ୍ରଣ୍ଟ ପ୍ରଥମ କାଗଜ ଥିଲା । ତାହାର ଅକ୍ଟୋବର ୧୬, ୧୯୩୮ ସମ୍ପାଦକୀୟରେ ବାମପନ୍ଥୀମାନଙ୍କ ପ୍ରାର୍ଥୀ ସୁଭାଷ ବୋଷ ପୁନଶ୍ଚ କଂଗ୍ରେସ ସଭାପତି ଭାବରେ ନିର୍ବାଚିତ ହୋଇ ରାଷ୍ଟ୍ରକୁ ନେତୃତ୍ୱ ଦେବା ଆବଶ୍ୟକ ବୋଲି ଲେଖିଥିଲା । ସମ୍ପାଦକୀୟରେ କୁହାଯାଇଥିଲା,

"କମ୍ୟୁନିଷ୍ଟମାନେ, କଂଗ୍ରେସ ସମାଜବାଦୀମାନେ, ରାଜାରାଜୁଡ଼ାମାନେ, ବାମପନ୍ଥୀ କଂଗ୍ରେସ ଲୋକମାନେ ଏକତ୍ରିତ ହେବାକୁ ଚେଷ୍ଟା କରୁଛନ୍ତି ଗୋଟିଏ ବାମଗୋଷ୍ଠୀ ଗଠନ କରିବା ପାଇଁ । ନିର୍ବାଚନ ପ୍ରଚାର ସମୟରେ, ବାମଗୋଷ୍ଠୀ ନିଜ ଗୋଡ଼ରେ ସଶକ୍ତ ଛିଡ଼ା ହେଲେ କଂଗ୍ରେସ୍ ଲୋକମାନଙ୍କୁ ଦୃଢ଼ଭାବରେ ଧରି ରଖିପାରିବେ। ଆଜିର ଅବସ୍ଥାରେ ବାମପନ୍ଥୀମାନେ କଂଗ୍ରେସର କାର୍ଯ୍ୟକ୍ରମ ପ୍ରତି ଅତି ମାତ୍ରାରେ ଅନୁରକ୍ତ ।"[୧୩]

ସୁଭାଷ ବୋଷଙ୍କର ବିଜୟ ଏକ ବିଶେଷ ସଫଳତା ହେତୁ ଜୋଷୀ ଏହାକୁ ସ୍ୱାଗତ କରିଥିଲେ । ସେ ଏକ ସମ୍ପାଦକୀୟରେ ଲେଖିଥିଲେ,

"ସୁଭାଷ ଜିତିଲେ, କାରଣ କଂଗ୍ରେସର ସାଧାରଣ ସଭ୍ୟମାନେ ତାହା ଚାହୁଁଥିଲେ ଯଦିଓ ନେତୃତ୍ୱର ଆଦେଶନାମା ଭିନ୍ନ ଥିଲା । କଂଗ୍ରେସ ସଦାସର୍ବଦା ଯେଉଁଥିପାଇଁ ଛିଡ଼ା ହୋଇଛି - ସମଗ୍ର ରାଷ୍ଟ୍ରର ଏକତ୍ୱ ଏବଂ ସଂଗ୍ରାମ କରିବା ପାଇଁ ତାହାର ଇଚ୍ଛାଶକ୍ତି ସୁଭାଷ ତାହାର ମୂର୍ତ୍ତିମନ୍ତ ରୂପ ।"[୧୪]

---

୧୨. ନ୍ୟାସନାଲ ଫ୍ରଣ୍ଟ, ଏପ୍ରିଲ ୧୬, ୧୯୩୮ ।

୧୩. ନ୍ୟାସନାଲ ଫ୍ରଣ୍ଟ, ସମ୍ପାଦକୀୟ, ଅକ୍ଟୋବର ୧୬, ୧୯୩୮ ।

୧୪. ନ୍ୟାସନାଲ ଫ୍ରଣ୍ଟ, ଫେବୃୟାରୀ ୫, ୧୯୩୯ ।

୧୯୩୯ର କଂଗ୍ରେସ ତ୍ରିପୁରୀ ଅଧିବେଶନରେ, ସିପିଆଇ ଯଦିଓ ବେଆଇନ ଥିଲା, ସମସ୍ତ ପ୍ରକାର ସମ୍ଭାବନାକୁ ସଂଗ୍ରହ କରି, ସୁଭାଷ ଚନ୍ଦ୍ର ବୋଷଙ୍କୁ କଂଗ୍ରେସ ସଭାପତି ଭାବେ ପୁନଃ ନିର୍ବାଚିତ କରାଇବାକୁ ଚେଷ୍ଟା କରିଥିଲା। ପାର୍ଟି ନିକଟରେ ଏହା ଥିଲା ରାଜନୈତିକ ଯୁଦ୍ଧ।

ଦି ନ୍ୟାସନାଲ ଫ୍ରଣ୍ଟ ଏକ ଚିନ୍ତାଶୀଳ ପତ୍ରିକା ଭାବେ ଏହାକୁ ସାବ୍ୟସ୍ତ କରିଥିଲା ଯାହାକି ଶ୍ରମିକ ଶ୍ରେଣୀ, କୃଷକ, ଛାତ୍ର ତଥା ରାଜ୍ୟର ନେତାଗଣଙ୍କ ସଂଗ୍ରାମ ଓ ଆନ୍ଦୋଳନର ଯଥାଯଥ ବିବରଣୀ ପ୍ରକାଶ କରୁଥିଲା । ଏହା କୌଣସି ଆର୍ଥିକ ପୃଷ୍ଠପୋଷକତା ବିନା ଚାଲୁଥିଲା। ତାଙ୍କର ରାଜନୈତିକ ଓ ସାଂଗଠନିକ କାର୍ଯ୍ୟ ବ୍ୟତୀତ, ଯୋଶୀ ବହୁ ସମୟ ଅର୍ଥ ସଂଗ୍ରହରେ ବ୍ୟୟ କରୁଥିଲେ । ସେ ଯୁବସାଥୀ ଯଥା ଶାନ୍ତା ଗାନ୍ଧି, ନର୍ଗିସ ବାଟଲିୱାଲା, ଦିଲସାଦ ଚାରୀ ଓ ଅନ୍ୟ ଅନେକଙ୍କୁ ପତ୍ରିକା ପାଇଁ ନିୟମିତ ଅର୍ଥ ସଂଗ୍ରହ କରିବାକୁ ଉଦ୍‌ବୁଦ୍ଧ କରୁଥିଲେ । ପ୍ରତ୍ୟେକ କ୍ଷେତ୍ରରେ ଉଚ୍ଚମାନର ପ୍ରତିଭାମାନଙ୍କୁ ନିର୍ଣ୍ଣୟ କରିବାରେ ଯୋଶୀଙ୍କର ସ୍ୱତନ୍ତ୍ର ଦକ୍ଷତା ଥିଲା ଏବଂ ଯାହାଫଳରେ ସେ ସମୟର ପ୍ରସିଦ୍ଧ ରାଜନୈତିକ ବ୍ୟଙ୍ଗ ଚିତ୍ରକର ଆର୍‌.ଏସ୍‌.ନାଇଡୁ, ଫଟୋ ସାମ୍ବାଦିକ ଡି.ଏଚ୍‌. ତେନ୍ଦୁଲକରଙ୍କୁ ବାହାର କରିଥିଲେ ଯେଉଁମାନେ ପତ୍ରିକା ପ୍ରକାଶନାର୍ଥରେ ଯୋଗଦାନ କରିଥିଲେ ଯାହା ସେମାନଙ୍କର ବ୍ୟଙ୍ଗଚିତ୍ର ଓ ଫଟୋଚିତ୍ର ଦ୍ୱାରା ସମୃଦ୍ଧ ହୋଇଥିଲା। ଏପରିକି ସେ ମଧ୍ୟ ପତ୍ରିକା ବିକ୍ରି ପାଇଁ କ୍ଷୁଦ୍ରକର୍ମୀ ଗୋଷ୍ଠୀ ଗଠନକରି ଚୌପାଟିଠାରେ ଯେକୌଣସି ସାର୍ବଜନୀନ ସଭାରେ, ରାଜନୈତିକ ଦଳମାନଙ୍କର ଯେକୌଣସି ମିଟିଂ ହଲରେ ଯୋଶୀଙ୍କୁ ସେମାନଙ୍କ ସହିତ ସଦ୍ୟ ପ୍ରକାଶିତ ନ୍ୟାସନାଲ ଫ୍ରଣ୍ଟ ବିକ୍ରି କରୁଥିବାର ଦେଖିବାକୁ ମିଳୁଥିଲା।

୧୯୩୯ରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଯିବାରୁ, ପ୍ରାଦେଶିକ କଂଗ୍ରେସ ସରକାରମାନେ ଇସ୍ତଫା ଦେଲେ । ଯୋଶୀଙ୍କୁ ପୁଣିଥରେ ଆତ୍ମଗୋପନ କରିବାକୁ ହେଲା ଏବଂ ତଳୁର ଅଧିକାରୀଙ୍କ ସହିତ ମିଶି ସେ ପାର୍ଟି ପତ୍ରିକା ଓ ସାହିତ୍ୟ ପ୍ରକାଶନ ସହିତ ଦେଶବ୍ୟାପୀ ଜନଗଣଙ୍କ ଆନ୍ଦୋଳନକୁ ସମନ୍ୱୟ କରିବା ପାଇଁ ଭୂମିତଳ ଗୁମ୍ଫାର ଜାଲ ବିସ୍ତାର ଗଠନ କଲେ । ଏହି ସମୟରେ, ସେ ପାର୍ଟିର ବେଆଇନ ପତ୍ରିକା 'ଦି କମ୍ୟୁନିଷ୍ଟ'କୁ ପେନ୍‌ସିଲ ଲେଖାର ପ୍ରତିରୂପ ବାହାର କଲେ ଯାହା ଫଳରେ ଜାତୀୟ ଓ ଆନ୍ତର୍ଜାତୀୟ ବିଷୟ ସମ୍ପର୍କରେ ସାଥୀମାନେ ଏବଂ ଜନଗଣ ପାର୍ଟିର ସ୍ଥିତି ସମ୍ପର୍କରେ ଅବଗତ ହେବେ ।

ଏହି ସମୟ ଥିଲା ପାର୍ଟି ପାଇଁ କଠୋର ପରୀକ୍ଷାର ସମୟ। ଏହି ସମୟକୁ ମନେପକେଇ ଗୋବିନ୍ଦ କହିଛନ୍ତି,

> "ଆମେ ଯେଉଁମାନେ ତାଙ୍କ (ଯୋଶୀ) ସହିତ ଏହି ସମୟରେ ଥିଲୁ, ଜାଣିଛୁ ସେ କିପରି ନିଜର ଇଚ୍ଛାଶକ୍ତି, ଦୃଢ଼ତା ଏବଂ ନିପୁଣ ସାଂଗଠନିକ ଦକ୍ଷତା ଦ୍ୱାରା ଦେଶବ୍ୟାପୀ ସଂଗଠନକୁ ପରିଚାଳିତ କରି ରଖିଥିଲେ ଏବଂ ଏହା ସହିତ ଜନ ଆନ୍ଦୋଳନ ଗଢୁଥିଲେ ଯଦିଓ ବହୁ ପ୍ରଦେଶରେ ଆଗୁଆ ନେତାମାନେ ବନ୍ଦୀ ହୋଇ ଯାଇଥିଲେ

ଏବଂ ପାର୍ଟି କେନ୍ଦ୍ର ସଦାସର୍ବଦା ବିପଦଗ୍ରସ୍ତ ଥିଲା । ତାଙ୍କର ସାଂଗଠନିକ ଦକ୍ଷତା ହେତୁ କଠୋର ପରୀକ୍ଷା ସମୟ ପରେ ଭାରତୀୟ ଜାତୀୟ କଂଗ୍ରେସ ପଛକୁ ପାର୍ଟି ସର୍ବବୃହତ ଏକକ ପାର୍ଟି ଭାବରେ ଉଭା ହୋଇଥିଲା ।"[୧୫]

ଜୋଷୀଙ୍କର ସାମ୍ପ୍ରତିକ ଅବସ୍ଥା ସମ୍ପର୍କରେ ଗଭୀର ହୃଦୟଙ୍ଗମ ଥିବା ହେତୁ ସେ ମିରଟ୍ ଜେଲ ସମୟର ଶ୍ରେଣୀ ସଂଘର୍ଷର ଆବଦ୍ଧତାରୁ ଅବରୋହଣ କରି ସ୍ୱାଧୀନତା ପାଇଁ ମୁକ୍ତି ସଂଗ୍ରାମରେ ସର୍ବହରାମାନଙ୍କର ରାଜନୈତିକ ଯୋଗଦାନ ରୂପକ ଦୂରନ୍ତ ବ୍ୟାପୀ ଆପେକ୍ଷିକ ଗୁରୁତ୍ୱ ଦେଇପାରିଥିଲେ । ମାତ୍ର ତିନିବର୍ଷର ଅବଧି ମଧ୍ୟରେ - ୧୯୩୬ରୁ ୧୯୩୯, କମ୍ୟୁନିଷ୍ଟ ପାର୍ଟି କ୍ଷୁଦ୍ର ଅଥଚ ଏକ ବିଶେଷ ବାମ ଶକ୍ତି ଭାବେ ଭାରତରେ ଉଭା ହେଲା ।

୧୫. ଗୋବିନ୍ଦ ବିଦ୍ୟାର୍ଥୀ, ମେନଷ୍ଟ୍ରିମ୍, ନଭେମ୍ବର ୧୫, ୧୯୮୦ ।

୩

# ଗଣ ସଂଗଠକ

ସଂଗଠକ ଭାବରେ ପି.ସି. ଜୋଷୀଙ୍କର କେହି ସମକକ୍ଷ ହେବେ ନାହିଁ । ତାଙ୍କର ଅନ୍ୟ ସହିତ ଆଳାପ ଆଲୋଚନାର ଶୈଳୀ ଏକାନ୍ତ ବ୍ୟକ୍ତିଗତ ଓ ପ୍ରରୋଚନାମୂଳକ ଏବଂ ତାହାହିଁ ବହୁଲୋକଙ୍କୁ ତାଙ୍କ ନିକଟକୁ ଓ କମ୍ୟୁନିଷ୍ଟ ପାର୍ଟି ନିକଟକୁ ଆଣି ପାରିଥିଲା । ଅନ୍ୟମାନଙ୍କ ସହ ତାଙ୍କର ଯୋଗାଯୋଗ ବୃଦ୍ଧି ହେବାର କାରଣ ଥିଲା ତାଙ୍କ ଅନ୍ତରର ଗଭୀର ଉଷ୍ମତା, ଭାଷାରେ ଘରୋଇ ଅଳଙ୍କାରର ବ୍ୟବହାର, ମାନବ ଦୃଷ୍ଟିଭଙ୍ଗୀ ଯାହା ତାଙ୍କୁ ବହୁ ସଂଖ୍ୟକ ଲୋକଙ୍କର ଏପରିକି ଲେଖକ, କଳାକାର, ଛାତ୍ର, ବୁଦ୍ଧିଜୀବୀମାନଙ୍କର ପ୍ରିୟଭାଜନ କରିଥିଲା । ନୂତନ ବର୍ଗ ଅନୁସନ୍ଧାନ କରିବାରେ ତାଙ୍କର ଅନ୍ତର୍ଜାତ ଗୁଣ, କର୍ମ ଓ ଚିନ୍ତାର ମିଶ୍ରଣ ଆନ୍ତର୍ଜାତୀୟ ସହିତ ଦେଶପ୍ରେମର ମିଳାମିଶା ବହୁ ଭାରତୀୟଙ୍କୁ ଅନୁପ୍ରାଣିତ କରିଥିଲା ଓ ସେମାନେ ଦେଶର ସ୍ୱାଧୀନତା ପାଇଁ, ସଂଗ୍ରାମ ପାଇଁ, ସଂଗ୍ରାମ କରିବାକୁ ଏବଂ ଏଥି ସହିତ ଏକ ଶୋଷଣହୀନ ସଠିକ୍ ସମାଜ ଗଠନ ପାଇଁ ଯୁଗ ଯୁଗ ଧରି ଚାଲି ଆସୁଥିବା ସାମନ୍ତବାଦ ବିରୁଦ୍ଧରେ ମଧ୍ୟ ସଂଗ୍ରାମ କରିବାକୁ ଆଗେଇ ଆସିଥିଲେ ।

ଆମ ଦେଶର ଲୋକ ଇତିହାସ କେବଳ ପାର୍ଟି ଇତିହାସ ନୁହେଁ, ସବୁଠାରୁ ଉଜ୍ଜ୍ୱଳମୟ ଇତିହାସ ହେଉଛି ତାଙ୍କ ନେତୃତ୍ୱ । ସେ ଆମର ଲୋକ ପରମ୍ପରାକୁ ଆଧାର କରି, ସଂସ୍କୃତି ଓ କଳା ମାଧ୍ୟମରେ ଏକ ନୂତନ ପ୍ରକାରର ସର୍ବବ୍ୟାପୀ ରାଜନୈତିକ ଆନ୍ଦୋଳନ ଆରମ୍ଭ କରିଥିଲେ । ଫାସିବାଦ ବିରୋଧୀ ଓ ସାମ୍ରାଜ୍ୟବାଦ ବିରୋଧୀ ଘୂର୍ଣ୍ଣୟ ମଧ୍ୟରେ ସେ ବିଚ୍ଛିନ୍ନ ହୋଇ ରହିଥିବା ସାଂସ୍କୃତିକ ଗୋଷ୍ଠୀମାନଙ୍କୁ ଏକତ୍ରୀତ କରିଥିଲେ ଯାହା ଦେଶର ବିଭିନ୍ନ ପ୍ରାନ୍ତରରେ ବଙ୍ଗଳା, କେରଳ, ଆନ୍ଧ୍ର, ପଞ୍ଜାବରେ ଛପି ରହିଥିଲା ଏବଂ ତାହାକୁ ଜନଗଣଙ୍କର ସାଂସ୍କୃତିକ ଉଦ୍‌ବେଳନର ରୂପ ଦେବାକୁ ଚେଷ୍ଟା କରିଥିଲେ । ଏହା ଏକ ନୂତନ ପ୍ରଗତିଶୀଳ ଲୋକନୀତିର ଜୁଆର ଆଣିଥିଲା ଯାହା ସେହି ସମୟର ଗୋଟିଏ ପିଢ଼ିର ଲୋକମାନଙ୍କୁ ଗ୍ରାସ କରିଥିଲା । ତାଙ୍କର ମାର୍କ୍ସବାଦର ପ୍ରବେଶ ମାର୍ଗ କଠୋର ଓ ସମ୍ପ୍ରଦାୟ ଭିତ୍ତିକ ନ ଥିଲା । ଏହା ଦକ୍ଷତାର ସହିତ ଭାରତୀୟ ପରମ୍ପରାର ବିଭିନ୍ନ ସମସ୍ୟାକୁ ଯୋଡ଼ିବାର ଏକ ନୂତନ ଦିଗ ଆହରଣ କରିଥିଲା ।

ତାଙ୍କର ସମୟ ଥିଲା ସବୁଠାରୁ କଷ୍ଟକର ସମୟ, ସମ୍ପୂର୍ଣ୍ଣ ଭାବରେ ଜଟିଳତାରେ ପରିପୂର୍ଣ୍ଣ, ବିଶେଷକରି ଆନ୍ତର୍ଜାତୀୟ ଅବସ୍ଥାରୁ ସୃଷ୍ଟ ଏବଂ ଏହିପରି ଏକ ସ୍ଥିତିରେ, ସେ କମ୍ୟୁନିଷ୍ଟମାନଙ୍କୁ ସେମାନଙ୍କର ନିର୍ଜନତା ମଧ୍ୟରୁ ବାହାର କରିବାର ଦୁଃସାଧ୍ୟ କାର୍ଯ୍ୟ କରିଥିଲେ ଏବଂ ଜାତୀୟ ଆନ୍ଦୋଳନରେ ମିଶିବାରେ ସାହାଯ୍ୟ କରିଥିଲେ । ସେ କମ୍ୟୁନିଷ୍ଟମାନଙ୍କୁ ଜାତୀୟ ଦେଶପ୍ରେମୀ ଭାବରେ ଏକ ବିଶେଷ ବର୍ଗ ଭାବେ ଖ୍ୟାତି ଆଣି ଦେଇଥିଲେ । ଯଦିଓ ଅନ୍ୟ ବର୍ଗର ଜାତୀୟତାବାଦୀମାନେ ସେମାନେ ଏକ ନୂତନ ଧରଣର ଲୋକଭିତ୍ତିକ ସାଂସ୍କୃତିକ ଲୋକନୀତିର ଆଲୋକ ବର୍ତ୍ତିକା ଭାବେ ବହୁ ସମୟରେ ସେମାନଙ୍କୁ ଭୁଲ ବୁଝୁଥିଲେ ଏବଂ ଏହିପରି ଏକ ପରିସ୍ଥିତିରେ କମ୍ୟୁନିଷ୍ଟ ପାର୍ଟିକୁ ଏକ ଗଣ ରାଜନୈତିକ ସଂଗଠନ ଭାବରେ ପରିବର୍ତ୍ତନ କରିବାରେ ଯୋଷୀଙ୍କର ଅବଦାନ ନିଃସନ୍ଦେହ ଭାବରେ ପ୍ରଭୂତ ।

ଯୋଷୀ ଗଣ ସଂଗଠନମାନଙ୍କର ଚରିତ୍ର ଦଳହୀନ ଓ ସମ୍ପ୍ରଦାୟବିହୀନ, ଏହି ଭାବରେ ଲାଳନପାଳନ କରିଥିଲେ ଏବଂ ସେମାନଙ୍କୁ ବ୍ୟାପକ ପରିପ୍ରେକ୍ଷଣ ଦେଇଥିଲେ ଯାହା ଫଳରେ ଅଧିକରୁ ଅଧିକ ଲୋକ ଏହି ଆନ୍ଦୋଳନକୁ ଆସିପାରିବେ । ଏହି ସମୟରେ ଅଖିଳ ଭାରତ ଟ୍ରେଡ୍ ୟୁନିୟନ କଂଗ୍ରେସ ଓ ଅଖିଳ ଭାରତ କୃଷକ ସଭା ବ୍ୟତୀତ ଅନ୍ୟ ମୁଖ୍ୟ ଗଣ ସଂଗଠନ ଏକ ନିର୍ଦ୍ଦିଷ୍ଟ ରୂପ ନେଇଥିଲା । ଛାତ୍ର, କଳାକାର, ଲେଖକ ଓ ମହିଳା ଗଣ ସଂଗଠନରେ କମ୍ୟୁନିଷ୍ଟ ଓ ଅଣ କମ୍ୟୁନିଷ୍ଟ, ପ୍ରଗତିଶୀଳ ଓ ଦେଶପ୍ରେମୀ ଶକ୍ତିମାନେ ଏକତ୍ର ମିଶି କାର୍ଯ୍ୟ କରିପାରୁଥିଲେ । ଏହି ଗଣ ସଂଗଠନ ମାନଙ୍କରେ କମ୍ୟୁନିଷ୍ଟ ସଭ୍ୟମାନେ କି ପ୍ରକାର ଭୂମିକା ନେବେ ସେ ସମ୍ପର୍କରେ ଯୋଷୀଙ୍କର ପରିଷ୍କାର ବୁଝାମଣା ଥିଲା । ତାଙ୍କର ପ୍ରଥମ ଉଦ୍ଦେଶ୍ୟ ଥିଲା ଏହି ଗଣ ସଂଗଠନମାନଙ୍କର ଅଭିବୃଦ୍ଧି ଏବଂ ତା' ମଧ୍ୟକୁ ଶୁଭେଚ୍ଛୁମାନଙ୍କୁ ଆଣିବା ଯେଉଁମାନେ ଏହି ସଂଗଠନଗୁଡ଼ିକ ଚଳାଇବାରେ ସାହାଯ୍ୟକାରୀ ହେବେ ଏବଂ ଆଦର୍ଶଗତ ଭାବରେ କମ୍ୟୁନିଷ୍ଟମାନଙ୍କର ନିକଟତର ହେବେ । ପ୍ରତ୍ୟେକ ପରିବାରରେ ଏକ ନିର୍ଦ୍ଦିଷ୍ଟ ବର୍ଗର 'ଶୁଭେଚ୍ଛୁ' ଥିଲେ ଏବଂ ସେମାନେ ପାର୍ଟିର ସଭ୍ୟ ହୋଇନଥିଲେ । ବିଭିନ୍ନ ସଂକଟ ସମୟରେ, ସେମାନଙ୍କର ସାହାଯ୍ୟ ଥିଲା ବହୁତ ଏପରିକି ସେମାନେ ପାର୍ଟି ପାଇଁ ଆର୍ଥିକ ସାହାଯ୍ୟ କରୁଥିଲେ କିମ୍ବା ପାର୍ଟି ବେଆଇନ ଥିବା ସମୟରେ କିମ୍ବା ଅନ୍ୟ କୌଣସି କଠିନ ସମୟରେ ଯେତେବେଳେ ଆବଶ୍ୟକ ହେଉଥିଲା ନେତାମାନଙ୍କୁ ଆଶ୍ରୟ ପ୍ରଦାନ କରୁଥିଲେ ।

ଯୋଷୀ ସଦାସର୍ବଦା ଲୋକଭାଷାରେ କଥାବାର୍ତ୍ତା କରୁଥିଲେ ଏବଂ ତତ୍‌କ୍ଷଣାତ୍ ଯେକୌଣସି ସାଥୀର ପରିବାରର ପାର୍ଟି ସଭ୍ୟ ନ ଥିବା ମା'ମାନଙ୍କ ସହିତ, ଭଉଣୀମାନଙ୍କ ସହିତ, ଯୌଥ ପରିବାରର ଯେକୌଣସି ସଭ୍ୟ ସହିତ ସମ୍ପର୍କ ସ୍ଥାପନ କରୁଥିଲେ ଯେଉଁମାନେ ଅନୁଭବ କରୁଥିଲେ ଯେ ଏହି ସ୍ୱାର୍ଥରହିତ କମ୍ୟୁନିଷ୍ଟମାନଙ୍କ ପ୍ରତି କିଛି କରିବାର ଆବଶ୍ୟକତା ରହିଛି । ଯୋଷୀ ସାଥୀ ଓ ଶୁଭେଚ୍ଛୁମାନଙ୍କ ମନ ମଧ୍ୟରେ ସଂଗଠନ ପ୍ରତି ଅମାପ ଗର୍ବ ଅନୁଭବ କରିବାର ଭାବନାକୁ ସଞ୍ଚାରଣ କରୁଥିଲେ । ଜଣେ ଗଣ ସଂଗଠକ ଭାବରେ ଏହା ଥିଲା ତାଙ୍କର ସବୁଠାରୁ ମୁଖ୍ୟ ଅବଦାନ । ତାଙ୍କର ସରଳତା, ନିଷ୍ପାପରତା, ତାଙ୍କ ହସ ହସ ମୁହଁର ନିରପରାଧ

ସ୍ମିତ ହାସ୍ୟରେ ଲୋକମାନଙ୍କୁ ଆକର୍ଷଣ କରିବାର ଚୁମ୍ବକୀୟ ଶକ୍ତି ଥିଲା । ତାଙ୍କର ମାର୍ଗ ଥିଲା ଜଣଙ୍କ ସହିତ ଜଣଙ୍କ ଭିତ୍ତିରେ । ଯେକୌଣସି ବ୍ୟକ୍ତି ସହିତ ପ୍ରଥମ ସାକ୍ଷାତରେ, ସେ ତାଙ୍କର ବ୍ୟକ୍ତିଗତ ପୃଷ୍ଠଭୂମି, ପାରିବାରିକ ସମସ୍ୟା ଇତ୍ୟାଦି ସମ୍ପର୍କରେ କୁଢ଼ କୁଢ଼ ପ୍ରଶ୍ନ କରି ସେହି ବ୍ୟକ୍ତି ମନରେ ଗଭୀର ପ୍ରଭାବ ପକାଇ ପାରୁଥିଲେ । ସେ ଏତେ ଶୀଘ୍ର କହୁଥିଲେ ଯେ ଶବ୍ଦଗୁଡ଼ିକ ତାଙ୍କ ମୁହଁରୁ ପ୍ରବଳ ଧାରାରେ ବାହାରି ଆସୁଥିଲା ଏବଂ ଏପରିକି ବହୁ ସମୟରେ ବୁଝିବା କଷ୍ଟକର ହୋଇପଡୁଥିଲା । ସେ ସିଧାସଳଖ ସମାଜ, ରାଜନୀତି ଓ ରାଷ୍ଟ୍ର ସମ୍ପର୍କରେ କହୁଥିଲେ, ଦେଶର ସ୍ୱାଧୀନତା ଆନ୍ଦୋଳନ କିମ୍ବା ଶ୍ରେଣୀହୀନ ସମାଜ ସମ୍ପର୍କରେ ନିଜର ବିଚାରରେ ଅଂଶଗ୍ରହଣ କରୁଥିଲେ । ଗୋବିନ୍ଦ ବିଦ୍ୟାର୍ଥୀ ଯୋଷୀଙ୍କ ସହିତ ପ୍ରଥମ ସାକ୍ଷାତ ସମ୍ପର୍କରେ ଲେଖିଛନ୍ତି,

> "ବ୍ୟକ୍ତିଗତ ଭାବରେ ଏହା ଥିଲା ଏକାନ୍ତ ବ୍ୟକ୍ତିଗତ ଅନୁଭୂତି । ମୁଁ ଏପରି ଜଣେ ମଣିଷକୁ ପାଇଲି ଯାହାଙ୍କ ହାତରେ ମୁଁ ନିଜକୁ କୌଣସି ଦ୍ୱିଧା ନ ରଖି - ଏକ ଅଜଣା ଶ୍ରଦ୍ଧା ଓ ସମର୍ପଣ ଭାବନେଇ ସମର୍ପିତ କରିଦେଇ ପାରିଲି ।"[୧]

ଏବଂ ତାହାହିଁ ଥିଲା ବାସ୍ତବତା ଯାହା ଯୋଷୀ ତାଙ୍କର ସେ ସମୟର ସାଥୀମାନଙ୍କ ନିକଟରେ ଥିଲେ । ବାସ୍ତବରେ, ସେହି ସମୟର ସମଗ୍ର ପିଢ଼ି-ସେମାନଙ୍କ ମଧ୍ୟରୁ ପ୍ରାୟ ବର୍ତ୍ତମାନ ଅଧିକାଂଶ ଜୀବିତ ନାହାଁନ୍ତି - ସେମାନେ ତାଙ୍କୁ ଅତ୍ୟନ୍ତ ଉଚ୍ଚ ସମ୍ମାନର ସହିତ ଦେଖୁଥିଲେ । ସେ ଏକ ଆନ୍ଦୋଳନକୁ, ଏକ ଗଣ ସଂଗଠନକୁ ଏବଂ ଏକ ସମର୍ପିତ ଦେଶପ୍ରେମୀ ଗୋଷ୍ଠୀକୁ ଗଠନ କରିପାରିଥିଲେ ।

ଚାଳିଶ ଦଶକର ପ୍ରାରମ୍ଭରେ, ଯେତେବେଳେ କମ୍ୟୁନିଷ୍ଟମାନଙ୍କୁ ଭାରତଛାଡ଼ ଆନ୍ଦୋଳନରେ ଯୋଗ ନ ଦେବା ହେତୁ ଦେଶଦ୍ରୋହୀ ଭାବରେ ନ୍ୟୂନ କରାଯାଉଥିଲା ଯୋଷୀ ୧୯୪୩ ମସିହାରେ ବଙ୍ଗଳାରେ ହୋଇଥିବା ମହା ଦୁର୍ଭିକ୍ଷରେ ଯେଉଁଥିରେ ୩୫ ଲକ୍ଷ ଲୋକ କଲିକତା ରାସ୍ତାରେ କଷ୍ଟ ପାଉଥିଲେ ରିଲିଫ୍ କାର୍ଯ୍ୟରେ ହୃଦୟ ଓ ଆତ୍ମାର ସହିତ ପାର୍ଟି ନିଜକୁ ସମ୍ପୂର୍ଣ୍ଣ ରୂପେ ନିୟୋଜିତ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ଟ୍ରକ୍ ଟ୍ରକ୍ ମୃତ ଶରୀର, କଂସେ ପଖାଳ ଭାତ ପାଇଁ ଭିକ ମାଗୁଥିବା ମହିଳାମାନଙ୍କର ହୃଦୟ ବିଦାରକ ଚିତ୍କାର, ଆବର୍ଜନା ଗଦାରୁ ଟିକିଏ ଖାଦ୍ୟ ସଂଗ୍ରହ ପାଇଁ ପରସ୍ପର ମଧ୍ୟରେ ଛଡ଼ାଛଡ଼ି କିମ୍ବା ଅତିଶୟ କ୍ଷୁଧାର୍ତ୍ତ ଓ ଶୀର୍ଣ୍ଣକାୟ ମହିଳା ଓ ଶିଶୁମାନଙ୍କର ଶେଷ ନିଃଶ୍ୱାସ ତ୍ୟାଗ କରୁଥିବାର ଦୃଶ୍ୟ ଆମ ଦେଶର ଲୋକମାନଙ୍କର ମନକୁ ଦୋହଲାଇ ଦେଇଥିଲା । ଏହି ଦୁର୍ଭିକ୍ଷ ଫଳରେ ୧୯୪୩ ମସିହାରେ ପ୍ରାୟ ଏକ କୋଟି ଲୋକ ବିଶେଷକରି କୃଷି ଶ୍ରମିକ, ଭାଗଚାଷୀ, ଦରିଦ୍ର କୃଷକ, ସହରର ଦରିଦ୍ର ଲୋକ ବାସଚ୍ୟୁତ ହୋଇ ରାସ୍ତାରେ ପଡ଼ିଥିଲେ । ତିରିଶ ଲକ୍ଷ ଲୋକ ଜୀବିକା ହରାଇଲେ, ୧୫ ପ୍ରତିଶତ କୃଷକ ଭୂମିହୀନ ହେଲେ । ନିରାଶ୍ରୟ ମହିଳାମାନେ ବେଶ୍ୟାଳୟରେ ପ୍ରବେଶ

---

୧. ମେନ୍‌ଷ୍ଟ୍ରିମ୍, ନଭେମ୍ବର ୧୫, ୧୯୮୦ ଯୋଷୀଙ୍କ ମୃତ୍ୟୁ ପରେ ।

କଲେ। ବେଶ୍ୟାମାନଙ୍କର ସଂଖ୍ୟା ୨୦ ହଜାରରୁ ୪୫ ହଜାରକୁ ବୃଦ୍ଧି ପାଇଲା। ମାର୍କିନ୍ ସୈନିକମାନେ ଯେଉଁମାନେ କି ସେତେବେଳେ କଲିକତାରେ ଅବସ୍ଥାପିତ ଥିଲେ ସେମାନେ ତରୁଣ ବଙ୍ଗ ଲଳନାମାନଙ୍କୁ ସେମାନଙ୍କ ଘରେ ପଶି ସେମାନଙ୍କୁ ଜୋର ଜବରଦସ୍ତ ଅପହରଣ କରି ଯୌନ ନିର୍ଯ୍ୟାତନା ଦେଉଥିଲେ । ଏହି ସଙ୍ଗୀନ ଅବସ୍ଥାକୁ ହୃଦୟଙ୍ଗମ କରି ଜୋଷୀ କଲିକତାରେ ଥିବା ଆମେରିକାର ବାଣିଜ୍ୟ ପ୍ରତିନିଧିଙ୍କୁ ଚିଠି ଲେଖିଲେ ଏବଂ ବଙ୍ଗଳାର କମ୍ୟୁନିଷ୍ଟ ପାର୍ଟି ଏହି ବିଷୟରେ ତୁରନ୍ତ ହସ୍ତକ୍ଷେପ କରିବାକୁ ଏବଂ ବିପଜ୍ଜନକ ଅବସ୍ଥା ବିରୁଦ୍ଧରେ ସଂଗ୍ରାମ କରିବାକୁ କହିଲେ।

ଏହି ସମୟରେ ନିରାଶ୍ରୟ ଦୁର୍ଭିକ୍ଷ ପ୍ରପୀଡ଼ିତ କ୍ଷୁଧାର୍ତ୍ତ ମହିଳାମାନଙ୍କୁ ଟଙ୍କା ଦ୍ୱାରା ପ୍ରଲୋଭିତ କରାଗଲା, ଯୌନ ଶୋଷଣ କରାଗଲା, ସୈନ୍ୟ ଛାଉଣୀକୁ ପଠାଗଲା କିମ୍ବା ଜବରଦସ୍ତ ବେଶ୍ୟାବୃତ୍ତିରେ ଲଗାଗଲା । ସେହି କାରଣରୁ ଏହିପରି ଆଘାତପ୍ରାପ୍ତ ମହିଳାମାନଙ୍କୁ ସୁରକ୍ଷା ଦେବାପାଇଁ କମ୍ୟୁନିଷ୍ଟ ମହିଳାମାନେ ମହିଳା ଆତ୍ମରକ୍ଷା ସମିତି ଗଠନ କଲେ । ଏହି ସଂଗଠନ ସହିତ ଆତ୍ମରକ୍ଷା ଯୋଡ଼ି ଦିଆଗଲା । କମ୍ୟୁନିଷ୍ଟ ମହିଳାମାନଙ୍କର ଏହି ଗଣ ସଂଗଠନ ବହୁ ଅଣକମ୍ୟୁନିଷ୍ଟମାନଙ୍କୁ ଏଥି ମଧ୍ୟକୁ ଆଣି ପାରିଥିଲା ଏବଂ ଏଥି ମଧ୍ୟରେ ଥିଲେ ଜଣାଶୁଣା ଉଦାରବାଦୀ ମହିଳା ରାଣୀ ମହାଲନୋବିସ ଏବଂ ଲୀଳା ମଜୁମଦାର । ଇନ୍ଦିରା ଦେବୀ ଚୌଧୁରୀ, ରବୀନ୍ଦ୍ରନାଥ ଟାଗୋରଙ୍କର ଝିଆରୀ ଏହାର ପ୍ରଥମ ସଭାପତି ହେଲେ ।

ବହୁ କମ୍ୟୁନିଷ୍ଟ ମହିଳା ସ୍ୱୀକାର କରିଥିଲେ ଯେ ଜୋଷୀ ସେମାନଙ୍କୁ ଶିକ୍ଷିତ କରି "ମହିଳା ଆନ୍ଦୋଳନକୁ ଗୋଟିଏ ଦୁର୍ଦ୍ଧର୍ଷ ବାହିନୀ ଭାବରେ ଗଠନ କରିଥିଲେ । ଯେଉଁମାନେ ଦାରିଦ୍ର୍ୟ, ଅଜ୍ଞତା ଓ ଅଧୋପତନର ବନ୍ଧନରୁ ମୁକ୍ତ ହୋଇ ସ୍ୱାଧୀନ ଭାରତ ପାଇଁ ସଂଗ୍ରାମରେ ଯୋଗ ଦେଇଥିଲେ।"[୨] ଏହି ମହିଳାମାନଙ୍କୁ ଗଣ ଆନ୍ଦୋଳନ, ସୃଜନଶୀଳ କାର୍ଯ୍ୟ, ପାର୍ଟି କାର୍ଯ୍ୟକୁ ଆଣିବାରେ ତାଙ୍କର ସଫଳ ଉତ୍ସାହ ସେମାନଙ୍କୁ ସାହାଯ୍ୟ କରିଥିଲା ଓ ସେମାନେ ଅନୁଭବ କରିଥିଲେ ଯେ ଜାତୀୟ ସ୍ୱାର୍ଥର ସୁରକ୍ଷା ପାଇଁ ଏକ ବ୍ୟାପକ ଫ୍ରଣ୍ଟ୍ ଗଠନ କରିବାର ଅଲଘ୍ୟ ଆବଶ୍ୟକତା ରହିଛି । ଜୋଷୀ ଏହି ମହିଳା ଆନ୍ଦୋଳନକୁ ପ୍ରକୃତ ରୂପ ଦେବାକୁ ଓ ପରିସ୍ଥିତି ସମ୍ପର୍କରେ ସଠିକ୍ ପରିଚିତି ଦେବା ପାଇଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ତୁଲାଇଥିଲେ । ସେହି ସମୟର ଜଣେ ମହିଳା ନେତ୍ରୀ ମଣିକୁନ୍ତଳା ସେନ୍ ତାଙ୍କର ସ୍ମୃତିଚାରଣରେ ପି.ସି. ଜୋଷୀଙ୍କର କମ୍ୟୁନିଷ୍ଟ ମହିଳାମାନଙ୍କୁ ଶିକ୍ଷା ଦେବା ସମ୍ପର୍କରେ ଲେଖିଥିଲେ । ସେମାନଙ୍କର କାର୍ଯ୍ୟ ସ୍ୱଳ୍ପ ଆୟକାରୀ ବସ୍ତି ଅଞ୍ଚଳ ମଧ୍ୟରେ ସୀମିତ ଥିଲା ।

> "ଯେଉଁ ବ୍ୟକ୍ତି ପ୍ରଥମେ ଆମକୁ ଏପରି କାର୍ଯ୍ୟସବୁ କରିବାକୁ ହେବ ଦେଖାଇଥିଲେ, ସେ ଥିଲେ ପି.ସି. ଜୋଷୀ, ସେ ସମୟର ପାର୍ଟି ନେତା। ମହିଳାମାନଙ୍କର ବିଶେଷ ଅଧିକାର ପାଇଁ ସଂଗ୍ରାମ କରିବାକୁ, ଆମ୍ଭମାନଙ୍କୁ ସମସ୍ତ ମହିଳାମାନଙ୍କୁ ଏପରିକି

୨. ରେଣୁ ଚକ୍ରବର୍ତ୍ତୀ, କମ୍ୟୁନିଷ୍ଟ ଇନ୍ ଇଣ୍ଡିଆନ୍ ଉଇମେନ୍ ମୁଭମେଣ୍ଟ, ପିପିଏଚ୍, ନୂଆ ଦିଲ୍ଲୀ, ୧୯୮୦।

ସମାଜର ଉଚ୍ଚବର୍ଗରେ ଥିବା ମହିଳାମାନଙ୍କୁ ଅନ୍ୟ ସମସ୍ତଙ୍କ ସହିତ ଯେପରି ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବେ ସଂଗଠିତ କରିବାକୁ ହେବ। ସେମାନେ ଶ୍ରେଣୀ ସଂଗ୍ରାମ କ୍ଷେତ୍ରରେ ଅଗ୍ରଣୀ ହେବେ। ମହିଳାମାନଙ୍କ ସକରାତ୍ମକ କାର୍ଯ୍ୟ ପାଇଁ ସଂଗଠିତ କରିବାକୁ ହେବ। ଅଗ୍ରାଧିକାର ହେବ ମହିଳା ଓ ଶିଶୁମାନଙ୍କର ମଙ୍ଗଳକାର୍ଯ୍ୟ। ଅନ୍ୟ ସଂଗ୍ରାମ ତା' ସହିତ ଚାଲିବ । ଫାସିବାଦ ବିରୋଧୀ ପ୍ରଚାର ଓ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିବାର ଆନ୍ଦୋଳନ । ଏହିସବୁ କେତେଗୁଡ଼ିଏ ବିଷୟ ଜୋଷୀ ଆମକୁ ଶିକ୍ଷା ଦେଇଥିଲେ ।"[୩]

ବଙ୍ଗଳାରେ ଯେଉଁ ଦୁର୍ବିପାକ ଘଟିଲା ତା'ର ପ୍ରକୃତି ସମ୍ପର୍କରେ ଜୋଷୀ ଆକଳନ କରିପାରିଥିଲେ । ତେଣୁ ସେ ପାର୍ଟି ଓ ତା'ର ଗଣ ସଂଗଠନଗୁଡ଼ିକୁ ଦେଶବ୍ୟାପୀ ବଙ୍ଗଳାର ବୁଭୁକ୍ଷୁ ଆନ୍ଦୋଳନ ପାଇଁ ସକ୍ରିୟ କରିଥିଲେ । ସେ ବଙ୍ଗଳାରେ ଜାପାନ ଫାସିବାଦ, କଳାବଜାରୀ ଓ ମହଜୁଦକାରୀଙ୍କ ବିରୁଦ୍ଧରେ ଏକ ସାଂସ୍କୃତିକ ଗୋଷ୍ଠୀ (ସ୍କ୍ୱାର୍ଡ୍) ଧରି ବୁଲିଥିଲେ ଏବଂ ଆମ ଦେଶର ସ୍ୱାଧୀନତା ପାଇଁ ଓ ହିନ୍ଦୁ-ମୁସଲମାନ ଏକତା ପାଇଁ ଲୋକମାନଙ୍କୁ ଉତ୍ତେଜିତ କରିଥିଲେ। ମେଦିନୀପୁର (ବଙ୍ଗଳାର ଏକ ଜିଲ୍ଲା) ଯିବା ବାଟରେ ଜୋଷୀ ଗୋଟିଏ ସ୍ଥାନରେ ଦୁର୍ଭିକ୍ଷରେ ମରିଥିବା ପାଞ୍ଚ ଶହ ଗରିବ କୃଷକଙ୍କ ଖପୁରିର ଭୟଙ୍କର ଦୃଶ୍ୟ ଦେଖିଥିଲେ । ଜୋଷୀ ବଙ୍ଗଳାର ଗାଁ ଗାଁ ବୁଲିଥିଲେ, ସାଧାରଣ ସଭା ସଂଗଠିତ କରି ଲୋକମାନଙ୍କୁ ସଚେତନ କରାଇଥିଲେ ଯେ ଏହା ହେଉଛି ମନୁଷ୍ୟକୃତ ଦୁର୍ଭିକ୍ଷ ଏବଂ ରିଲିଫ୍ ପାଇଁ ଓ ମହଜୁଦ ହଟାଇବା ପାଇଁ ଆନ୍ଦୋଳନ ପ୍ରସ୍ତୁତ କରିବାକୁ କହିଥିଲେ ଏବଂ ଏହି ସମସ୍ତ ପ୍ରକ୍ରିୟା ମଧ୍ୟରେ ପାର୍ଟିକୁ ପୁନଃ ସଜୀବ କରିବାରେ ସାହାଯ୍ୟ କରିଥିଲେ । ସେ ଗୋଟିଏ ପ୍ରଚାର ପତ୍ର ଲେଖିଥିଲେ "ଯଦି ବଙ୍ଗଳା ମରେ ତେବେ କିଏ ବଞ୍ଚିବ ? ଏହା ମାଧ୍ୟମରେ ସେ ରାଜନୀତି ଓ ମହଜୁଦକାରୀଙ୍କ ଖେଳର ମୁଖା ଖୋଲି ଦେଇଥିଲେ ଏବଂ ଭୂମିହୀନ ଶ୍ରମିକ ଓ ଭାଗଚାଷୀମାନଙ୍କର ଦୁର୍ଦଶା ଦେଖାଇଥିଲେ । ଏହି ଆବେଗପୂର୍ଣ୍ଣ ପ୍ରଚାର ପତ୍ରରେ ସେ ଅତ୍ୟନ୍ତ ସଶକ୍ତ ଭାବରେ ଲୋକମାନଙ୍କୁ ନିବେଦନ କରିଥିଲେ ଯେ ବଙ୍ଗଳାକୁ ରକ୍ଷା କରିବା ପାଇଁ ଲୋକମାନେ ଯାହା କରିବା କଥା କରନ୍ତୁ । ଦୁର୍ଭିକ୍ଷ ପ୍ରପୀଡ଼ିତ ବଙ୍ଗଳାରେ ଜୋଷୀ ଛ' ସପ୍ତାହ କଟାଇଲେ, ବିପନ୍ନ ଅଞ୍ଚଳମାନଙ୍କରେ ବ୍ୟାପକ ଭାବରେ ବୁଲି ଦେଖିଲେ, ଯାହା ଫଳରେ ଅବସ୍ଥାର ପରିଷ୍କାର ଛବି ଓ ପ୍ରଦେଶ ଉପରେ ମାଡ଼ିଥିବା ଦାରୁଣ ଦୁର୍ବିପାକକୁ ପ୍ରତ୍ୟକ୍ଷ କଲେ । ସେ ଲେଖିଥିଲେ,

"ମୁଁ ବଙ୍ଗଳାକୁ ଯାଇଥିଲି ଗୋଟିଏ ଦୃଢ଼ ସଂକଳ୍ପ ନେଇ, କିପରି ପ୍ରତ୍ୟେକ ଦେଶପ୍ରେମୀ ଭାରତୀୟ ସେମାନଙ୍କର ବିଭେଦକୁ ଭୁଲି ଏକତ୍ର ହୋଇ ବଙ୍ଗଳାକୁ ସର୍ବାଧିକ ସୁବିଧା

---

୩. ମଣିକୁନ୍ତଳା ସେନ୍, ଇନ୍ ସର୍ଚ୍ଚ ଅଫ୍ ଫ୍ରିଡମ୍, ଆନ୍ ଅନଫିନିସ୍ଡ଼ ଜର୍ଣ୍ଣି, ଏସଟ୍ରି, କଲିକତା, ୨୦୦୧, ପୃଷ୍ଠା-୯୫।

ଯୋଗାଇଦେବେ, କିପରି ପ୍ରତ୍ୟେକ ପୁରୁଷ, ମହିଳା ଓ ପିଲା ବଙ୍ଗଳା ପାଇଁ ସେମାନଙ୍କ ନିକଟରେ ଥିବା ଶେଷ ମୁଦ୍ରା ପର୍ଯ୍ୟନ୍ତ ଦାନ କରିବେ ।"[୪]

ଜୋଷୀ ବଙ୍ଗଳାର ଦୁର୍ଦ୍ଦଶାକୁ ପାର୍ଟିର କାର୍ଯ୍ୟକ୍ରମ ଭିତରକୁ ଏବଂ ବିଶେଷକରି ରାଷ୍ଟ୍ରର କାର୍ଯ୍ୟସୂଚୀରେ ଆଣିଥିଲେ । ବଙ୍ଗଳା ମୃତ୍ୟୁର ଦାରୁଣ କ୍ଲେଶରେ ଥିଲା ଏବଂ ଜୋଷୀ ବଙ୍ଗଳାକୁ ସମସ୍ତଙ୍କର ଚିନ୍ତାର କାରଣ କରିପାରିଲେ । ବଙ୍ଗଳାକୁ ରକ୍ଷାକରିବା ପାଇଁ ଦେଶବ୍ୟାପୀ ଆନ୍ଦୋଳନ, ସାଂସ୍କୃତିକ ଗୋଷ୍ଠୀମାନଙ୍କ ମାଧ୍ୟମରେ ଅର୍ଥ ସଂଗ୍ରହ ଦେଶବ୍ୟାପୀ ପ୍ରଭାବ ପକାଇଥିଲା । ସେହି ଆନ୍ଦୋଳନ ମାଧ୍ୟମରେ କଳା ରାଜନୈତିକ ସଂଗ୍ରାମର ମାଧ୍ୟମ ଓ ଯାନ ହୋଇଗଲା । ସଙ୍ଗୀତ, ନାଚ, ନାଟକ, ଚିତ୍ର, ରେଖାଚିତ୍ର ଅଭୂତପୂର୍ବ ଭାବେ କାର୍ଯ୍ୟ କଲା । ଯାହା ଭାଷଣ କରିବାକୁ ସକ୍ଷମ ହୋଇ ପାରିନଥିଲା, ତାହା ସଂସ୍କୃତି ମାଧ୍ୟମରେ ସମ୍ଭବ ହେଲା । ଏହା ଫଳରେ ଗଣ ସଂଗଠନମାନଙ୍କୁ ଏକ ସର୍ବସାଧାରଣ ମଞ୍ଚରେ ଏକତ୍ର କରାଯାଇ ଖାଦ୍ୟ ସମସ୍ୟାର ଗୁମର ପଦାରେ ପକାଗଲା, ମହଜୁଦକାରୀମାନଙ୍କ ବିରୋଧରେ ସ୍ୱର ଉଠିଲା, ବିତରଣ ବ୍ୟବସ୍ଥାର ଆରମ୍ଭ ହେଲା ଏବଂ ଦୁର୍ଭିକ୍ଷ ପୀଡ଼ିତମାନଙ୍କ ପାଇଁ ରନ୍ଧାଖାଦ୍ୟ ବ୍ୟବସ୍ଥା କରାଗଲା। ବଙ୍ଗଳାକୁ ସାହାଯ୍ୟ କରିବା ପାଇଁ ଏକ ଭିନ୍ନ ଭାରତ ଜାଗି ଉଠିଲା । ଜୋଷୀ ଲେଖିଥିଲେ,

"ଭାରତ ପାଇଁ ଓ ପ୍ରତ୍ୟେକ ଭାରତୀୟଙ୍କ ନିମିତ୍ତ ବଙ୍ଗଳାର ମୃତ୍ୟୁ କେବେ ହେବାର ନୁହେଁ।

ଯଦି ଆମେ ଆମର ପରିବାରକୁ ଭଲପାଉ ଏବଂ ଖଣ୍ଡ ଖଣ୍ଡ ହୋଇ ଯିବାକୁ ନଚାହୁଁ ବଙ୍ଗଳା ପରିବାରମାନଙ୍କ ପରି, ଆମକୁ ବଙ୍ଗଳାକୁ ସାହାଯ୍ୟ କରିବାକୁ ହେବ।

ଯଦି ଆମେ ଆମର ମହିଳା ଓ କନ୍ୟାମାନଙ୍କର ଇଜ୍ଜତ ବଞ୍ଚାଇବାକୁ ଚାହୁଁ ଏବଂ ବଙ୍ଗଳାର ମହିଳା ଓ ଭଉଣୀମାନଙ୍କର ଇଜ୍ଜତ ଲୁଣ୍ଠନ ନ ହେବା ଚାହୁଁ, ଆମକୁ ବଙ୍ଗଳାକୁ ସାହାଯ୍ୟ କରିବାକୁ ହେବ ।

ଯଦି ଆମ ପିଲାମାନେ ମାଛି ଭଳି ମରିଯିବା ପାଇଁ ନ ଚାହୁଁ ଯେପରି ବଙ୍ଗଳାର ପିଲାମାନେ ମରୁଛନ୍ତି, ଆମକୁ ବଙ୍ଗଳାକୁ ସାହାଯ୍ୟ କରିବାକୁ ହେବ।

ଯଦି ଆମେ ଭାରତକୁ ଭଲପାଉ ଆମକୁ ବଙ୍ଗଳାକୁ ରକ୍ଷା କରିବାକୁ ହେବ। ଯଦି ବଙ୍ଗଳାର ମୃତ୍ୟୁ ଘଟେ, ତେବେ ଭାରତ ବଞ୍ଚି ପାରିବନାହିଁ।"

ଏହି ଶବ୍ଦ ସମଗ୍ର ଦେଶକୁ ବିଦ୍ୟୁତ ତରଙ୍ଗରେ ତରଙ୍ଗାୟିତ କଲା । ମୁସଲିମ୍ ଲିଗ୍ ମନ୍ତ୍ରୀମଣ୍ଡଳ ମହଜୁଦକାରୀମାନଙ୍କୁ ବନ୍ଦୀ କରିବାରେ ବିଫଳ ହେବାକୁ ଖୋଲା ଭାବରେ ପ୍ରକାଶ

୪. ପି.ସି. ଜୋଷୀ, ହୁ ଲିଭସ୍ ଇଫ୍ ବେଙ୍ଗଲ ଡାଇଜ୍ ? ପିପିଏଚ, ବମ୍ବେ, ୧୯୪୩, ପୃଷ୍ଠା-୧୦ ।

କରି ଜୋଷୀ ବଙ୍ଗଳା ଭିତରେ ଆତ୍ମ ସାହାଯ୍ୟ ଆନ୍ଦୋଳନ ଗଠନ କରିବାକୁ ଆହ୍ୱାନ କଲେ ଏବଂ ଅନ୍ୟ ରାଷ୍ଟ୍ରର ସମସ୍ତ ଦେଶପ୍ରେମୀ ନାଗରିକମାନଙ୍କୁ ଓ ଗଭୀର ମାନବବାଦୀଙ୍କୁ ଯେଉଁମାନେ ବଙ୍ଗଳାର ଏହି ଦାରୁଣ୍ୟ ଦୁର୍ବିପାକରେ ଦ୍ରବୀଭୂତ ହୋଇ ପଡ଼ିଥିଲେ ଦୁର୍ଭିକ୍ଷ ଦ୍ୱାରା ପ୍ରପୀଡ଼ିତ ଭୋକିଲା ଲୋକଙ୍କୁ ସବୁପ୍ରକାର ସହାୟତା କରିବାକୁ ଆହ୍ୱାନ କଲେ ।

ସେ ପାର୍ଟିର ଦୁଇଟି କାର୍ଯ୍ୟକୁ ସ୍ଥିର ନିଶ୍ଚିତ କଲେ- "ଆତ୍ମସାହାଯ୍ୟ ଆନ୍ଦୋଳନ ସଂଗଠିତ କରି ଦୁର୍ଭିକ୍ଷ ପୀଡ଼ିତ ଲୋକମାନଙ୍କ ପାଇଁ ରନ୍ଧା-ଖାଦ୍ୟ ଚାଲୁ ରଖିବା, ତାହାକୁ ଉନ୍ନୀତ କରି ବ୍ୟାପକ କରିବା (ପାର୍ଟି ସାଥୀମାନେ ୭୦୦ ରନ୍ଧା ଖାଦ୍ୟରେ କାର୍ଯ୍ୟକରି ୧,୧୭,୦୦୦ ଦୁର୍ଭିକ୍ଷ ପୀଡ଼ିତ ଲୋକମାନଙ୍କୁ ଖୁଆଉଥିଲେ) ଏବଂ ଆଗାମୀ ଶସ୍ୟ ପାଇଁ ସଂଗ୍ରାମ ସଂଗଠିତ କରିବା, ବଙ୍ଗଳାର ଲୋକମାନଙ୍କ ପାଇଁ ବଙ୍ଗଳାର ଉତ୍ପାଦିତ ଶସ୍ୟକୁ ବ୍ୟବହାର କରିବା ଏବଂ ଦେଖିବାକୁ ହେବ ଯେ ଯେପରି ଗତବର୍ଷ ପରି ଖାଦ୍ୟଶସ୍ୟ ମହଜୁଦକାରୀ ମାନଙ୍କ ହାତକୁ ନ ଯାଏ।"

ଜୋଷୀଙ୍କର ସ୍ୱୟଂସମ୍ପୂର୍ଣ୍ଣ ରାଜନୈତିକ ବିଚାର ହେତୁ ସେ ବଙ୍ଗଳାର ଖାଦ୍ୟ ସମସ୍ୟା ସହିତ ସେ ସମୟର ରାଷ୍ଟ୍ରୀୟ ପ୍ରଶ୍ନକୁ ଯୋଡ଼ିବାରେ ସଫଳ ହୋଇଥିଲେ । ଏକ ଜାତୀୟ ସରକାର ଗଠନ କରିବାର ଜରୁରୀ ଆବଶ୍ୟକତାକୁ ସେ ବୁଝିପାରିଥିଲେ ଯାହାକି ପ୍ରଦେଶରେ ଘଟିଥିବା ଦୁର୍ଭିକ୍ଷର ପ୍ରଭାବକୁ ଦୂର କରିପାରିବ ।

> "ବଙ୍ଗଳା ପାଇଁ ବର୍ତ୍ତମାନ ଅବସ୍ଥାରେ ସବୁଠାରୁ ଉତ୍ତମ ମନ୍ତ୍ରୀମଣ୍ଡଳ ହେବ ଲିଗ୍-ମହାସଭା ମନ୍ତ୍ରୀମଣ୍ଡଳ ଯାହାକୁ କଂଗ୍ରେସ ଓ କମ୍ୟୁନିଷ୍ଟମାନେ ସମର୍ଥନ କରିବେ। ବଙ୍ଗଳାରେ ଥିବା ସମସ୍ତ ସଚ୍ଚୋଟ ଦେଶପ୍ରେମୀ ମାନଙ୍କର କର୍ତ୍ତବ୍ୟ ହେଉଛି ଯେ, ଲିଗ୍-ମନ୍ତ୍ରୀମଣ୍ଡଳ ଡକ୍ଟର ଶ୍ୟାମପ୍ରୋସାଦ ମୁଖାର୍ଜୀଙ୍କୁ ସମସ୍ତ ପ୍ରକାର ସହଯୋଗ ଯୋଗାଇଦେବ ଏବଂ ଅନ୍ୟ ପକ୍ଷରେ ସେ ତାହାକୁ ଗ୍ରହଣ କରିବେ ।"[୫]

ସୃଷ୍ଟିଶୀଳ କାର୍ଯ୍ୟକ୍ଷେତ୍ରରେ ଏକ କେନ୍ଦ୍ରୀୟ ସାଂସ୍କୃତିକ ସ୍କ୍ୱାର୍ଡ଼ ଗଠନ ଜୋଷୀଙ୍କର ଥିଲା ଅନବଦ୍ୟ ଅବଦାନ ଯାହା କଳାକାର, ନାଟ୍ୟକାର, ସଙ୍ଗୀତଜ୍ଞ, ନୃତ୍ୟଶିଳ୍ପୀ ଏବଂ ଫଟୋଗ୍ରାଫରମାନଙ୍କର ମିଳନ କେନ୍ଦ୍ର ହୋଇଥିଲା । ଏହି ସାଂସ୍କୃତିକ ସ୍କ୍ୱାର୍ଡ଼ ସ୍ୱାଧୀନତା, ଦେଶପ୍ରେମ, କ୍ଷୁଧାର ସଂଗୀତ ସହିତ ବଙ୍ଗଳା ଦୁର୍ଭିକ୍ଷ ସମ୍ପର୍କରେ ନାଟକ ମଞ୍ଚସ୍ଥ କରି ସମଗ୍ର ଭାରତ ଭ୍ରମଣ କରିଥିଲା। ଏହି ସାଂସ୍କୃତିକ ସ୍କ୍ୱାର୍ଡ଼ ମାଧ୍ୟମରେ ପ୍ରଚାର ପାର୍ଟିକୁ ଲୋକମାନଙ୍କ ନିକଟରେ ପହଞ୍ଚିବାରେ ସାହାଯ୍ୟ କରିଥିଲା, ସେହିପରି ଏକ ସମୟରେ ଯେତେବେଳେ ତାହା ଜାତୀୟ ଆନ୍ଦୋଳନଠାରୁ ବିଚ୍ଛିନ୍ନ ହୋଇଯାଇଥିଲା କାରଣ ଫାସିବାଦ ବିରୁଦ୍ଧରେ ବିଶ୍ୱଯୁଦ୍ଧକୁ ଏହା ଜନଗଣଙ୍କର ଯୁଦ୍ଧ ଭାବରେ ଗ୍ରହଣ କରିଥିଲା ।[*] ବିନୟ ରାୟ ଗାୟକ ଦଳର ଦାୟିତ୍ୱରେ

---

୫. ତତ୍ରୈବ, ପୃଷ୍ଠା-୨୨।

* ସେହି ସମୟର ରାଜନୈତିକ ଧାରା ପରବର୍ତ୍ତୀ ଅଧ୍ୟାୟରେ।

ଥିଲେ ଏବଂ ଶମ୍ଭୁ ମିତ୍ର ଯେ ପରବର୍ତ୍ତୀ ସମୟରେ ବଙ୍ଗଳାର ନାଟକ ରଚନା ଓ ନାଟ୍ୟକାର ଭାବରେ କିମ୍ବଦନ୍ତୀ ପୁରୁଷରେ ପରିଣତ ହୋଇଥିଲେ, ତାଙ୍କୁ ନାଟକ ପ୍ରସ୍ତୁତ କରିବାର ଦାୟିତ୍ୱ ଦିଆଯାଇଥିଲା । ସେ ବିଜନ ଭଟ୍ଟାଚାର୍ଯ୍ୟଙ୍କର ଜମାନବନ୍ଦୀ ନାଟକକୁ ବାଛିଥିଲେ ଯାହାକୁ ନେମିଚାନ୍ଦ ଜୈନ ହିନ୍ଦୀରେ 'ଅନ୍ତିମ ଅଭିଳାଷ' ନାମରେ ଅନୁବାଦ କରିଥିଲେ । ଏହା ବଙ୍ଗଳା ବାହାରେ ଓ ଦେଶର ଅନ୍ୟ ପ୍ରାନ୍ତରରେ ମଞ୍ଚସ୍ଥ ହୋଇଥିଲା । ଯେଉଁଠାରେ ସ୍କ୍ୱାର୍ଡ଼ ଏହାକୁ ପ୍ରଦର୍ଶିତ କରୁଥିଲେ ଲୋକମାନେ ନାଟକ ଶେଷ ହେବା ପରେ ବଙ୍ଗଳା ଦୁର୍ଭିକ୍ଷ ରିଲିଫ୍ ପାଇଁ ମୁକ୍ତହସ୍ତରେ ଦାନ କରୁଥିଲେ । କମ୍ୟୁନିଷ୍ଟ ପାର୍ଟିର ସାପ୍ତାହିକ ମୁଖପତ୍ର ପିପୁଲ୍ସ ୱାରରେ ଦୁର୍ଭିକ୍ଷ ସମ୍ପର୍କିତ ଲେଖା, ଗଳ୍ପ, ବିବରଣୀ ସହିତ ସୁନୀଲ ଜାଣହାଙ୍କ ପରି ଫଟୋଗ୍ରାଫରମାନଙ୍କର ହୃଦୟସ୍ପର୍ଶୀ ଫଟୋଚିତ୍ର, ଚିତ୍ତପ୍ରୋସାଦଙ୍କର ରେଖାଚିତ୍ର ଏବଂ ବିଭିନ୍ନ ସ୍ଥାନର ତଥ୍ୟପୂର୍ଣ୍ଣ ଘଟଣାବଳୀ ପ୍ରକାଶ ପାଇଥିଲା । ବଙ୍ଗଳା ଦୁର୍ଭିକ୍ଷ ସମ୍ପର୍କରେ ହଜରାହ ବେଗମ୍‌ଙ୍କ ଦ୍ୱାରା ଲିଖିତ ଲେଖା ପଢ଼ି, ଜଣେ ପାଠକ ଯେ ପରବର୍ତ୍ତୀ ସମୟରେ କର୍ମଜୀବୀ ମହିଳାଙ୍କ ସହିତ କାର୍ଯ୍ୟ କରିଥିଲେ, ତାଙ୍କୁ ଲେଖିଥିଲେ,

> "ମୁଁ ବଙ୍ଗଳାର ଦୁର୍ଭିକ୍ଷ ସମ୍ପର୍କରେ ଆପଣଙ୍କର ଲେଖା ପିପୁଲ୍ସ ୱାର୍‌ରୁ ପଢ଼ିବାକୁ ପାଇଲି ଏବଂ ଲୋକମାନଙ୍କର ଦୁର୍ଦ୍ଦଶା ସମ୍ପର୍କରେ ଜାଣି ମୋର ହୃଦୟ ଦ୍ରବୀଭୂତ ହୋଇଗଲା । ମୋ ସ୍ୱାମୀ ମୋତେ ପୂଜା ପାଇଁ ଶାଢ଼ି କିଣିବାକୁ ଏହି ଟଙ୍କା ଦେଇଥିଲେ । ମୋର ବହୁତ ଶାଢ଼ି ଅଛି ଏବଂ ଆଉ ଗୋଟିଏ ନୂଆ ଶାଢ଼ି ଦରକାର କରୁନାହିଁ । ଏହି ଟଙ୍କାକୁ ବଙ୍ଗଳାକୁ ପଠାଇ ଦିଅ ।"[୬]

ପାର୍ଟିର ପ୍ରଚାର ଫଳରେ ଲୋକମାନଙ୍କ ମନରେ ଏହିପରି ଭାବାବେଗ ଜନ୍ମ ଲାଭ କରିଥିଲା । ସାଂସ୍କୃତିକ ସ୍କ୍ୱାର୍ଡ଼ ଗୁଜୁରାଟ, ମହାରାଷ୍ଟ୍ର ବୁଲି ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକମାନଙ୍କୁ ରିଲିଫ୍ ଯୋଗାଇବା ପାଇଁ ଅର୍ଥ ସଂଗ୍ରହ କରିଥିଲା ।[*]

ବଙ୍ଗଳା ବୁଭୁକ୍ଷୁ ଆନ୍ଦୋଳନ ସମଗ୍ର ରାଷ୍ଟ୍ରକୁ ପ୍ରଜ୍ୱଳିତ କରିଥିଲା । ଲୋକମାନଙ୍କ ନିକଟକୁ ରାଜନୈତିକ ବାର୍ତ୍ତା ପ୍ରଚାର କରିବାର ମାଧ୍ୟମ ହୋଇଥିଲା ସଂସ୍କୃତି ଓ କଳା । କଳା ରାଜନୈତିକ ସଂଗ୍ରାମର ମାଧ୍ୟମ ଜୋଷୀଙ୍କର ଏହି ବିଚାରକୁ ଏହି ପ୍ରଚାରର ସଫଳତା ସମୃଦ୍ଧ କରିଥିଲା । ଦେଶର ବିଭିନ୍ନ ପ୍ରାନ୍ତରରୁ ଦକ୍ଷତା ସମ୍ପନ୍ନ ଯୁବକ ଯୁବତୀମାନଙ୍କୁ ସେ ଏହି ସାଂସ୍କୃତିକ ସ୍କ୍ୱାର୍ଡ଼ ପାଇଁ ବାଛି ଆଣୁଥିଲେ ଏବଂ ଲୋକମାନଙ୍କ ପାଇଁ କିଛି କରିବାକୁ ଉଦ୍‌ବୁଦ୍ଧ କରୁଥିଲେ ।

---

୬. ପିପୁଲ୍ସ ୱାର୍, ଜୁଲାଇ ୧, ୧୯୪୫ ।

* ପାର୍ଟି ପକ୍ଷରୁ ଗଠନ କରାଯାଇଥିବା ପିପୁଲସ୍ ପବ୍ଲିସିଂ ହାଉସ୍ ପ୍ରାୟ ୨୨ ଗୋଟି କଳାଧଳା ଅନନ୍ୟ ରେଖାଚିତ୍ର ପ୍ରକାଶ କରିଥିଲେ ଯାହା ଦୁର୍ଭିକ୍ଷକୁ ନିଜ ଆଖିରେ ଦେଖି ଚିତ୍ତପ୍ରୋସାଦ ଆଙ୍କିଥିଲେ । ତା'ର ନାମ ଦେଇଥିଲେ ବିଭୁକ୍ଷୁ ବଂଗଳା : ୧୯୪୩ ନଭେମ୍ବର ମାସରେ ମେଦିନୀପୁର ଜିଲ୍ଲା ଭ୍ରମଣ କରି ।

ଶିକ୍ଷକମାନଙ୍କ ମଧ୍ୟରୁ ଶାନ୍ତି ବର୍ଦ୍ଧନ, ରବି ଶଙ୍କର, ଅବନୀ ଦାସଗୁପ୍ତ, ସଚିନ ଶଙ୍କର, ନରେନ୍ଦ୍ର ଶର୍ମା ଇତ୍ୟାଦିଙ୍କୁ ଆଣିଥିଲେ, ଯେଉଁମାନେ ପରବର୍ତ୍ତୀ ସମୟରେ ଶିଳ୍ପୀ ଭାବରେ ଦିପ୍ତୀମନ୍ତ ହୋଇଥିଲେ ଏବଂ ସଂସ୍କୃତି କ୍ଷେତ୍ରରେ ନାଁ କମାଇଥିଲେ । କେନ୍ଦ୍ରୀୟ ସ୍କ୍ୱାର୍ଡ଼ର ସଭ୍ୟମାନେ ଜନଗଣ ଓ ପାରମ୍ପରିକ ଶୈଳୀର ବିଭିନ୍ନ ଢାଞ୍ଚାକୁ ପରୀକ୍ଷା ନିରୀକ୍ଷା କରିଥିଲେ । ଗଣ କଳାର ପୁନର୍ଜାଗରଣ ଗଣସଂଗୀତ ଏବଂ ଉନ୍ମୁକ୍ତ ମଞ୍ଚ ନାଟକ ପ୍ରଦର୍ଶନ ପାଇଁ ଉଦ୍‌ବେଳନ ସୃଷ୍ଟି ହୋଇଥିଲା । ଯୋଶୀ ବହୁ ସମୟରେ ନିଜେ ଆସୁଥିଲେ ଏବଂ ପୂର୍ବାଭ୍ୟାସ ଦେଖୁଥିଲେ । ତାଙ୍କର ଉପସ୍ଥିତି ପ୍ରସ୍ଫୁଟିତ ହେଉଥିବା କଳାକାରଙ୍କ ଦକ୍ଷତା ବୃଦ୍ଧିରେ ଉତ୍ସାହପ୍ରଦ ହେଉଥିଲା । ଯୋଶୀ ପ୍ରତ୍ୟେକଙ୍କ ଭିତରେ କୌଣସି ନା କୌଣସି ଭାବରେ ଦକ୍ଷତା ଥିବାର ଦେଖିବାକୁ ପାଉଥିଲେ ଏବଂ ତାହାକୁ ସେ ପାର୍ଟିର ଓ ରାଷ୍ଟ୍ରର ମଙ୍ଗଳ ପାଇଁ ବ୍ୟବହାର କରୁଥିଲେ । ସେ ସେମାନଙ୍କ ମଧ୍ୟରେ ବିଶ୍ୱାସ ଜାତ କରାଉଥିଲେ ଓ ସେମାନଙ୍କର ସବୁଠାରୁ ଉନ୍ନତ ପ୍ରଦର୍ଶନ ପାଇଁ ଉତ୍ସାହ ପ୍ରଦାନ କରୁଥିଲେ । ବହୁ ମହିଳା, ଏପରିକି ରକ୍ଷଣଶୀଳ ପରିବାରର ନିଜର ଏକାନ୍ତ ପରିସର ମଧ୍ୟରୁ ବାହାରି ଆସି ସାମାଜିକ ପରିବର୍ତ୍ତନର ଅଂଶ ହୋଇଗଲେ ଯାହା ଏହି ସାଂସ୍କୃତିକ ଆନ୍ଦୋଳନ ମାଧ୍ୟମରେ ଚାଲିଥିଲା ।

ମେ, ୧୯୪୩ ମସିହାରେ ଏହି ସାଂସ୍କୃତିକ ସ୍କ୍ୱାର୍ଡ଼ ଏକ ସାଂଗଠନିକ ରୂପ ନେଲା ଏବଂ ଭାରତୀୟ ଗଣନାଟ୍ୟ ସଂଘ (IPTA) ଗଠିତ ହେଲା ଯାହା ସମସ୍ତ ପ୍ରଗତିଶୀଳ ଧାରାକୁ ସୁସମ୍ବନ୍ଧ କଲା ଯାହା ସେ ପର୍ଯ୍ୟନ୍ତ ନାଟକ, ଗୀତ ଓ ନାଚ ଇତ୍ୟାଦି ମାଧ୍ୟମରେ ପ୍ରକାଶ ପାଉଥିଲା । ଯୋଶୀ ଆମ ଦେଶର ସମୃଦ୍ଧି ସାଂସ୍କୃତିକ ପରମ୍ପରାକୁ ବାହାର କରିବାର ପୁରୋଦୃଷ୍ଟି ରଖିଥିଲେ ଏବଂ ଆମ ଲୋକଙ୍କ ଜୀବନର ବିଶେଷ ଦିଗ ସହିତ ସମନ୍ୱିତ କରି ସେ ସମୟର ଆବଶ୍ୟକତାକୁ ପୂରଣ କରିଥିଲେ । ଭାରତୀୟ ଗଣନାଟ୍ୟ ସଂଘ ଏକ ସାଂସ୍କୃତିକ ଆନ୍ଦୋଳନର ରୂପ ନେଲା ଯାହା ଲୋକମାନଙ୍କର କଳାକୁ ଏକ ନୂତନ ଦୃଷ୍ଟିଭଙ୍ଗୀ ଦେଲା । ପୁରାତନ କଳା ଢାଞ୍ଚାକୁ ନୂତନ ଆକର୍ଷଣୀୟ ବିଷୟ ବସ୍ତୁରେ ପରିବର୍ତ୍ତନ କରାଗଲା । ପାରମ୍ପରିକ ନୃତ୍ୟ ଯଥା- କଥାକଳୀ ଯାହା ମନ୍ଦିର ଓ ରାଜପ୍ରାସାଦର ଚାରିକାନ୍ଥ ମଧ୍ୟରେ ନିବୁଜ ହୋଇ ରହିଥିଲା ତାହା ଜୀବନ୍ତ କଳା ରୂପରେ ସେମାନଙ୍କର ଏକାକୀତ୍ୱ ବାହାରକୁ ନେଇ ଆସିଲା ଏବଂ ଲୋକମାନଙ୍କର ସେ ସମୟର ବୈପ୍ଳବିକ କ୍ରୋଧର ପ୍ରତିଫଳନ ସେମାନଙ୍କ ଦ୍ୱାରା ହୋଇଥିଲା । କଳା, ସଂଗୀତ, ନୃତ୍ୟ ଏବଂ ନାଟକ ଲୋକମାନଙ୍କର ସ୍ୱାଧୀନତା ସଂଗ୍ରାମର, ଆର୍ଥିକ ନ୍ୟାୟ ଓ ପ୍ରଗତିଶୀଳ ସଂସ୍କୃତିକୁ ଉପସ୍ଥାପିତ କଲା । ଭାରତୀୟ ଗଣନାଟ୍ୟ ସଂଘ ସାମନ୍ତବାଦ ବିରୋଧୀ ଦୃଷ୍ଟିଭଙ୍ଗୀର ସୁରକ୍ଷା ପାଇଁ ଛିଡ଼ା ହୋଇଥିଲା ଯାହାକୁ ଫାସିବାଦ ଓ ସାମ୍ରାଜ୍ୟବାଦ ବିରୋଧରେ ଛିଡ଼ା ହେବାପାଇଁ ନିର୍ଦ୍ଦେଶିତ କରାଗଲା । ଏହା ମଧ୍ୟ ଜନଗଣ ମୁକାବିଲା କରୁଥିବା ସମସ୍ୟାର କାରଣ ଓ ନିରାକରଣ ପାଇଁ ସେମାନଙ୍କୁ ସଚେତନ କରାଇବାର ଉତ୍‌ପ୍ରେରକ ହୋଇଥିଲା । କୃଷକ, ଶ୍ରମିକ, ଛାତ୍ର, ମହିଳାମାନଙ୍କ ପକ୍ଷରୁ ସ୍ୱତଃପ୍ରବୃତ୍ତ ସ୍ୱୀକୃତି ମିଳିଲା ଯେଉଁମାନେ ଗୀତ, କବିତା ଆବୃତ୍ତି, ନାଚ, ନାଟକ ଅଭିନୟ ମାଧ୍ୟମରେ ଲୋକମାନଙ୍କୁ ଉଜ୍ଜୀବିତ କଲେ ଖାଦ୍ୟ ମହଜୁଦ୍‌କାରୀମାନଙ୍କ

ବିରୁଦ୍ଧରେ, ଜାତୀୟ ନେତୃବୃନ୍ଦଙ୍କୁ ମୁକ୍ତିଦେବା ପ୍ରଚାରରେ, ଏକ ଜାତୀୟ ସରକାର ପ୍ରତିଷ୍ଠା ଦାବିରେ ଏବଂ ଫାସିବାଦର ବିପଦ ସମ୍ପର୍କରେ ସଚେତନ କରାଇଲେ । ଏହି ଚାରିଗୋଟି ବିଷୟକୁ ଏକତ୍ରୀତ କରାଗଲା ଏବଂ ତତ୍କ୍ଷଣାତ୍ ଏହି ଆଞ୍ଚଳିକ ପ୍ରଚେଷ୍ଟା ରାଷ୍ଟ୍ରବ୍ୟାପୀ ଗଣନାଟ୍ୟ ଆନ୍ଦୋଳନ ସହିତ ଏକୀଭୂତ ହୋଇଗଲା । ଏହା ଥିଲା ପି.ସି. ଜୋଷୀଙ୍କର ମାନସ ସନ୍ତାନ। ସେ ସେସମୟର ଆବଶ୍ୟକତାକୁ ଅନୁଭବ କରି ସୃଜନଶୀଳ ଯୋଗାଯୋଗ ମାଧ୍ୟମରେ କଳା ରୂପକୁ ଭାରତୀୟ ଜନଜୀବନ ସହିତ ଯୋଗକରି ସେମାନଙ୍କୁ ସେମାନଙ୍କ ଚତୁଃପାର୍ଶ୍ୱରେ ଘଟୁଥିବା ସାମାଜିକ-ରାଜନୈତିକ ଅବସ୍ଥା ସମ୍ପର୍କରେ ସଚେତନ କରାଇପାରିଲେ।

୧୯୪୫ ଜାନୁଆରୀ ୮ ତାରିଖରେ ଭାରତୀୟ ଗଣନାଟ୍ୟ ସଂଘର ବମ୍ବେଠାରେ ସମ୍ମିଳନୀ ଏକ ଯୁଗାନ୍ତକାରୀ ଘଟଣା । ଲୋକମାନଙ୍କର ଜୀବନ ସହିତ କଳାକୁ ସଂଯୋଗ କରିବା ଥିଲା ଏହାର ଲକ୍ଷ୍ୟ । ସାଂସ୍କୃତିକ ସନ୍ଧ୍ୟାର ମୁଖ୍ୟାଂଶ ଥିଲା ଲୋକ ନୃତ୍ୟ (ବାଲେଟ୍) ଯାହାକୁ କୁହାଯାଉଥିଲା "ଭାରତ ଆତ୍ମା" । ଏହାର ତନ୍ତୁବିନ୍ୟାସ କଥାକୁ ଗୀତ ଆକାରରେ ଭାଷ୍ୟ ହୋଇଥିଲା ଓ ରଚନା କରିଥିଲେ ପ୍ରେମ ଧବନ ଏବଂ ଏହାର ମନକୁ ଆଚ୍ଛନ୍ନ କରିବା ପରି ସ୍ୱରମାଧୁର୍ଯ୍ୟ ମୂର୍ଚ୍ଛନା ଦେଇଥିଲେ  ବିନୟ ରାୟ ଏବଂ ନୃତ୍ୟର ନିର୍ଦ୍ଦେଶନା ଦେଇଥିଲେ ଶାନ୍ତି ବର୍ଦ୍ଧନ। ଏହା ମଞ୍ଚରେ ବିଦେଶୀ ସାମ୍ରାଜ୍ୟବାଦ, ମଧ୍ୟଯୁଗୀୟ ସାମନ୍ତବାଦ ଏବଂ ଗଢ଼ିଉଠୁଥିବା ଔଦ୍ୟୋଗିକ ପୁଞ୍ଜିବାଦ ଦ୍ୱାରା ନିଷ୍ପେସିତ ଲୋକମାନଙ୍କର ଦୁର୍ଦ୍ଦଶାକୁ ଉନ୍ମୋଚନ କରିଥିଲା। ଏହି ମହାକାବ୍ୟ ନାଟକ ବ୍ୟତୀତ, ଆହୁରି ଅନେକ ଯଥା କୋଙ୍କଣି ନାଟକ ବଡ଼କଥା, ଆନ୍ଧ୍ରର ଲୋକ ରୂପ, ମହାରାଷ୍ଟ୍ରର ଗ୍ରାମାଞ୍ଚଳରେ ଆମୋଦ ପ୍ରଦାନକାରୀ ଲୋକପ୍ରିୟ ତାମସା ଗୁଜରାଟି ନାଟକ ମୃଚ୍ଛକଟିକ ଏବଂ ପିଲାମାନଙ୍କର ସଂଗୀତ ପରିବେଷଣ କରାଯାଇଥିଲା ।

ଅହମ୍ମଦ ଆବାସଙ୍କ ଦ୍ୱାରା ଲିଖିତ ହିନ୍ଦୁସ୍ଥାନୀ ନାଟକ 'ଜୁବେଦା' ଯାହାକୁ ବଳରାଜ ସାହାଣୀ ନିର୍ଦ୍ଦେଶନା ଦେଇଥିଲେ ମଧ୍ୟ ମଞ୍ଚସ୍ଥ ହୋଇଥିଲା । ଜୋଷୀ ଏହି ନାଟକ ଦ୍ୱାରା ଗଭୀରଭାବେ ପ୍ରଭାବିତ ହୋଇଥିଲେ । ସେ ଲେଖିଥିଲେ,

> "ଯଦି ଭାରତୀୟ ଗଣନାଟ୍ୟ ସଂଘ (IPTA) 'ଜୁବେଦା' ପରି ଅନ୍ୟ ନାଟକ ମଞ୍ଚସ୍ଥ କରିପାରେ, ମୁଁ ସେଥିରୁ କୌଣସି ଗୋଟିଏ ମଧ୍ୟ ନ ଦେଖି ଛାଡ଼ିବି ନାହିଁ ଏବଂ ମୁଁ ନିଶ୍ଚିତ ଯେ ସମଗ୍ର ଦେଶପ୍ରେମୀ ବମ୍ବେ ଲୋକ ଏହାକୁ ଦେଖିବାକୁ ଆସି ହଲ୍ ଭର୍ତ୍ତି କରିଦେବେ ।"[୭]

ଏହାପରେ ସେ ଏକ ଆମୋଦଦାୟକ ଘଟଣାର ସଂକ୍ଷିପ୍ତ ବିବରଣୀ ପ୍ରଦାନ କଲେ ଯାହା ଜୋଷୀ କିପରି ଜଣେ ମହାନୁଭବ ବ୍ୟକ୍ତି ଥିଲେ ତାହା ପ୍ରକାଶ କରିଥିଲା ।

ନାୟକ ଛୁଟିରେ ଫେରିଆସି ଦେଖେ 'ଜୁବେଦା' ମୃତ୍ୟୁ ମୁଖରେ, ହଇଜା ଦ୍ୱାରା

---

୭. ପିପୁଲ୍ସ ୱାର୍, ଜାନୁଆରୀ ୨୧, ୧୯୪୫ ।

ଆକ୍ରାନ୍ତ । ତା'ର ଚିତାର ଦୃଶ୍ୟ ସମସ୍ତ ଦର୍ଶକମାନଙ୍କୁ ବିହ୍ୱଳିତ କରେ ଯେତେବେଳେ କଂଗ୍ରେସ, ଲିଗ୍ ଏବଂ ଲାଲ ପତାକା ଗୋଟିକ ପରେ ଗୋଟିଏ ତା'ର ଶରୀର ଉପରେ ରଖାଯାଏ । ମୁଁ ଦେଖିଲି ମୋ ପାଖରେ ବସିଥିବା ଡକ୍ଟର ମହମୁଦ ନିଜ ଆଖିରୁ ଲୁହ ପୋଛୁଥିଲେ ଏବଂ ଯେତେବେଳେ ଇକବାଲଙ୍କର "ହିନ୍ଦୁସ୍ଥାନ ହମାରା" ଗୀତ ପରିବେଷଣ ହୋଇ ସମାପ୍ତ ହେଲା ସେ କହିଲେ,

> "ତୁମେ ଯୁବକମାନେ ଯାହା କରୁଛ ଆମେ ଆମ ସମୟରେ କରିପାରିନଥିଲୁ । ମୋର ତୁମ ପ୍ରତି ଅନେକ ଶୁଭେଚ୍ଛା । ମୁଁ ଯେତେବେଳେ ତାଙ୍କୁ କହିଲି ଆମ୍ଭେମାନେ ଏହା କରିପାରୁଛୁ ଯାହାକୁ ନେଇ ସେ ଗର୍ବ କରୁଛନ୍ତି, କାରଣ ସେ ଓ ତାଙ୍କ ପିଢ଼ିର ଲୋକମାନେ ଅତୀତରେ ଯାହା କରିଥିଲେ ସେହି ହେତୁ ଏହା ହୋଇପାରିଛି । ସେ ଏଥିରେ ଅଭିଭୂତ ହୋଇ ପଡ଼ିଲେ ।"[୮]

ଏହିପରି ଭାବରେ ଜୋଷୀ ବିଭିନ୍ନ ରାଜନୈତିକ ବ୍ୟକ୍ତି ବିଶେଷଙ୍କ ସହିତ ଆଲୋଚନା କରୁଥିଲେ ଏବଂ ସେମାନଙ୍କୁ ପ୍ରଭାବିତ କରୁଥିଲେ । ସେହିପରି ମୁଖ୍ୟ ନାଟକ ପରିବେଷଣ ଭାବେ ବିଜନ ଭଟ୍ଟାଚାର୍ଯ୍ୟଙ୍କ ଲିଖିତ ଚାରିଅଙ୍କ ନାଟକ ଭାରତୀୟ ଗଣନାଟ୍ୟ ସଂଘ ଇତିହାସରେ ଅନ୍ୟ ଏକ ମାଇଲ ଖୁଣ୍ଟ । ଏହା ଥିଲା 'ନବାନ୍ନ', ନୂତନ ଉତ୍ପାଦନ, ଯେଉଁଥିରେ ତତ୍କାଳୀନ ବଙ୍ଗଳା କୃଷକମାନଙ୍କ ଜୀବନ ଓ ସେମାନଙ୍କର ଦୁର୍ଦ୍ଦଶା, ଯେଉଁଥିରେ ବଙ୍ଗଳାର ଦୁର୍ଭିକ୍ଷ ସହିତ ବହୁଗୁଡ଼ିଏ ଚରିତ୍ର ଏବଂ ବହୁ ବ୍ୟାପକ ଦୃଶ୍ୟ ବର୍ଣ୍ଣିତ । ନାଟକଗୁଡ଼ିକ ଲେଖକ, ଅଭିନେତା, ନିର୍ଦ୍ଦେଶକ ଓ ଦର୍ଶକମାନଙ୍କର ସମ୍ମିଳିତ ପ୍ରଚେଷ୍ଟାର ଫଳ ଏବଂ ଏ ସମସ୍ତେ ମିଶି ହିଁ ନାଟକ ସୃଷ୍ଟି କରନ୍ତି ।

ଏହି ଆନ୍ଦୋଳନର ଜୀବନ ତା'ର ଯୋଗାଯୋଗ ଥିଲା ଟ୍ରେଡ୍ ୟୁନିୟନ, କୃଷକ ସଭା ଏବଂ ପ୍ରଗତିଶୀଳ ଲେଖକ ସଂଘ । ପରବର୍ତ୍ତୀ ସମୟରେ ଆନ୍ଦୋଳନର ଉଦ୍ୟୋକ୍ତାମାନଙ୍କ ମଧ୍ୟରେ ସମସ୍ତ ରାଜନୈତିକ ମତର ଲୋକ ଥିଲେ - କଂଗ୍ରେସ, କମ୍ୟୁନିଷ୍ଟ, ସମାଜବାଦୀ, ମଧ୍ୟମବାଦୀ, ଉଦାରପନ୍ଥୀ, ଶ୍ରମିକ ଓ କୃଷକ ନେତା । ଜବାହରଲାଲ ନେହେରୁ ଏହି ସଂଘକୁ ବାର୍ତ୍ତା ଦେଇ ଲେଖିଥିଲେ,

> "ମୁଁ ଭାରତର ଗଣନାଟ୍ୟର ବିକାଶରେ ବହୁତ ଆଗ୍ରହୀ । ମୁଁ ଭାବୁଛି ଏହାର ବହୁତ ବଡ଼ ଭବିଷ୍ୟତ ରହିଛି ଯଦି ଏହା ଲୋକ ଓ ସେମାନଙ୍କର ପରମ୍ପରା ଉପରେ ଆଧାରିତ ହୁଏ । ନଚେତ୍ ଏହା କେବଳ ଶୂନ୍ୟରେ ହିଁ କାର୍ଯ୍ୟ କରିବ । ମୁଁ ଆପଣଙ୍କର ପରିପତ୍ରରୁ ଜାଣିବାକୁ ପାଇଲି ଯେ ଆପଣ ଲୋକମାନଙ୍କର ଆଭିମୁଖ୍ୟ ଉପରେ ଗୁରୁତ୍ୱ ଦେଉଛନ୍ତି । ଚୀନ୍ ଓ ସ୍ପେନ୍‌ରେ ସେହିପରି ପରିବେଶ ରହିଛି, ଭାରତରେ ତଥାପି ଏହାର ଅଭାବ ଅଛି । ତଥାପି, ମୁଁ ଭାବୁଛି ଏହି ଦିଗରେ ଚେଷ୍ଟା ହେବା

---

୮. ତତ୍ରୈବ ।

ଦରକାର ଏବଂ ମୁଁ ଆଶାକରେ ଏହି କାମରେ ଆପଣଙ୍କ ସଂଘ ସଫଳ ହେଉ ।"[୯]

ଭାକ୍ରାଠାରେ ସର୍ବଭାରତୀୟ କୃଷକ ସମ୍ମିଳନୀ ହେବାପାଇଁ ପ୍ରସ୍ତୁତି ଚାଲିଥାଏ ଏବଂ ସେହି ହେତୁ ଭାରତୀୟ ଗଣନାଟ୍ୟ ସଂଘ ବିଶେଷ ଦକ୍ଷତା ଥିବା କୃଷକମାନଙ୍କୁ ଖୋଜିବାକୁ ବାଧ୍ୟ ହୋଇଥାଏ । ପନ୍ଦର ଦିନ ମଧ୍ୟରେ, ଏହା ଛଅଗୋଟି ନାଟକ ପାଇଁ ଅଭିନେତା ଓ ଲେଖକ ଯୋଗାଡ଼ କରି ପାରିଲେ ଯେଉଁଥିରୁ ତିନିଗୋଟି ଲେଖାଯାଇ ସହର ଲୋକମାନଙ୍କ ଦ୍ୱାରା ପରିବେଷିତ ହେଲା ଓ ତିନିଗୋଟି ବଡ଼ ନାଟକ ଲେଖାଯାଇ ଗାଁ ଲୋକମାନଙ୍କ ଦ୍ୱାରା ପରିବେଷଣ କରାଗଲା । ଏହି ସମ୍ମିଳିତ ପ୍ରଚେଷ୍ଟା ସମସ୍ତ ଲୋକମାନଙ୍କୁ ଏକାଠି କରିବାରେ ସକ୍ଷମ ହେଲା ।

ସଂସ୍କୃତି ସମ୍ପର୍କରେ ଜୋଷୀଙ୍କର ଦୃଷ୍ଟିଭଙ୍ଗୀ ଅତୀତକୁ ପ୍ରତ୍ୟାଖ୍ୟାନ କରିନଥିଲା ବରଂ ଏହା ଥିଲା ଲୋକମାନଙ୍କର ସାମ୍ପ୍ରତିକ ସମସ୍ୟା ସହିତ ଏହାର ମିଶ୍ରଣ । ସେ ଯୁବକମାନଙ୍କୁ ଲୋକମାନଙ୍କ ଦ୍ୱାରା ଗଠିତ ଇତିହାସ, ସଂସ୍କୃତି ଓ ପରମ୍ପରାକୁ ଏବଂ ତାହାକୁ ନିପୀଡ଼ିତ ଜନଗଣଙ୍କ ସମସ୍ୟା ଓ ଘଟଣା ସହିତ ଯୋଡ଼ିବାକୁ ଶିକ୍ଷା ଦେଇଥିଲେ । ତାଙ୍କର ଲୋକ ସଂସ୍କୃତି, ଲୋକଗୀତ ଏବଂ ଲୋକକଳା ପ୍ରତି ଆଗ୍ରହ ସାଧାରଣ ଲୋକମାନଙ୍କ ପ୍ରତି ଅନୁରାଗରୁ ଜାତ ହୋଇଥିଲା । ଇତିହାସର ପ୍ରବାହମାନ ଧାରାରେ ରହି ସେ ସମସ୍ତ ସାଥୀମାନଙ୍କୁ ଉତ୍ସାହ ପ୍ରଦାନ କରୁଥିଲେ । ଯଦି ଜୋଷୀଙ୍କର ବ୍ୟାପକ ଦୃଷ୍ଟିକୋଣ ଓ ଭାବନା ସମ୍ପର୍କରେ ବୁଝାଯାଏ, ତେବେ ଏହା ପରିଷ୍କାର ଯେ ଭାରତୀୟ ଗଣନାଟ୍ୟ ସଂଘର ମୂଳଦୁଆ ଏବଂ ସେହି ସମୟରେ କମ୍ୟୁନିଷ୍ଟ ପାର୍ଟିର ପ୍ରଥମ କଂଗ୍ରେସ ଅନୁଷ୍ଠିତ କରିବା ଆକସ୍ମିକ ସଂଘଟନ ନ ଥିଲା - ବରଂ ଗୋଟିଏ ଅନ୍ୟର ପରିପୂରକ ହୋଇଥିଲା । ଦେଶ ତମାମରୁ ବହୁଲୋକ ପାର୍ଟି କଂଗ୍ରେସରେ ଯୋଗ ଦେଇଥିଲେ । ପି.ସି. ଜୋଷୀ ତାଙ୍କର ରାଜନୈତିକ ଓ ସାଂଗଠନିକ ବିବରଣୀ ଉପସ୍ଥାପିତ କରିଥିଲେ । ଏହା ଥିଲା ଯୁଦ୍ଧର ସମୟ, ଫାସିବାଦର ଭୟ ପଶ୍ଚିମ ଓ ପୂର୍ବ ଉଭୟ ଦିଗରୁ ଛାଇ ହୋଇ ରହିଥିଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତୀୟ ଜାତୀୟ କଂଗ୍ରେସ 'କର ବା ମର' ଆହ୍ୱାନରେ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ କରିଥିଲେ । ପାର୍ଟିର ସ୍ଥିତି ଥିଲା ଭିନ୍ନ । ପାର୍ଟି ଏହି ଆନ୍ଦୋଳନରେ ଯୋଗ ଦେଇନଥିଲା କାରଣ ସୋଭିଏତ୍ ୟୁନିୟନ ଉପରେ ନାଜି ଆକ୍ରମଣ କରିବା ପରେ ପାର୍ଟି ଏହାକୁ ଲୋକମାନଙ୍କ ବିରୁଦ୍ଧରେ ଯୁଦ୍ଧ ବୋଲି ବିଚାର କରିଥିଲା । ସେହି ହେତୁ ପରିସ୍ଥିତି ଥିଲା ଅତ୍ୟନ୍ତ ଜଟିଳ ଏବଂ ସାଧାରଣ ସମ୍ପାଦକଙ୍କ ସମ୍ମୁଖରେ ଥିଲା ବିରାଟ ଆହ୍ୱାନ । ପାର୍ଟିର ତତ୍କାଳିକ କାର୍ଯ୍ୟ ଥିଲା ଲୋକମାନଙ୍କୁ ଶିକ୍ଷାଦେବା ଏବଂ ସେମାନଙ୍କୁ ଜଟିଳ ପରିସ୍ଥିତି ସମ୍ପର୍କରେ ରାଜନୈତିକ ଭାବେ ସଚେତନ କରାଇବା । ସେହି ସମୟରେ ଜୋଷୀ ଲୋକପ୍ରିୟତାର ଶୀର୍ଷ ସ୍ଥାନରେ ଥିଲେ । ସେ ନିଜକୁ ଜଣେ ମହାନ୍ ସଂଗଠକ ଭାବେ ପ୍ରମାଣିତ କରିଥିଲେ ଏବଂ ବହୁଗୁଡ଼ିଏ

---

୯. ଇଣ୍ଡିଆନ୍ ପିପୁଲ୍ସ ଥିଏଟର ଆସୋସିଏସନ୍, ବୁଲେଟିନ୍ ନଂ ୧, ଜୁଲାଇ ୧୯୪୩, ବମ୍ବେ, ପୃଷ୍ଠା-୧୪ ।

ଗଣ ସଂଗଠନ କରିଥିଲେ । ଯଦିଓ ରାଜନୈତିକ ଭାବେ କମ୍ୟୁନିଷ୍ଟମାନେ ଭାରତଛାଡ଼ ଆନ୍ଦୋଳନରେ ଯୋଗ ନ ଦେଇ ଜାତୀୟ ମହାସ୍ରୋତରୁ ଅଲଗା ହୋଇ ରହିବାର ଦୁର୍ଦ୍ଦଶା ଭୋଗ କରୁଥିଲେ, ଯୋଷୀ ବହୁ ସଂଖ୍ୟକ ଲେଖକ ଓ କଳାକାରମାନଙ୍କୁ ପାର୍ଟି ଭିତରକୁ କିମ୍ବା ପାର୍ଟିର ନିକଟତର କରାଇବାରେ ସଫଳ ହୋଇଥିଲେ ଏପରିକି ସେହି ଜଟିଳ ସମୟରେ ସେ ସେମାନଙ୍କୁ ପାର୍ଟିର ରାଜନୈତିକ ସ୍ଥିତି ସମ୍ପର୍କରେ ବୁଝାଇପାରିଥିଲେ । ଭୋଲଗାଠାରୁ ଗଙ୍ଗାର ପ୍ରସିଦ୍ଧ ଲେଖକ ମହାନ୍ ବୌଦ୍ଧଧର୍ମ ଗବେଷକ ରାହୁଳ ସାଂସ୍କୃତାୟନ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇଥିଲେ ଏବଂ ପାର୍ଟି ମୁଖ୍ୟ କାର୍ଯ୍ୟାଳୟରେ କିଛିଦିନ ରହିଥିଲେ । କେରଳର କବି ଭାଲାଥୋଲ, ହାଇଦ୍ରାବାଦର ମକଦୁମ୍ ମୋହି ଉଦ୍ଦିନ୍, ବଙ୍ଗଳାର ବିଷ୍ଣୁଦେବ ଓ ବିନୟ, ସଚ୍ଚିନ ଶଙ୍କର, ପ୍ରେମ ଧବନ, କଇଫି ଆଜ୍‌ମି, ଅଲ୍ଲି ସରଦାର ଜାଫ୍ରି, ସଜ୍ଜାଦ ଜହିର, ଚିଉପ୍ରୋସାଦ ଇତ୍ୟାଦି କେତେକ ସମ୍ପନ୍ନକାରୀ ବ୍ୟକ୍ତିତ୍ୱଙ୍କର ଲୋକମାନଙ୍କର ସେବା କରିବା ଥିଲା ସେମାନଙ୍କ ଉଦ୍ଦେଶ୍ୟ, ଯେହେତୁ ସେମାନେ ପାର୍ଟିର ରାଜନୈତିକ ମାର୍ଗର ସଠିକତା ସମ୍ପର୍କରେ ହୃଦୟଙ୍ଗମ କରିଥିଲେ ।

ଜଟିଳ ରାଜନୈତିକ ପରିସ୍ଥିତି ଥିବା ସତ୍ତ୍ୱେ, ପାର୍ଟି ଚାରିଆଡ଼େ ଗୋଟିଏ ସଶକ୍ତ ସୃଜନଶୀଳ ରାଜନୈତିକ ଶକ୍ତି ଭାବରେ ବୃଦ୍ଧି ପାଉଥିଲା । ୧୯୪୩ ମାର୍ଚ୍ଚ ସୁଦ୍ଧା ସଭ୍ୟସଂଖ୍ୟା ଦୁଇଗୁଣ ହୋଇଗଲା - ୯୨୧୯ ପୂର୍ଣ୍ଣ ସଭ୍ୟ ଏବଂ ୮୮୧୬ ସହାୟକ ବା ପ୍ରାର୍ଥୀ ସଭ୍ୟ, ଏହି ପୂର୍ଣ୍ଣ ସଭ୍ୟମାନଙ୍କ ମଧ୍ୟରୁ ୨୦୦୦ ଥିଲେ ପାର୍ଟିର ସଦାବେଳିଆ କର୍ମୀ । ସିପିଆଇ ସହବନ୍ଧିତ ଟ୍ରେଡ୍ ୟୁନିୟନମାନଙ୍କରେ ୧, ୯୭, ୬୨୯ ଶ୍ରମିକ, ୨,୮୧,୧୦୯ କୃଷକ କୃଷକସଭାରେ, ୨୫,୮୨୨ ମହିଳା ସଂଗମ (ଆନ୍ଧ୍ର ପ୍ରଦେଶ) କିମ୍ବା ମହିଳା ଆତ୍ମରକ୍ଷା ସମିତି, ବଙ୍ଗଳା, ୬୪୦୦ ଶିଶୁ ୧୯୦ ବାଳ ସଂଘରେ ଥିଲେ । 'ପିପୁଲ୍ସ ୱାର୍'ର ବିକ୍ରି ୧୨୪ ପ୍ରତିଶତ ବୃଦ୍ଧି ପାଇଥିଲା। ଏହା ପାଞ୍ଚଗୋଟି ଭାଷାରେ ପ୍ରକାଶିତ ହେଉଥିଲା । ଏହା ବ୍ୟତୀତ ୬ ଗୋଟି ପ୍ରାଦେଶିକ ଭାଷାରେ ପ୍ରକାଶ ପାଉଥିଲା । ୧୧ଟି ଭାଷାରେ ପାର୍ଟି ମୁଖପତ୍ର ୬୫,୦୦୦ କପି ପ୍ରକାଶ ପାଇଥିଲା, ୨୬ ପ୍ରଚାରପତ୍ର ପ୍ରକାଶିତ ହୋଇ ୪୨,୫୦୦ କପି ଛପା ଯାଇଥିଲା ଏବଂ ସେଥିରୁ ୯୨.୫ ପ୍ରତିଶତ ବିକ୍ରି ହୋଇଯାଇଥିଲା ।[୧୦] ଏହି ସବୁଥିରୁ ବୁଝାପଡୁଥିଲା ଯେ ଭାରତୀୟ ଲୋକମାନେ ପାର୍ଟିର ନୀତିକୁ ଗ୍ରହଣ କରିଥିଲେ ଏବଂ ଆହୁରି ମଧ୍ୟ ପାର୍ଟି ସାଥୀମାନେ ସବୁଠାରୁ ଉତ୍ତମ ଦେଶପ୍ରେମୀ ସଂଗଠକ ଭାବରେ ଲୋକମାନଙ୍କର କ୍ରମାଗତ ଶ୍ରଦ୍ଧାଭାଜନ ହେଉଥିଲେ।

ପ୍ରଥମ ପାର୍ଟି କଂଗ୍ରେସ ମଧ୍ୟ ଏକ ମହାନ୍ ସାଂସ୍କୃତିକ ଘଟଣା ହୋଇଥିଲା । ବିଭିନ୍ନ ପ୍ରଦେଶରୁ ସାଂସ୍କୃତିକ ଗୋଷ୍ଠୀମାନେ ନିଜ ନିଜର ସ୍ୱତନ୍ତ୍ର ପରିଚୟରେ ଆସି ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରିଥିଲେ ଏବଂ ଉତ୍ସବର ବାତାବରଣ ସୃଷ୍ଟି କରିଥିଲେ । ୧୯୩୬ ମସିହାରେ ଯୋଷୀ ପାର୍ଟିର ସାଧାରଣ ସମ୍ପାଦକ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ ଏବଂ ୧୯୪୩ ବେଳକୁ ସେ ସିପିଆଇକୁ ଜାତୀୟ ରାଜନୈତିକ ସଂଗଠନ ଭାବରେ ଠିଆ କରାଇ ପାରିଥିଲେ।

---

୧୦. ପିପୁଲ୍ସ ୱାର୍, ମାର୍ଚ୍ଚ ୭, ୧୯୪୩ ।

ଏଥିରେ କାହାର ଦ୍ୱିମତ ନାହିଁ ଯେ ଜୋଷୀ ସି.ପି.ଆଇ.କୁ ଏକ ଗଣ ରାଜନୈତିକ ପାର୍ଟି ଭାବେ ଠିଆ କରାଇ ଅତ୍ୟନ୍ତ କଠିନ ଯୁଦ୍ଧକାଳୀନ ଘଟଣା ପ୍ରବାହ ମଧ୍ୟରେ ପରିଚାଳିତ କରିଥିଲେ। ସେ ପାର୍ଟିକୁ ରିଲିଫ୍ ଓ ପୁନର୍ବାସ କାର୍ଯ୍ୟରେ ସମ୍ପୃକ୍ତ କରି ରାଜନୈତିକ ଏକାକୀତ୍ୱକୁ ଭାଙ୍ଗି ଦେଇ ପାରିଥିଲେ, ରାସ୍ତା ନିର୍ମାଣ ଓ ଜଳସେଚନର ବ୍ୟବସ୍ଥା କରିଥିଲେ, କାରିଗରଙ୍କ ପାଇଁ ସମବାୟ ଗଠନ କରିଥିଲେ ଓ ଖାଦ୍ୟ ବିତରଣ ପାଇଁ ପ୍ରଚାର କରିଥିଲେ । ଯଦି ତାଙ୍କର ଜାତୀୟ ଦୃଷ୍ଟିଭଙ୍ଗୀ ନ ଥାନ୍ତା, ତେବେ ଜୋଷୀ ଓ ତାଙ୍କର ନେତୃତ୍ୱ ଦ୍ୱାରା ଏହା କେବେ ସମ୍ଭବ ହୋଇପାରି ନ ଥାନ୍ତା ।

> "ଲୋକମାନଙ୍କୁ ତାଙ୍କ ନିକଟକୁ ଆକର୍ଷିତ କରିବାରେ ତାଙ୍କର ଆଶ୍ଚର୍ଯ୍ୟଜନକ ଦକ୍ଷତା ଥିଲା । ସେ ସେମାନଙ୍କୁ ପାର୍ଟି କାମରେ ନିୟୋଜିତ କରୁଥିଲେ । ସେଇଥିପାଇଁ ସେ ସମୟର ବୁଦ୍ଧିଜୀବୀ, କବି, ଲେଖକ, ଚିତ୍ରକାର ଏବଂ କଳାକାରମାନେ ପାର୍ଟିର ନିକଟତମ ହୋଇଥିଲେ। ଆମେ ସେହି ସମୟରେ ପିପୁଲ୍ସ ୱାର୍ ସହିତ ସଂଶ୍ଳିଷ୍ଟ ହୋଇ ଅମାପ ଶକ୍ତି ହାସଲ କରିଥିଲୁ। ଯେତେବେଳେ ଆମେ ସ୍ୱାଧୀନତା ପାଇଁ ଜାତୀୟ ମୁକ୍ତି ସଂଗ୍ରାମରୁ ପ୍ରାୟତଃ ଅଲଗା ହୋଇ ଯାଇଥିଲୁ ।"

ଜଣେ ସାଥୀ କିମ୍ବା ସମର୍ଥକ କି ପ୍ରକାର କାର୍ଯ୍ୟ କରିବାକୁ ସମର୍ଥ ହେବେ ଜୋଷୀ ତାହାକୁ ନିର୍ଦ୍ଧାରଣ କରିବା ଓ ମୂଲ୍ୟାଙ୍କନ କରିବାର ବିଶେଷ ଦକ୍ଷତା ରଖିଥିଲେ । ସେ ପ୍ରତ୍ୟେକଙ୍କର ବିଶେଷ ପ୍ରତିଭାକୁ କାର୍ଯ୍ୟରେ ବିନିଯୋଗ କରୁଥିଲେ ଏବଂ ସେମାନଙ୍କୁ ପାର୍ଟି କାର୍ଯ୍ୟରେ ନିୟୋଜିତ କରୁଥିଲେ । ଦେଶର ବିଭିନ୍ନ ପ୍ରାନ୍ତରରୁ ଜୋଷୀ କିପରି ପ୍ରତିଭାସମ୍ପନ୍ନ, ତରୁଣମାନଙ୍କୁ ଚିହ୍ନିତ କରୁଥିଲେ, ତାହା ଜାଣିବାକୁ ଉତ୍ସୁକ ଲାଗେ । ଚିତ୍ତପ୍ରୋସାଦ ଯେ କି ଜଣେ ଉଦୀୟମାନ ଶିଳ୍ପୀ ଥିଲେ ଯୁଦ୍ଧ ସମୟରେ ଚିଟାଗଙ୍ଗଠାରେ ପାର୍ଟି ସାଥୀମାନେ ତାଙ୍କୁ ଠାବ କଲେ । ଚିତ୍ତଙ୍କର ପାର୍ଟି ସହିତ କୌଣସି ଯୋଗାଯୋଗ କିମ୍ବା ସମ୍ପର୍କ ନଥିଲା । ସେ ପୋଷ୍ଟର ଆଙ୍କୁଥିଲେ ଏବଂ ବନ୍ଦର ସହରର ବିଭିନ୍ନ ଛକ ଜାଗାମାନଙ୍କରେ ତାହାକୁ ଲଗାଉଥିଲେ । ଭବାନୀ ସେନ୍, ବଙ୍ଗଳା ପାର୍ଟିର ସମ୍ପାଦକ ତାଙ୍କ ଅଙ୍କିତ ପୋଷ୍ଟରର ବିଡ଼ାଏ ପାଇଲେ ଯାହା ବିଷୟ ଓ ଶୈଳୀ ଦୃଷ୍ଟିରୁ କିଛି ନୂତନତା ଥିଲା । ସେ ବମ୍ବେରେ ଥିବା ପି.ସି. ଜୋଷୀଙ୍କ ନିକଟକୁ ସେଗୁଡ଼ିକୁ ପଠାଇଲେ। ତତ୍‌କ୍ଷଣାତ୍ ନିର୍ଦ୍ଦେଶ ଆସି ପହଞ୍ଚିଗଲା - "ଚିତ୍ତକୁ ଧର ଓ ତାକୁ ବମ୍ବେ ତୁରନ୍ତ ପଠାଅ।"[୧୧] ସେ ପହଞ୍ଚିବା ପୂର୍ବରୁ ଗୋବିନ୍ଦ ବିଦ୍ୟାର୍ଥୀଙ୍କୁ ସେହି ପୋଷ୍ଟରଗୁଡ଼ିକ ପାର୍ଟି ମୁଖ୍ୟ କାର୍ଯ୍ୟାଳୟର ଝରକା ରେଲିଂରେ ପ୍ରଦର୍ଶନ କରିବାକୁ କୁହାଗଲା । ବିଜୟୱାଡ଼ାଠାରେ କୃଷକ ସମ୍ମିଳନୀ ହେବାର କିଛି ସମୟ ପୂର୍ବରୁ ଚିତ୍ତ ବମ୍ବେରେ ଆସି ପହଞ୍ଚିଲେ । ସେହି ସମୟରେ ଅନ୍ୟ ଜଣେ ପ୍ରତିଭା ସୁନିଲ ଜାଣହା, ଯେ କି ଫଟୋଗ୍ରାଫର ଥିଲେ, କଲିକତାରେ ତାଙ୍କୁ ଆବିଷ୍କାର କରାଗଲା ଏବଂ ବମ୍ବେକୁ ପଠାଗଲା । ଚିତ୍ତଙ୍କର ରେଖାଚିତ୍ର ଓ ଲାଇନ୍ କଟ୍ ଏବଂ ସୁନିଲଙ୍କର ଫଟୋଗ୍ରାଫ୍‌ର

---

୧୧. ଗଣେଶ ଶୁକ୍ଳା, ଅନ୍ ପବ୍ଲିସ୍‌ଡ଼ ମ୍ୟାନୁସ୍କ୍ରିପ୍ଟ, "ସିପିଆଇ, ଆନ୍ ଇନ୍ ସାଇଡ଼ର'ସ ଭିଉ", ପୃଷ୍ଠା-୨୦୭ ।

ମିଶ୍ରଣ ଥିଲା ଅତୀବ ଚମତ୍କାର । ବଙ୍ଗଳା ଦୁର୍ଭିକ୍ଷର ରେଖାଚିତ୍ର ଓ ପୋଷ୍ଟର ଏବଂ କୃଷକ, ଶ୍ରମିକ ଓ ମହିଳାମାନଙ୍କର ଫଟୋଗ୍ରାଫ୍ ପିପୁଲ୍ସ ୱାର ଏବଂ ପିପୁଲ୍ସ ଏଜ୍ ପାଇଁ ମୂଲ୍ୟବାନ ସମ୍ପତ୍ତି ହେଲା । ତାହା ଥିଲା କମ୍ୟୁନିଷ୍ଟ ଆନ୍ଦୋଳନର ସୁବର୍ଣ୍ଣ ଯୁଗ ଯଦିଓ ପାର୍ଟି ବାହାରେ ବହୁଲୋକ ଅନୁଭବ କରୁଥିଲେ ଯେ ଏହାର ରାଜନୈତିକ ମାର୍ଗ ଜାତୀୟତା ବିରୋଧୀ ଏବଂ ପାର୍ଟି ମଧ୍ୟରେ, ଏଥିପାଇଁ କେତେକ ଯୋଷୀଙ୍କୁ ସାମାଜିକ ସଂସ୍କାରବାଦୀ କହି କାନକୁହା ପ୍ରଚାର ଚଳାଇଲେ। ତଥାପି ଅଧିକାଂଶ ସାଥୀଙ୍କ ପାଇଁ ସେ ଥିଲେ ମାର୍ଗଦର୍ଶକ ।

କାୟୁରର ସହିଦମାନେ ଫାଶୀ ଖୁଣ୍ଟରେ ଝୁଲି ମରିବା ପୂର୍ବରୁ ସେମାନଙ୍କର ନେତା ପି.ସି.ଯୋଷୀଙ୍କୁ ଦେଖିବାର ଇଚ୍ଛା ସାମାନ୍ୟ ଘଟଣା ନୁହେଁ । ମାର୍ଚ୍ଚ ୨୩, ୧୯୪୩ ମସିହାରେ ମାଲବାରର କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିବା ୪ଜଣ ଯୁବକ କୃଷକ ଯେଉଁମାନଙ୍କର ବୟସ ୨୦ବର୍ଷ ମଧ୍ୟରେ ସେମାନଙ୍କୁ କାନାନୋର ଜେଲ ମଧ୍ୟରେ ଫାଶୀ ଦିଆଯାଇଥିଲା । ସେହି ମକଦ୍ଦମାର ପୃଷ୍ଠଭୂମୀ ନିମ୍ନ ପ୍ରକାରରେ । ତିରିଶ ଦଶକର କମ୍ୟୁନିଷ୍ଟମାନେ ଯେଉଁମାନେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ମଧ୍ୟରେ କାର୍ଯ୍ୟ କରୁଥିଲେ ଜମିଦାରଙ୍କ ବିରୁଦ୍ଧରେ ଦୁର୍ଦ୍ଧର୍ଷ କୃଷକ ଆନ୍ଦୋଳନ ଆରମ୍ଭ କଲେ । ଯୁଦ୍ଧ ଆରମ୍ଭ ହୋଇଯିବା ମାତ୍ରେ କୃଷକ ମାନଙ୍କ ଉପରେ ବ୍ରିଟିଶ୍‌ର ଦମନ ଲୀଳା ଆରମ୍ଭ ହୋଇଗଲା । ମାର୍ଚ୍ଚ ୨୮, ୧୯୪୧ ମସିହାରେ କୃଷକ ସଭାର ଗୋଟିଏ ଶୋଭାଯାତ୍ରା କାୟୁର ଗ୍ରାମ ଉପରେ ପୁଲିସର ଆକ୍ରମଣ ବିରୋଧରେ ସଂଗଠିତ କରାଯାଇଥିଲା। ଗୋଟିଏ ପୁଲିସ ସିପାହୀ ଜଣେ ମୁସଲମାନ ସମ୍ପ୍ରଦାୟର କୃଷକ ମହିଳାଙ୍କୁ ଅଭଦ୍ର ଆଚରଣ କଲା ଏବଂ ତାହା ଫଳରେ ସେଠାରେ ସଂଘର୍ଷ ହେଲା ଯେଉଁଥିରେ ପୁଲିସ ସିପାହୀ ମୃତ୍ୟୁବରଣ କଲା । ୬୦ଜଣ ବ୍ୟକ୍ତି ବିଚାରର ସମ୍ମୁଖୀନ ହେଲେ ଏବଂ ଶେଷରେ ଚାରିଜଣ ତରୁଣ କୁହ୍ନାମ୍ବୁ, ଚିରୁ କନ୍ଦନ, ଆପୁ ଏବଂ ଆବୁବେକରଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା । ଯେହେତୁ ସେମାନେ ଫାଶୀ ଖୁଣ୍ଟରେ ଚଢ଼ିବା ପୂର୍ବରୁ ସେମାନଙ୍କର ନେତା ପି.ସି. ଯୋଷୀଙ୍କୁ ସାକ୍ଷାତ କରିବାକୁ ଚାହିଁଲେ, ଯୋଷୀ କେରଳ ଗଲେ ଏବଂ କାୟୁର ବୀରମାନଙ୍କୁ ଓ ସେମାନଙ୍କର ମାତାଙ୍କୁ ସାକ୍ଷାତ କଲେ। ଯୋଷୀ ଏହି ତରୁଣ ସାଥୀମାନଙ୍କର ଅମାପ ବୀରତ୍ୱ ଓ ତ୍ୟାଗ ଦେଖି ଅଭିଭୂତ ହୋଇଗଲେ ଏବଂ ପାର୍ଟି ମୁଖପତ୍ର ପିପୁଲ୍ସ ୱାର୍‌ରେ ୧୧ ଏପ୍ରିଲ ୧୯୪୩ ମସିହାରେ ଏକ ଅସାଧାରଣ ଅଗ୍ରଲେଖ ଲେଖିଥିଲେ ।

## କାୟୁର ବୀରଙ୍କ ଫାଶୀଦଣ୍ଡରେ ମାନବତାର ଫୁଲସବୁ କେବେହେଲେ ମଉଳି ଯିବେନାହିଁ

...ସେମାନେ ଇଂରାଜୀ କିମ୍ବା ହିନ୍ଦୀ ବୁଝିପାରୁ ନଥିଲେ ଏବଂ ମୁଁ ମାଲାୟଲମ କହିପାରୁ ନ ଥିଲି । ଜେଲ ରକ୍ଷକଙ୍କ ଅନୁମତି କ୍ରମେ ପି.କ୍ରିଷ୍ଣ ପିଲାଇ ବାକ୍ୟପରେ ବାକ୍ୟ ମୋତେ ଅନୁବାଦ କରି କହୁଥିଲେ । ମୋ ଗାଲ ଉପରେ ବହି ଚାଲିଥିବା ଲୋତକଧାର ମୋ ମୁହଁରୁ ଶବ୍ଦ

ବାହାର କରିବାକୁ ସକ୍ଷମ କରି ପାରିଥିଲା ନଚେତ୍ ମୁଁ ବାକ୍‌ରୁଦ୍ଧ ହୋଇଯାଇ ପୂରାପୂରି ଭାଙ୍ଗି ପଡ଼ିଥାନ୍ତି । ପାର୍ଟି ପକ୍ଷରୁ ମୁଁ ଯାହା ସେମାନଙ୍କୁ କହିଲି ତା'ର ସାରାଂଶ ଏହିପରି ।

ପାର୍ଟି ତୁମ ଚାରିଜଣଙ୍କ ପାଇଁ ଗର୍ବିତ । ତୁମେମାନେ ଆମ ନିକଟକୁ ଆସିଥିଲ ଯେତେବେଳେ ଆମେ ସାମାନ୍ୟ ମାତ୍ର କେତେକ ଶହରେ ଥିଲୁ । ବର୍ତ୍ତମାନ ଆମର ୯୦୦୦ରୁ ଅଧିକ ପାର୍ଟି-ସଭ୍ୟ ଓ ୮୦୦୦ ପ୍ରାର୍ଥୀ ସଭ୍ୟ, ଆମେ ସମସ୍ତ ୧୭,୦୦୦ ସଭ୍ୟ ତୁମ ନିକଟରେ ପ୍ରତିଜ୍ଞା କରୁଛୁ ଯେ, ଯେଉଁ ପତାକାକୁ ତୁମେ ଅତ୍ୟନ୍ତ ମୂଲ୍ୟଦେଇ ଧରି ରଖିଥିଲ ଏବଂ ବୀରତ୍ୱର ସହିତ ଯୁଦ୍ଧରେ ସଂଗ୍ରାମ କରିଥିଲ, ସେହି ପତାକାକୁ ଆମେ ଟେକି ରଖିବୁ ।

ତୁମେ ଏକ ମରଣଜୟୀ କାରଣ ପାଇଁ, ସ୍ୱାଧୀନତା ପାଇଁ, ରାଷ୍ଟ୍ରର ସମୃଦ୍ଧି ପାଇଁ ଏବଂ ସମୁଦାୟ ବିଶ୍ୱ ପାଇଁ ମୃତ୍ୟୁଲାଭ କରୁଛ । ଆମର କାର୍ଯ୍ୟ ହେଉଛି ନ୍ୟାୟ ପାଇଁ, ଏହା ନିଶ୍ଚୟ କୃତକାର୍ଯ୍ୟ ହେବ ଏବଂ ତୁମେମାନେ ତୁମର ଜୀବନ ସମର୍ପଣ କରୁଛ ଏଇଥିପାଇଁ ଯେ ତାହା ଯେପରି ବିଜୟୀ ହୁଏ । ଆମେ ଜାଣୁ, ତୁମେ ତୁମର ସ୍ୱପ୍ନକୁ ସାକାର କରୁଛ, ମୃତ୍ୟୁଲାଭ କରୁନାହଁ ।

ତୁମେ, ଆମର ପ୍ରିୟତମ ଚାରିଜଣ, ଆମ ପାର୍ଟି ତୁମକୁ ହରାଉଛି । କିନ୍ତୁ ତୁମର କାର୍ଯ୍ୟ ଓ ତୁମପରି ସାଥୀମାନଙ୍କର ଉଦାହରଣ ଯୋଗୁଁ ପାର୍ଟି ଯାହା ହେବାର କଥା ତାହା ହୋଇପାରିଛି । ତୁମେ ଯେତେବେଳେ ମାଲବାରଠାରେ ପାର୍ଟିରେ ଯୋଗଦେଲ, ସେତେବେଳେ ଗୋଟିଏ ଦେଶପ୍ରେମୀ ଗୋଷ୍ଠୀ ଥିଲ । ବର୍ତ୍ତମାନ ଆମେ ତୁମ ପ୍ରଦେଶର ମୁଖ୍ୟ ଏକ ରାଜନୈତିକ ଦଳ । ସମଗ୍ର ଦେଶରୁ ସବୁଠାରୁ ଉତ୍ତମ ମଣିଷମାନେ ଆମ ପାର୍ଟିରେ ଯୋଗ ଦେଉଛନ୍ତି । ଯେଉଁଠି ଯେଉଁଠି ପାର୍ଟି ଜଣାଶୁଣା, ତୁମର ନାମସବୁ ଶ୍ରଦ୍ଧା ଓ ସମ୍ମାନର ସହିତ ଉଚ୍ଚାରଣ ହେଉଛି । ଦେଶପ୍ରେମୀ ଯୁବ ପୁରୁଷ ଓ ମହିଳାମାନେ ପାର୍ଟିରେ ଯୋଗଦେବାକୁ ସମ୍ମାନ ବୋଲି ବିଚାର କରୁଛନ୍ତି କାରଣ ଏହା ତୁମ ପରି ସହିଦମାନଙ୍କୁ ଜନ୍ମ ଦେଉଛି ।

ପାର୍ଟି ଚାରିଜଣଙ୍କୁ ହରାଉଛି, କିନ୍ତୁ ଚାରିଜଣ ସହିଦ ପାଇବାର ଗୌରବ ପାଉଛି । ସେମାନେ ତୁମ ଚାରିଜଣଙ୍କୁ ଫାଶୀଖୁଣ୍ଟକୁ ପଠାନ୍ତୁ ଯାହାକୁ ଆମେ ବର୍ତ୍ତମାନ ବନ୍ଦ କରି ପାରିବୁ ନାହିଁ । କିନ୍ତୁ ତୁମ ଚାରିଜଣଙ୍କ ଦ୍ୱାରା ଅନୁପ୍ରାଣୀତ ହୋଇ, ଆମେ ଚାରିଶହ, ଚାରିହଜାର-ନୂତନ ପାର୍ଟି ସଭ୍ୟ ପାଇବୁ ।

ଏହାକୁ ପାର୍ଟି ପ୍ରତିରୋଧ କରିପାରିବ ନାହିଁ; ଏଥିପାଇଁ ଆମେ କାର୍ଯ୍ୟ କରିବୁ ଏବଂ ସାଥୀମାନେ, ଆମେ ନିର୍ଭୟ ପ୍ରତିଶ୍ରୁତି ଦେଉଛୁ ଯେ ଆମ୍ଭେମାନେ ବିଜୟୀ ହେବୁ । ଯେହେତୁ ଆମର ଉଦ୍ଦେଶ୍ୟ ଅମର, ଠିକ୍ ସେହିପରି ତାହାର ଅସ୍ତ୍ର, ଆମର ପାର୍ଟି । ଉତ୍ପୀଡ଼ନ ଆମକୁ ଦୁର୍ବଳ କରିନାହିଁ ବରଂ ଆମକୁ ଅଧିକ ଶକ୍ତିଶାଳୀ କରିଛି । ତୁମ୍ଭମାନଙ୍କର ସହିଦ ହେବା କେବଳ ଗୌରବ ଆଣିନାହିଁ ବରଂ ପାର୍ଟିକୁ ଶକ୍ତି ଦେଇଛି । କେହିହେଲେ କମ୍ୟୁନିଷ୍ଟ ଏହାଠାରୁ ଉତ୍କୃଷ୍ଟ କିଛି ଆଶାକରି ପାରିବ ନାହିଁ ।

ତୁମ ପରିବାର ତୁମମାନଙ୍କୁ ହରାଇଛନ୍ତି, ଏହା ଆମେ ଜାଣୁ । ତୁମେ ଯେତେବେଳେ

ପାର୍ଟିରେ ଯୋଗ ଦେଇ, ତୁମେ ଲୋକମାନଙ୍କୁ ତୁମର ପିତାମାତା ଭାବେ ଗ୍ରହଣ କଲ ଏବଂ ଦେଖିବାକୁ ଇଚ୍ଛାକଲ ଯେ କେହି ଭାରତୀୟ ପିତା ବା ମାତା ତୁମ କାର୍ଯ୍ୟ ପାଇଁ କଷ୍ଟ ନ ଭୋଗନ୍ତୁ...। ସାଥୀମାନେ, ତୁମ୍ଭେମାନେ ନିଶ୍ଚିତ ରୁହ ଆମ୍ଭେ, ସମସ୍ତ ସତର ହଜାର ଜଣ ତୁମର ପରିବାରକୁ ଆମ ପରିବାର ପରି ଦେଖିବୁ । ଆମ୍ଭେମାନେ ଯାହା କିଛି କରିପାରିବାର କଥା କରିବୁ ଯେପରି ତୁମମାନଙ୍କର ପିତାମାତାମାନେ ଅନୁଭବ କରିବେ ଯେ ପାର୍ଟି ହେଉଛି ସେମାନଙ୍କର ପରିବାର, ସମସ୍ତ ପାର୍ଟି ସଭ୍ୟ ସେମାନଙ୍କର ପୁତ୍ର ।

"ତୁମ୍ଭମାନଙ୍କୁ ଦେଖିବାର ସୁଯୋଗ ପାଇଥିବାରୁ, ଆଜି ଦିନଟି ମୋ ଜୀବନର ସବୁଠାରୁ ମହତ୍ତମ ଦିନ ଏବଂ ପାର୍ଟି ନିକଟରୁ ତୁମ୍ଭମାନଙ୍କ ପାଇଁ ଶୁଭେଚ୍ଛା ଆଣିଛି ଯାହାକୁ ତୁମେ ଜୀବନଠାରୁ ଅଧିକ ଭଲ ପାଉଛ । ମୁଁ ଏଠାରୁ ତୁମ୍ଭମାନଙ୍କର ଗ୍ରାମକୁ ଯାଉଛି ଏବଂ ତୁମମାନଙ୍କର ପରିବାରକୁ ଭେଟିବି । ସେମାନଙ୍କ ପାଇଁ କିଛି ବାର୍ତ୍ତା ଅଛି କି ?"

"ସେମାନଙ୍କ ପାଖରେ ଛିଡ଼ା ହୁଅ । ସେମାନଙ୍କୁ କୁହ ବିବ୍ରତ ହେବେ ନାହିଁ ।" ସମସ୍ତେ ସମସ୍ୱରରେ କହିଲେ ।

"ଆଉ କିଛି ?" ମୁଁ ପଚାରିଲି ।

"ଆମ ଭିତରେ ଯାହା ଆନ୍ଦୋଳିତ ହେଉଛି, ତାହା ତୁମେ କହି ସାରିଛ ।" ସେମାନଙ୍କ ମଧ୍ୟରୁ ଜଣେ କହିଲା । ଜେଲ ଅଧୀକ୍ଷକ ନିଜର ହାତ ଘଣ୍ଟାକୁ ଚାହିଁଲେ । ମୁଁ ସେମାନଙ୍କୁ ଦ୍ରୁତଗତିରେ କହିବାକୁ କହିଲି ।

କୁନାମ୍ବୁ ଯେ କାରାଗାରର ପ୍ରଥମ କକ୍ଷରେ ଥିଲା, କହିଲା, "ପାର୍ଟି ମୋତେ ସକ୍ଷମ କରିପାରିଥିବା ହେତୁ ମୁଁ ଯାହା କରିବାର କଥା ଲୋକମାନଙ୍କ ପାଇଁ କରିଛି । ଯଦି ପାର୍ଟି ଭାବେ ଯେ ମୁଁ ମୋର କର୍ତ୍ତବ୍ୟ ସମ୍ପାଦନ କରିଛି, ତାହା ମୁଁ କେବଳ ହିଁ ଚାହେଁ ।"

ଆପୁ କହିଲେ, "ଆପଣ ଆମ ପାର୍ଟିର ବର୍ଦ୍ଧିତ ଶକ୍ତି ସମ୍ପର୍କରେ ଅତ୍ୟନ୍ତ ମହାନ୍ ବାର୍ତ୍ତା ଶୁଣାଇଲେ । ଆମେ ଅଧିକ ଉତ୍ସାହର ସହିତ ଫାଶୀଖୁଣ୍ଟରେ ଚଢ଼ିବୁ । ଆମ୍ଭେମାନେ ପାର୍ଟିରେ ଯୋଗ ଦେଇଥିଲୁ ସଂଗ୍ରାମ କରିବା ପାଇଁ ଓ ଦେଶର ସ୍ୱାଧୀନତା ନିମିତ୍ତ ମୃତ୍ୟୁବରଣ କରିବା ପାଇଁ ।"

ଚିର କନ୍ଦନ କହିଲେ, "ଆମ୍ଭେମାନେ ମାତ୍ର ଚାରିଜଣ କୃଷକ ସନ୍ତାନ, କିନ୍ତୁ ଭାରତରେ ନିୟୁତ ନିୟୁତ କୃଷକ ଅଛନ୍ତି । ଆମ୍ଭେମାନେ ଫାଶୀଖୁଣ୍ଟରେ ଝୁଲିପାରୁ, କିନ୍ତୁ ସେମାନଙ୍କୁ ପରାଜୟ କରାଯାଇ ପାରିବ ନାହିଁ । ଏହାହିଁ ଆମକୁ ଏ ସମୟ ମଧ୍ୟରେ ସମ୍ଭାଳି ପାରିଛି । ଦେଶ ତମାମରୁ ଆସୁଥିବା ସମସ୍ତ ଚିଠି ଆମକୁ ଦୁଃଖିତ କରିଛି ଯେ ଆମେ ସେମାନଙ୍କର ସେବା କରିବା ପାଇଁ ବେଶିଦିନ ବଞ୍ଚିପାରିବୁ ନାହିଁ । ଆମର ଆଉ କୌଣସି ଅବଶୋଷ ନାହିଁ । ଯଦି ଆମର ଅଧିକ ବଞ୍ଚିବାର ସମୟ ଥାଆନ୍ତା ତେବେ ଆମେ ଆମର ଉଦ୍ଦେଶ୍ୟ ପାଇଁ ବାରମ୍ବାର ମରିଥାନ୍ତୁ ।"

ଆବୁବେକର ସର୍ବଶେଷ କାରାଗାର କକ୍ଷରେ ଥିଲେ । ସେ କହିଲେ, "ଆମ୍ଭେମାନେ ଆମ୍ଭମାନଙ୍କ ସହିଦମାନଙ୍କଠାରୁ ପ୍ରେରଣା ପାଉଛୁ । ଆମେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲୁ ଯେ

ଆମ୍ଭେମାନେ ସେମାନଙ୍କ ସହିତ ସମ୍ମାନର ଅଂଶୀଦାର ହେବୁ । ସମସ୍ତ ସାଥୀମାନଙ୍କୁ କହିଦେବେ ଯେ, ଆମ୍ଭେମାନେ ନିର୍ଭୟରେ ଫାଶୀଖୁଣ୍ଟରେ ଚଢ଼ିବୁ । ମୋର ମା' ବହୁତ ବୟସ୍କା, ତାଙ୍କୁ ଉତ୍ସାହ ଦେବେ । ମୋର ଭାଇମାନେ ନିହାତି ଛୋଟ, ସେମାନଙ୍କୁ ପାର୍ଟି କାର୍ଯ୍ୟ ପାଇଁ ଶିକ୍ଷା ଦେବେ। ମୁଁ ପରିବାରର ସବୁଠାରୁ ବଡ଼ ସଦସ୍ୟ । ସେମାନଙ୍କୁ ଦେଖିବାକୁ କେହି ନାହାଁ।"

ସେ କହି ସାରିଛନ୍ତି କି ନାହିଁ, ଜେଲ ଅଧୀକ୍ଷକ କହିଲେ, "ସମୟ ଶେଷ ହେଲା।" ମୁଁ ସେମାନଙ୍କ ସହିତ କରମର୍ଦ୍ଦନ କରିବାକୁ ତାଙ୍କର ଅନୁମତି ମାଗିଲି । ସେ ରାଜିହେଲେ...

କାୟୁର ସହିଦମାନେ ଫାଶୀ ଖୁଣ୍ଟରେ ଚଢ଼ିବାବେଳେ କହିଲେ, "ପି.ସି. ଜୋଷୀ– ଜିନ୍ଦାବାଦ।" ଏବଂ ତା' ସହିତ କମ୍ୟୁନିଷ୍ଟ ପାର୍ଟି – ଜିନ୍ଦାବାଦ ।" ସେମାନଙ୍କ ବୀରତ୍ୱ ଅମର ହୋଇଯାଇଛି ପାର୍ଟି ସାଥୀମାନଙ୍କର ସଙ୍ଗୀତରେ "କାୟୁର ବନ୍ଧୁରେ...", ଏହା ସବୁ ଭାଷାରେ ବୋଲାଯାଉଛି ।

ଜୋଷୀ କୃଷକ ଫ୍ରଣ୍ଟ ଗଠନ ପାଇଁ ଗୁରୁତ୍ୱ ପ୍ରଦାନ କରୁଥିଲେ । ବଙ୍ଗଳା ଦୁର୍ଭିକ୍ଷ ହେତୁ ଛାରଖାର ହୋଇଯାଇଥିଲା ଏବଂ ସେଇଥିପାଇଁ ସର୍ବଭାରତୀୟ କୃଷକ ସଭାର ନବମ ଅଧିବେଶନ ପାଇଁ ସେହି ସ୍ଥାନକୁ ସ୍ଥିର କରାଗଲା । ସମ୍ମିଳନୀ ମଇମନ ସିଂହ ଜିଲ୍ଲାର ହଜଙ୍ଗ ଅଞ୍ଚଳରେ ନେତ୍ରାକୋନାଠାରେ ଅନୁଷ୍ଠିତ ହେଲା । ଜୋଷୀ ପ୍ରତିନିଧିମାନଙ୍କୁ ନିବେଦନ କରି କହିଲେ ଯେ, ସେମାନେ କୃଷକ ସଭା ଗଠନ କରିବାରେ ନିଜର ଶକ୍ତି ବିନିଯୋଗ କରନ୍ତୁ କାରଣ ସେ ଜାଣନ୍ତି ଯେ କମ୍ୟୁନିଷ୍ଟ ପାର୍ଟିର ଏକ ତୃତୀୟାଂଶ ସଭ୍ୟ କୃଷକମାନଙ୍କ ମଧ୍ୟରୁ ଆସନ୍ତି । ହିନ୍ଦୁ ଓ ମୁସଲମାନମାନଙ୍କ ମିଳିତ ସଂଖ୍ୟାର ଏକ ତୃତୀୟାଂଶ ହେଉଛନ୍ତି କୃଷକ ଏବଂ ଏ ଦେଶର ସର୍ବାଧିକ ସବୁଠାରୁ ତଳେ ପଡ଼ିଥିବା ଲୋକ । ଅଧିକ ସଂଖ୍ୟାରେ କୃଷକ ପରିବାରର ସ୍ତ୍ରୀଲୋକମାନେ ଏଥିରେ ଯୋଗ ଦେଇଥିବାରୁ ଜୋଷୀ ବିଚଳିତ ହୋଇ ଉଠିଥିଲେ। ସେ କହିଲେ,

> "କଂଗ୍ରେସ ବା ଲିଗ୍‌ର କୌଣସି ଅଧିବେଶନରେ ଏତେ ସଂଖ୍ୟାରେ ମହିଳା ତୁମେ ଦେଖିବାକୁ ପାଇବ ନାହିଁ। ଏଠାରେ ଉପସ୍ଥିତ ଦଶଜଣରୁ ଜଣେ ମହିଳା। ଯେତେବେଳେ କୃଷକ ଆନ୍ଦୋଳନ ଗାଁର ପଛୁଆ ମହିଳାମାନଙ୍କୁ ଉଠାଇ ପାରିବ, ପୃଥିବୀର କୌଣସି ଶକ୍ତି ତାଙ୍କୁ ପଦଦଳିତ କରିପାରିବ ନାହିଁ; ଏହା ବିଜୟୀ ହେବ।"[୧୨]

କିନ୍ତୁ ସେଠାରେ କିଛି ଅପ୍ରୀତିକର ଘଟଣା ଘଟିଥିଲା ଯାହା ଜଣେ ମହିଳା ସାମ୍ବାଦିକା ପିପୁଲ୍ସ ୱାରେରେ ବିବରଣୀ ପ୍ରଦାନ କରିଥିଲେ । ସେଠାରେ ଥିବା ମଧ୍ୟବିତ୍ତ ଶ୍ରେଣୀର ମହିଳାମାନେ

---

୧୨. ପିପୁଲ୍ସ ୱାର୍, ମେ ୬, ୧୯୪୫ ।

ଯେପରି ବ୍ୟବହାର କରୁଥିଲେ ଓ ନିଜ ନିଜ ମଧ୍ୟରେ କଥାହୋଇ ଭାଷଣ ଶୁଣୁନଥିଲେ ତାହା ତାଙ୍କୁ ବିରକ୍ତ କରିଥିଲା । ଯେତେବେଳେ ଏହି ସାମ୍ବାଦିକା ଯୋଶୀଙ୍କ ନିକଟରେ ଅଭିଯୋଗ କଲେ, ସେ ତାହାର ପ୍ରତ୍ୟୁତ୍ତରରେ ସେହି ମହିଳାମାନଙ୍କ ସପକ୍ଷରେ କହିଲେ । ସେହି ବିବରଣୀରେ ଉଲ୍ଲେଖ ଥିଲା,

> "ଯୋଶୀ କହିଲେ, ଏହା କ'ଣ ଗୁରୁତ୍ୱପୂର୍ଣ୍ଣ ଘଟଣା ନୁହେଁ ଯେ ଏତେ ସଂଖ୍ୟାରେ ଭଦ୍ର ମହିଳା ସେମାନଙ୍କ ଘରୁ ବାହାରି ଆସି ଏଥିରେ ଯୋଗଦେବା, ତଳେ ବସିବା ଏବଂ କୃଷକ ଓ ହରିଜନ ମହିଳାମାନଙ୍କ ସହିତ ବସି ପାରିଛନ୍ତି ? ବଙ୍ଗଳାର ଜାତୀୟ ଜୀବନରେ ଏପରି କେବେ ଘଟିଛି ? ଆମର ବକ୍ତବ୍ୟ ଏତେ ସହଜ ଓ ସିଧା ଯଥେଷ୍ଟ ନୁହେଁ। ସେଇଥିପାଇଁ ସେମାନେ ଶୁଣିବା ପରିବର୍ତ୍ତେ ନିଜ ନିଜ ଭିତରେ କଥା ହେଉଛନ୍ତି। ସାଂସ୍କୃତିକ କାର୍ଯ୍ୟକ୍ରମ ପର୍ଯ୍ୟନ୍ତ ଅପେକ୍ଷା କର ଏବଂ ତା'ପରେ ଦେଖିବ ସେମାନେ କିପରି ନିରବରେ ନିଷ୍ଠାର ସହ ଶୁଣୁଛନ୍ତି ।'[୧୩]

ବାସ୍ତବରେ ଯୋଶୀ ସର୍ବସାଧାରଣରେ ହରିଜନ ମହିଳାମାନଙ୍କୁ ପ୍ରଶଂସା କଲେ ଯେଉଁମାନେ ଝିପିଝିପି ବର୍ଷା ସତ୍ତ୍ୱେ ସ୍ଥାନ ଛାଡ଼ି ଚାଲିଯାଇ ନ ଥିଲେ, ଯେ ପର୍ଯ୍ୟନ୍ତ ମଞ୍ଚରେ ଥିବା ନେତାମାନେ ସେମାନଙ୍କୁ ଯିବାକୁ ନ କହିଛନ୍ତି । ହଜଙ୍ଗ ମହିଳାମାନେ ଖାଦ୍ୟ ପ୍ରସ୍ତୁତ ହେବାପାଇଁ ପରିବା କାଟିବାରେ ଯାଇ ସାହାଯ୍ୟ କରୁଥିଲେ । ଜଣେ ୮୦ ବର୍ଷିୟା ବୟସ୍କା ହଜଙ୍ଗ ମହିଳା ଯେ ନିଜ ପାଦରୁ ବହୁଥିବା ରକ୍ତକୁ ନଦୀରେ ଧୋଉଥିଲେ ସାମ୍ବାଦିକା ତାଙ୍କୁ ପଚାରିଲେ, "ଏ ବୟସରେ ତୁମେ କଷ୍ଟକରି କାହିଁକି ଏଠାକୁ ଆସିଲ ?" ତା'ର ଉତ୍ତର ଦେଇ ସେ କହିଲେ, "କ'ଣ କହିଲ ? ଗତ ତିନିମାସ ଧରି ଗାଁ ପିଲାମାନେ ଏହି ସମ୍ମିଳନୀ ପାଇଁ ଚାଉଳ, ବାଉଁଶ ସଂଗ୍ରହ କରୁଛନ୍ତି ଏବଂ ମୁଁ କେବଳ ନେତ୍ରକୋନା, ନେତ୍ରକୋନା, ନେତ୍ରକୋନା ଶୁଣୁଛି ଏବଂ ତୁମେ କହୁଛ ଯେ ମୁଁ ଆସିନଥାନ୍ତି ! ମୋ ଚାରିପାଖରେ ହଜାର ହଜାର ସଂଖ୍ୟାରେ ମୋ ନିଜ ଲୋକ ଥିବାବେଳେ ମୁଁ ମରିଥିଲେ, ଏହାଠାରୁ ଅଧିକ ଭଲସ୍ଥାନ ମୁଁ କେଉଁଠୁ ପାଇଥାନ୍ତି ?"[୧୪]

ଭାରତର ବିଭିନ୍ନ ସ୍ଥାନରୁ ପ୍ରତିନିଧିମାନେ ଆସିଥିଲେ । ପ୍ରାୟ ଲକ୍ଷେ ଲୋକ ଏକାଠି ହୋଇଥିଲେ । ବଙ୍କିମ ମୁଖାର୍ଜୀ, ଅବଦୁଲ୍ଲା ରସୁଲ, ପାରୁଲେକର, ପି.ସୁନ୍ଦରାୟ, ମୁଜାଫର ଅହମ୍ମଦ, ଭୋୱାନୀ ସେନ୍ ପ୍ରଭୃତି କୃଷକ ଆନ୍ଦୋଳନର ନେତାମାନେ ମଞ୍ଚ ଉପରେ ବସିଥିଲେ। ପ୍ରତିନିଧି ଓ ଦର୍ଶକମାନେ ବସ୍ ଓ ଟ୍ରେନ୍‌ରେ ଏପରିକି ଟ୍ରେନ୍‌ର ଛାତ ଉପରେ ବସି ଆସିଥିଲେ। ସମ୍ମିଳନୀ ଯୋଶୀ ଓ ପାର୍ଟି କେତେ ଲୋକପ୍ରିୟ ତାହା ସୂଚାଉଥିଲା । ଯୋଶୀଙ୍କ ଭାଷଣରେ

---

୧୩. ପିପୁଲ୍ସ ୱାର୍, ମେ ୧୩, ୧୯୪୫ ।
୧୪. ପିପୁଲ୍ସ ୱାର୍ - ଏ ରିପୋର୍ଟ ଏମଙ୍ଗ କିସାନ ଉମେନ୍ ।

ଜଣେ ବୃଦ୍ଧ କୃଷକ ଅତ୍ୟନ୍ତ ଆନନ୍ଦ ପ୍ରକାଶ କରିଥିଲେ । ସେ କହିଲେ,

"ଜୋଷୀ ଜଣେ ମହାନ୍ ବ୍ୟକ୍ତି ଏବଂ ସେ ଯେପରି ଭାବରେ କଥାଗୁଡ଼ିକ ଉପସ୍ଥାପିତ କରୁଛନ୍ତି, ତାହା ଆମେ ବୁଝି ପାରିଲୁ, ମୁଁ ଭାବିଥିଲି ସେ ଅତି ଉଚ୍ଚକୋଟୀର ରାଜନୀତି କଥା କହିବେ ଯାହାକୁ ଆମେ କୃଷକମାନେ ବୁଝିପାରିବୁ ନାହିଁ । ଏବଂ କୁହତ ଦେଖି, ସେ ଜଣେ ବଙ୍ଗାଳୀ ନୁହଁନ୍ତି, ତେବେ କିପରି ସେ ଆମ ଗାଁରେ କ'ଣ ଘଟୁଛି, ତାହା ଜାଣୁଛନ୍ତି ? ସେ ମହଜୁଦକାରୀଙ୍କ ସମ୍ପର୍କରେ ଯାହା ସବୁ କହିଲେ ତାହା ଅକ୍ଷରେ ଅକ୍ଷରେ ସତ । ଯଦି ଯାହା ସବୁ ସେ କହିଲେ ଆମେ ତାହା କରୁ, ତେବେ ଆମର ଦୁର୍ଦ୍ଦଶା ଅତୀତର କଥା ହୋଇ ରହିବ ।"[୧୫]

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଆଗାମୀ ନିର୍ବାଚନ ଅଗଷ୍ଟ ୨୧, ୧୯୪୫ରେ ହେବ ବୋଲି ଘୋଷଣା କରାଗଲା । ଓ୍ୱାଭେଲ, ସେପ୍ଟେମ୍ବର ୧୯ ତାରିଖରେ ଘୋଷଣା କଲେ ଯେ ଏକ ସମ୍ପୂର୍ଣ୍ଣ ସ୍ୱୟଂଶାସିତ ସରକାର ହେବାର ସମ୍ଭାବନା ରହିଛି ଯଦିଓ ସେଥିରେ ସ୍ୱାଧୀନତାର ଶବ୍ଦ ନ ଥିଲା । ନିର୍ବାଚନ ପାଇଁ ରାଜନୈତିକ ଦଳମାନେ ପ୍ରଚାର କାର୍ଯ୍ୟ ଜୋରଦାର କରିବାକୁ ଲାଗିଲେ । ଜୋଷୀ ନିର୍ବାଚନ କାର୍ଯ୍ୟକ୍ରମ ପାଇଁ ତାଙ୍କର ଖସଡ଼ା ପ୍ରସ୍ତୁତ କଲେ ଏବଂ ସାଥୀମାନେ କିପରି ପ୍ରଚାର କରିବେ, ତାହାର ଆପେକ୍ଷିକ ଗୁରୁତ୍ୱ ନିର୍ଦ୍ଧାରଣ କଲେ । ସେ ଅକ୍ଟୋବର ୭, ୧୯୪୫ରେ ଲେଖିଥିଲେ କମ୍ୟୁନିଷ୍ଟ ପାର୍ଟି ଅନ୍ୟ ପାର୍ଟିଗୁଡ଼ିକୁ ଦୋଷ ଦେବନାହିଁ, କିନ୍ତୁ ଲୋକମାନଙ୍କୁ ସଠିକ୍ କଥା କହିବ ।

"ଭାରତର ମୁଖ୍ୟ ରାଜନୈତିକ ଦଳମାନେ ପରସ୍ପର ମଧ୍ୟରେ ପ୍ରତିଦ୍ୱନ୍ଦିତା କରି ଭାରତର ସ୍ୱାଧୀନତାକୁ ନିକଟବର୍ତ୍ତୀ କରିବେ ନାହିଁ, କିନ୍ତୁ ଭାରତର ଭାଗ୍ୟକୁ ବ୍ରିଟିଶ୍ ସାମ୍ରାଜ୍ୟବାଦୀଙ୍କ ଶେଷ ମଧ୍ୟସ୍ଥି ଭାବରେ ଛାଡ଼ିଦେବେ ।"

ଜୋଷୀ ନିର୍ବାଚନ ପ୍ରଚାର କାର୍ଯ୍ୟରେ ଭାରତର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ବୁଲିଥିଲେ । ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଲୋକମାନଙ୍କ ସମ୍ମୁଖରେ ପାର୍ଟିର ରାଜନୈତିକ ସ୍ଥିତି ଉପସ୍ଥାପିତ କରିବା ଏବଂ ଲୋକମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବା । ବଙ୍ଗଳାରେ ସେ ମେଦିନୀପୁର, ଜେସୋର, ଢାକା, ମଇମନ ସିଂହ ଏବଂ ଚିଟ୍ଟାଗଙ୍ଗ ଇତ୍ୟାଦି ବୁଲିଲେ । ଆସାମର ସୀମାନ୍ତ ଅଞ୍ଚଳ ସୁଶାଙ୍ଗଠାରେ ସଭା ହେଲା । ଏହା ପାର୍ଟି କୃଷକମାନଙ୍କର ଶକ୍ତିଶାଳୀ ଅଞ୍ଚଳ ଥିଲା । ସେ ଯେଉଁଠାକୁ ଗଲେ, ତାଙ୍କ ସଭାକୁ ବହୁ ସଂଖ୍ୟାରେ କୃଷକ ଉଭୟ ହିନ୍ଦୁ ଓ ମୁସଲମାନ ଆକର୍ଷିତ ହୋଇ ଆସୁଥିଲେ । ସେ ପାର୍ଟିର ନୀତିକୁ ଉପସ୍ଥାପିତ କରିବା ସହିତ ଏହାର ଦେଶପ୍ରେମ ଭୂମିକା ଯାହା ଲୋକମାନଙ୍କୁ ନିଃସ୍ୱାର୍ଥପର ସେବା ମାଧ୍ୟମରେ, ଦୁର୍ଭିକ୍ଷ ସମୟରେ ଏବଂ

---

୧୫. ପିପୁଲ୍ସ ୱାର୍, ମେ ୬, ୧୯୪୫ ।

ମହଜୁଦକାରୀମାନଙ୍କ ବିରୋଧରେ ପ୍ରଚାର ଦ୍ୱାରା କରାଯାଇଛି ତାହା ଉପସ୍ଥାପିତ କରୁଥିଲେ। ବଙ୍ଗଳାରୁ ଯାଇ ଜୋଷୀ ବିହାର ଭ୍ରମଣ କଲେ ଏବଂ ପାଟନା, ମୁଙ୍ଗେର, ଲଖିସରାଇ, ବେଗୁସରାଇ ଇତ୍ୟାଦିରେ ସଭା କଲେ । ସେଠାରେ ତାଙ୍କୁ ଉତ୍ତ୍ୟକ୍ତ ଜନତାର ସମ୍ମୁଖୀନ ହେବାକୁ ପଡ଼ିଥିଲା। ଏଠାକାର ପରିସ୍ଥିତି ବଙ୍ଗଳାଠାରୁ ଭିନ୍ନ ଥିଲା । ତାଙ୍କ ସଭା ଉପରକୁ ଆକ୍ରମଣ କରାଗଲା। ଗୋଟିଏ ରେଳ ଷ୍ଟେସନଠାରେ ଉତ୍ତ୍ୟକ୍ତ ଜନତା ତାଙ୍କୁ ଆକ୍ରମଣ କରିବା ସହିତ ସ୍ଲୋଗାନ ଦେଉଥିଲେ, "କମ୍ୟୁନିଷ୍ଟ ପାର୍ଟି ମୁର୍ଦାବାଦ, ପି.ସି. ଜୋଷୀ ମୁର୍ଦାବାଦ, କମ୍ୟୁନିଷ୍ଟ ପାର୍ଟି ଦେଶଦ୍ରୋହୀ" । ଜଣେ ଶିଖ୍ ସାଥୀ ହାତରେ ଖଣ୍ଡାଧରି ଏହି ଆକ୍ରମଣକାରୀମାନଙ୍କ ଆଡ଼କୁ ଝପଟି ଗଲେ ଓ ଜୋଷୀଙ୍କୁ ରକ୍ଷା କଲେ । ସମସ୍ତ ପ୍ରଦେଶମାନଙ୍କଠାରୁ ବିହାର ସବୁଠାରୁ କଷ୍ଟକର ଥିଲା । ବୋଧହୁଏ, ସେଠାରେ ପାର୍ଟିକୁ ସବୁଠାରୁ ବେଶି ବିରୋଧ କରାଯାଉଥିଲା। ଏହିପରି ବାଦଲ ଆଚ୍ଛାଦିତ ପରିସ୍ଥିତିରେ ବିହାରର ଶେଖପୁରାଠାରେ ଜୋଷୀଙ୍କ ନିର୍ବାଚନ ପ୍ରଚାର ସଭାରେ ବହୁ ସଂଖ୍ୟାରେ କୃଷକମାନଙ୍କର ଉପସ୍ଥିତି ଉଜ୍ଜ୍ୱଳ ଆଲୋକ ରେଖାର ଚିତ୍ର ପ୍ରଦାନ କରିଥିଲା । ସେ ଜମିଦାର, ମହାଜନ ଓ ମହଜୁଦକାରୀଙ୍କ ବିରୁଦ୍ଧରେ ସଂଗ୍ରାମ କରିବାକୁ ଆହ୍ୱାନ କଲେ, ଯେଉଁମାନେ ଗାଁ ଭିତରେ ଥିଲେ ବ୍ରିଟିଶ୍‌ର ଏଜେଣ୍ଟ। ଜୋଷୀ ସୁବକ୍ତା ନ ଥିଲେ, ତାଙ୍କର ବକ୍ତାଗିରିର ଅଭାବ ଥିଲା, ତାହା ବାର୍ତ୍ତାଳାପ ରୂପରେ ଥିଲା। କୃଷକମାନେ ଗର୍ବର ସହିତ ପ୍ରତି ଗ୍ରାମରେ ଗୋଟିଏ ହାତରେ ଲାଲ ବ୍ୟାନର ଧରି ଛିଡ଼ା ହୋଇଥିଲେ ଏବଂ ଅନ୍ୟ ହାତକୁ ଉପରକୁ ଉଠାଇ ଦୃଢ଼ ମୁଷ୍ଟିରେ ସଲାମ ଜଣାଉଥିଲେ । ଶହ ଶହ ସଂଖ୍ୟାରେ କୃଷକ ସେମାନଙ୍କର ଲାଲ ସଲାମ ଗ୍ରହଣ ନ କରି ଓ କଥା ନ କହି ଯିବାକୁ ଦେଉନଥିଲେ। ଜୋଷୀ ଦଳ ପରେ ଦଳଙ୍କ ନିକଟକୁ ଯାଉଥିଲେ, ସେମାନଙ୍କ ସଲାମ ଗ୍ରହଣ କରି ସେମାନଙ୍କ ସହିତ କଥା ହେଉଥିଲେ । ଏହାପରେ ହିଁ କେବଳ କୃଷକମାନେ ଡ୍ରମ ଓ ବିଗୁଲ ବଜାଇ ମାର୍ଚ୍ଚକରି ଫେରିଗଲେ।[୧୬]

ଉତ୍ତର ପ୍ରଦେଶରେ ଜୋଷୀ ଏଲାହାବାଦ, ଲକ୍ଷ୍ନୌ ଓ କାନପୁରଠାରେ ଶ୍ରମିକଶ୍ରେଣୀ ଅଞ୍ଚଳରେ ସଭାରେ ଯୋଗଦେଲେ । ସେଠାରୁ ସେ ଗଲେ ଆନ୍ଧ୍ର । ସେଠାରେ ପାର୍ଟି ବିରୁଦ୍ଧରେ ବ୍ୟାପକ କୁତ୍ସାରଟନା ହେଉଥିଲା । ପାର୍ଟି ସାଥୀମାନଙ୍କୁ ଆକ୍ରମଣ କରାଯାଉଥିଲା ଏବଂ ଦେଶବ୍ୟାପୀ ପାର୍ଟି ଅଫିସ୍ ଉପରେ ଆକ୍ରମଣ ଚାଲିଥିଲା । ପାର୍ଟି ପତ୍ରିକା ଖୋଲା ସ୍ଥାନରେ ବିକ୍ରି ହୋଇ ପାରୁନଥିଲା କିମ୍ୱା ପ୍ରଚାରିତ ହେଉନଥିଲା । ସେଗୁଡ଼ିକୁ ଛଡ଼ାଇ ନିଆ ଯାଉଥିଲା କିମ୍ୱା ପୋଡ଼ି ଦିଆଯାଉଥିଲା । ତାମିଲନାଡୁର କୃଷକ ସମ୍ମିଳନୀ ଉପରେ ଆକ୍ରମଣ ହେଲା, ସଭାମଞ୍ଚରେ ନିଆଁ ଲଗାଇ ଦିଆଗଲା, କର୍ମୀମାନଙ୍କୁ ଛୁରୀ ଭୂଷାଗଲା ଏବଂ ଲାଲ ପତାକାକୁ ପୋଡ଼ି ଦିଆଗଲା। ସୁସଂଗଠିତ ଭାବରେ ବିରୋଧୀମାନଙ୍କ ଦ୍ୱାରା ଓ ଅନ୍ୟାନ୍ୟ ରାଜନୈତିକ ଦଳମାନଙ୍କ ଆକ୍ରମଣ ହେତୁ ଏହିପରି ପରିସ୍ଥିତିକୁ ମୁକାବିଲା କରିବା ପାଇଁ ପାର୍ଟିର କୌଶଳ କ'ଣ ହେବ, ତାହା ପାର୍ଟି

---

୧୬. ପିପୁଲ୍ସ ଏଜ୍, ମାର୍ଚ୍ଚ ୩, ୧୯୪୬ ।

ନେତାମାନେ ଭାବିବାକୁ ବାଧ ହେଲେ । ଜୋଷୀ ପ୍ରକୃତ ଘଟଣା ଉଲ୍ଲେଖ କରି ପ୍ରଚାର ପତ୍ର ଛାପିବାକୁ ସାଥୀମାନଙ୍କୁ ନିର୍ଦ୍ଦେଶ ଦେଲେ । ଯେଉଁ ମିଛକଥା କୁହାଯାଉଛି ଓ ଅଭିଯୋଗ ଅଣାଯାଉଛି, ତାହାକୁ ଯୁକ୍ତି ଦ୍ୱାରା ଖଣ୍ଡନ କରି ବହୁ ସଂଖ୍ୟାରେ ଲୋକମାନଙ୍କ ମଧ୍ୟରେ ବାଣ୍ଟିବାକୁ କହିଲେ। ଏହିପରି ଗୁଣ୍ଡାଗିରି ବିରୁଦ୍ଧରେ ସେ ଅତ୍ୟନ୍ତ କଠୋର ଶବ୍ଦରେ ଲେଖିଥିଲେ,

> "ଯେତେବେଳେ ଆମ ସାଥୀମାନଙ୍କୁ ବ୍ୟକ୍ତିଗତ ଭାବରେ ବା ଗୋଷ୍ଠୀଗତ ଭାବେ ଆକ୍ରମଣ କରାଯାଉଛି ସେମାନେ ନିଜର ଆତ୍ମରକ୍ଷା ସାହସର ସହିତ କରିବା ଦରକାର ଏବଂ ନିକଟରେ ଥିବା ସାଧାରଣ ଲୋକମାନଙ୍କୁ ଡାକି ସେମାନଙ୍କର ସାହାଯ୍ୟ ଲୋଡ଼ିବା ସହିତ ସେମାନେ ଦେଖିବା ଉଚିତ ଯେ କିଏ କ'ଣ ? ଆମର ବାଳିକା ସାଥୀମାନେ ନିଜର ସମ୍ମାନକୁ ନିଜ ଭାଷା ଓ ହାତମୁଠା ବ୍ୟବହାର କରି ନିଜକୁ ରକ୍ଷା କରିବା ସହିତ କୁସା ଓ ଗୁଣ୍ଡାମାନଙ୍କ ବିରୁଦ୍ଧରେ ଉଚିତ ଜବାବ ଦିଅନ୍ତୁ ।
>
> ପ୍ରତ୍ୟେକ ସାଥୀ ଯେକୌଣସି ପରିସ୍ଥିତିରେ ଯେତେ ବାଧାବିଘ୍ନ ଆସିଲେ ମଧ୍ୟ, ଯେ ପ୍ରକାର ଅଞ୍ଚଳ ହୋଇଥିଲେ ମଧ୍ୟ ଖୁବ୍ ଜୋର୍‌ରେ ନିଜର ସୁରକ୍ଷା କରିବା ଆବଶ୍ୟକ । ଯେତେପ୍ରକାର ଉତ୍ତେଜନା ସୃଷ୍ଟି କରାଗଲେ ମଧ୍ୟ କୌଣସି ପରିସ୍ଥିତିରେ, ଆମେ ପ୍ରତି ଆକ୍ରମଣ ପାଇଁ ଯୋଜନା କରି କାର୍ଯ୍ୟ କରିବା ନାହିଁ ।"[୧୭]

ଏହିପରି ଆକ୍ରମଣ ଓ କୁସାରଟନା ସତ୍ତ୍ୱେ ଏବଂ ଭାରତଛାଡ଼ ଆନ୍ଦୋଳନରେ ଯୋଗ ନ ଦେଇଥିବା କାରଣରୁ ସେମାନଙ୍କୁ ଦେଶଦ୍ରୋହୀ କୁହାଯିବା ସତ୍ତ୍ୱେ, ପାର୍ଟି ନେତୃତ୍ୱରେ ସାମନ୍ତବାଦୀ ନିର୍ଯ୍ୟାତନା ବିରୁଦ୍ଧରେ ଦେଶର ବିଭିନ୍ନ ପ୍ରାନ୍ତରରେ ଗଣଆନ୍ଦୋଳନ ଅବ୍ୟାହତ ରହିଥିଲା । ଏହିପରି ଏକ ସଂଗ୍ରାମ ଥିଲା ମହାରାଷ୍ଟ୍ରରେ ଥିବା ୱର୍ଲିର ଆଦିବାସୀମାନଙ୍କର, ଯାହାର ନେତୃତ୍ୱ ନେଇଥିଲେ ଗୋଦାବରୀବାଈ ପାରୁଲେକର ଶ୍ରଦ୍ଧାରେ ଯାହାଙ୍କୁ ବାଇ ବୋଲି ଡକାଯାଉଥିଲା । ସେ ମହାରାଷ୍ଟ୍ରର ଥାନେ ଜିଲ୍ଲାରେ ଥିବା ପାଲଘର, ଦହୁନା, ଅମ୍ବର ଗାଁ ପ୍ରଭୃତି ତହସିଲରେ ରହୁଥିବା ମୂଳ ଆଦିବାସୀମାନଙ୍କ ଉପରେ କ୍ରୀତଦାସ ପରି ଶାସ୍ତି ପ୍ରୟୋଗ କରୁଥିବା ବିରୁଦ୍ଧରେ ସଂଗ୍ରାମ କରିଥିଲେ । ସେମାନଙ୍କ ଉପରେ ଜମିଦାରମାନଙ୍କ ନିର୍ଯ୍ୟାତନା ଥିଲା ଅତ୍ୟନ୍ତ କଠୋର; ପ୍ରଜାମାନଙ୍କର ସ୍ତ୍ରୀମାନଙ୍କୁ ଜମିଦାରମାନେ ନିଜର ବ୍ୟକ୍ତିଗତ ସମ୍ପତ୍ତି ଭାବେ ବ୍ୟବହାର କରି ଭୋଗ କରୁଥିଲେ । ୧୯୪୫ ମସିହାରେ ଥାନେ ଜିଲ୍ଲାର ଟିଟ୍‌ୱାଲାଠାରେ ଏହା ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିବାକୁ ନିଷ୍ପତ୍ତି ଗ୍ରହଣ କରାଗଲା । ୱର୍ଲିମାନେ "ଗୋତି ଶ୍ରମିକ ପ୍ରଥା ମୁର୍ଦାବାଦ", ସ୍ଲୋଗାନ୍ ଦ୍ୱାରା ପ୍ରଭାବିତ ହେଲେ ଯାହାକୁ ସେମାନେ ପ୍ରଥମ ଥର ପାଇଁ ଶୁଣିଲେ। ଗୋଦାବରୀ ବାଈ ସେମାନଙ୍କ ସହିତ ପାହାଡ଼ିଆ ଓ ଜଙ୍ଗଲ ମଧ୍ୟରେ ରହି କାର୍ଯ୍ୟ କଲେ, ସେମାନଙ୍କ ସହିତ ରହିଲେ ଏହି ଏକମାତ୍ର ଉଦ୍ଦେଶ୍ୟରେ ଯେ ସେମାନଙ୍କୁ ଦାରୁଣ

---

୧୭. ପିପୁଲ୍ସ ୱାର୍, ନଭେମ୍ବର ୪, ୧୯୪୫ ।

ଗୋଟି ଶ୍ରମିକରୁ ମୁକ୍ତ କରିବେ । ପରିଶେଷରେ ୱର୍ଲିମାନଙ୍କର ବିଦ୍ରୋହ ଆରମ୍ଭ ହେଲା ଏବଂ ୧୯୪୫ରୁ ୧୯୪୭ ପର୍ଯ୍ୟନ୍ତ ଚାଲିଲା ।[୧୮]

ଗୋଦାବରୀ ବାଈଙ୍କୁ ବହିଷ୍କାର ଆଦେଶ ଦେବା ସତ୍ତ୍ୱେ ଓ ପରବର୍ତ୍ତୀ ସମୟରେ ୧୯୪୭ ଫେବୃୟାରୀ ମାସରେ ଉତ୍ତେଜନାମୂଳକ ଭାଷଣ ଦେବା ଅପରାଧରେ ମିଥ୍ୟା ଆରୋପ କରାଯାଇ ବନ୍ଦୀ କରାଗଲା । ସେଠାକୁ ସୈନ୍ୟବାହିନୀ ପ୍ରେରଣ କରାଗଲା, କିନ୍ତୁ ୱର୍ଲି ସଂଘର୍ଷ ସଫଳ ହେଲା ଏବଂ ସରକାର ବାଧହୋଇ ପଛଘୁଞ୍ଚା ଦେଲେ । ସୈନ୍ୟବାହିନୀ ଫେରାଇ ନିଆଗଲା ଏବଂ ୧୯୪୭ ଏପ୍ରିଲ ୫ ତାରିଖରେ, ୱର୍ଲିର ଆଦିବାସୀମାନଙ୍କୁ ଦାସତ୍ୱରୁ, ଜବରଦସ୍ତ ବିବାହ କରିବାରୁ ଏବଂ ଅନ୍ୟ ସମସ୍ତ ପ୍ରକାର ନିର୍ଯ୍ୟାତନାରୁ ମୁକ୍ତ କରାଗଲା । ଗୋଦାବରୀବାଈଙ୍କ ପରି କମ୍ୟୁନିଷ୍ଟମାନେ ଯେଉଁମାନେ ପଦଦଳିତ ଲୋକଙ୍କ ନିମିତ୍ତ ସମ୍ପୂର୍ଣ୍ଣ ସମର୍ପିତ ଥିଲେ, ସେହି ସମୟରେ ବାହାରିଥିଲେ ।

ସେହିପରି, ଦେଶର ପୂର୍ବଭାଗରେ ଅନ୍ୟ ଏକ କୃଷକ ବିଦ୍ରୋହ ଆରମ୍ଭ ହୋଇ ବଙ୍ଗଳାର ୧୯ଗୋଟି ଜିଲ୍ଲାକୁ ପ୍ରଭାବିତ କରିଥିଲା । କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ଭାଗଚାଷୀମାନଙ୍କର ଅଧିକାର ପାଇଁ ଏହା ଥିଲା ତେଭଗା ଆନ୍ଦୋଳନ । ଏହା ତେଭଗା ଆନ୍ଦୋଳନ କୁହାଯିବାର କାରଣ ହେଲା ଏହି ଲଢ଼େଇର ଉଦ୍ଦେଶ୍ୟ ଜମି ଚାଷ କରୁଥିବା ଚାଷୀମାନେ ଫସଲ ଉତ୍ପାଦନର ଦୁଇ ତୃତୀୟାଂଶ ପାଇବେ ଏବଂ କେବଳ ଏକ-ତୃତୀୟାଂଶ ଜମି ମାଲିକମାନଙ୍କ ନିକଟକୁ ଯିବ । ତେଭଗାର ଆକ୍ଷରିକ ଅର୍ଥ ହେଉଛି ଦୁଇ-ତୃତୀୟାଂଶ । କୃଷକ ପୁରୁଷ ଓ ମହିଳା ବହୁ ସଂଖ୍ୟାରେ ଅଂଶ ଗ୍ରହଣ କଲେ, ଲାଠି ଓ ଗୁଳିର ସାମ୍ନା କଲେ, ସେମାନଙ୍କର ଯୁଦ୍ଧ ଆହ୍ୱାନ ଥିଲା "ଆମେ ଆମର ଜୀବନ ଦେବୁ, କିନ୍ତୁ ଧାନ ଦେବୁନାହିଁ ।" ସୁହାର୍ଦ୍ଦି ସରକାରର ପୁଲିସ୍‌ର କଠୋର ନିର୍ଯ୍ୟାତନା ସତ୍ତ୍ୱେ, ଏହି ସଂଗ୍ରାମ ବର୍ଷେ ପର୍ଯ୍ୟନ୍ତ ଚାଲିଲା । ସେ ସମୟର ସରକାର କୃଷକମାନଙ୍କର ନ୍ୟାୟପୂର୍ଣ୍ଣ ଦାବିକୁ ମାନିଲା ଏବଂ ଜମିଦାରୀ ବ୍ୟବସ୍ଥା ଲୋପ ପାଇଁ ବିଲର ଚିଠା ଖସଡ଼ା ପ୍ରସ୍ତୁତ କରାଗଲା, କିନ୍ତୁ ଏହା ବିଧାନସଭାରେ ଜମିଦାରଙ୍କ ଚାପ ଯୋଗୁଁ ଉପସ୍ଥାପିତ କରାଗଲା ନାହିଁ । ସରକାରଙ୍କ ଭୂ-ରାଜସ୍ୱ କମିଶନରଙ୍କର ରିପୋର୍ଟ ଯେଉଁଥିରେ ବଙ୍ଗଳା ଦୁର୍ଭିକ୍ଷ ଫଳରେ କୃଷକମାନଙ୍କର ଶୋଚନୀୟ ଅବସ୍ଥା ସମ୍ପର୍କରେ ଉଲ୍ଲେଖ ଥିଲା, "୭୫ ଲକ୍ଷ କୃଷକ ପରିବାର ତୋକେ ପିଇ ଦଣ୍ଡେ ଜିଉଛନ୍ତି ଅବସ୍ଥାରେ ବଞ୍ଚୁଛନ୍ତି ।" କୃଷକମାନଙ୍କୁ ଜମିଦାରର ଅମାରରେ ସବୁ ଶସ୍ୟକୁ ଜମା ଦେବାକୁ ହେଉଛି ଏବଂ ସେମାନଙ୍କୁ ବିଭିନ୍ନ ପ୍ରକାରର ଉତ୍ପୀଡ଼ନ କରାଯାଉଛି । ଦୁର୍ଭିକ୍ଷ ପରେ ମୂଲ୍ୟର ଅହେତୁକ ବୃଦ୍ଧି ଘଟିଛି ଏବଂ ତାହା ମଧ୍ୟ ଭାଗଚାଷୀ ଓ ସେମାନଙ୍କର ପରିବାର ଉପରେ ଉତ୍କଟ ବୋଝ ପକାଇଛି । ଚାଳିଶ ଦଶକରେ କୃଷକ ଆନ୍ଦୋଳନ କୃଷକମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିବାକୁ ସକ୍ଷମ ହୋଇଥିଲା । ଯେଉଁମାନେ ସକ୍ରିୟ ଭାବରେ ମହଜୁଦକାରୀମାନଙ୍କ ବିରୋଧରେ ପ୍ରଚାର ଅଭିଯାନରେ ସାମିଲ ହୋଇଥିଲେ ଏବଂ ଜୋତେଦାରଙ୍କ

୧୮. ରେଣୁ ଚକ୍ରବର୍ତ୍ତୀ - ପୃଷ୍ଠା ୧୬୨-୧୬୯ ।

ଅମାରଗୁ ଶସ୍ୟ ବାହାର କରି ନିୟନ୍ତିତ ମୂଲ୍ୟରେ ଗରିବମାନଙ୍କୁ ବିକ୍ରି କରିବାକୁ ଦାବି କରିଥିଲେ । ଦୁର୍ଭିକ୍ଷ ସମୟର ଉତ୍କଟ ଖାଦ୍ୟ ସଂକଟ ଦ୍ୱାରା ଉତ୍ପନ୍ନ ଅନୁଭୂତିରୁ ଏବଂ ସାମନ୍ତବାଦୀ ଶୋଷଣ ବିରୁଦ୍ଧରେ କୃଷକମାନଙ୍କର ସଚେତନତାରୁ ତେଭଗା ଆନ୍ଦୋଳନର ଉତ୍ପତ୍ତି।

ତେଲେଙ୍ଗାନା ଆନ୍ଦୋଳନରେ ମଧ୍ୟ ସିପିଆଇ ଐତିହାସିକ ଭୂମିକା ପାଳନ କରିଥିଲା। ପାର୍ଟି ସଠିକ୍ ଭାବରେ ହାଇଦ୍ରାବାଦ ନିଜାମଙ୍କ ଗୁପ୍ତ ଚକ୍ରାନ୍ତକୁ ବୁଝି ପାରିଥିଲା ଯେ କି ବ୍ରିଟିଶ ସହିତ ମିଶି ନିଜ ରାଜ୍ୟକୁ ସ୍ୱାଧୀନ ଦେଶୀୟ ରାଜା ଭାବେ ସ୍ୱୀକୃତି ପାଇବାକୁ ଷଡ଼ଯନ୍ତ୍ର କରୁଥିଲେ କାରଣ ସେ ଭାରତ ସଂଘ ସହ ନିଜକୁ ମିଶାଇବାକୁ ଚାହୁଁନଥିଲେ । ସମସ୍ତ ଦେଶୀୟ ରାଜ୍ୟମାନଙ୍କ ମଧ୍ୟରେ ହାଇଦ୍ରାବାଦ ସବୁଠାରୁ ବଡ଼ ରାଜ୍ୟ ଥିଲା ଯାହାର ୪୦ ପ୍ରତିଶତ ଅଞ୍ଚଳ ସେହି ସାମନ୍ତବାଦୀ ଇଲାକା ଥିଲା । କୃଷକମାନଙ୍କଠାରୁ ଅତ୍ୟଧିକ କର ଆଦାୟ, ଦାଦନ ଶ୍ରମିକ, ଅନୈତିକ ବଳପୂର୍ବକ ବହିଷ୍କାର, ମାଡ଼ ମାରିବା ଓ ହତ୍ୟା କରିବା ଇତ୍ୟାଦି ସବୁଠାରୁ ଖରାପ ଭାବରେ ଶୋଷଣ ଓ ନିର୍ଯ୍ୟାତନା ସେଠାରେ କାର୍ଯ୍ୟକାରୀ ହେଉଥିଲା । ୧୯୪୪ ଏପ୍ରିଲ ମାସରେ ବିଜୟୱାଡ଼ାଠାରେ ହେଉଥିବା ଅଖିଳ ଭାରତ କୃଷକ ସଭାର ବିରାଟ ଅଧିବେଶନ ଲୋକମାନଙ୍କ ସପକ୍ଷରେ ଏକ ବିରୋଧୀ କାର୍ଯ୍ୟକ୍ରମ ଗ୍ରହଣ କଲା । କମ୍ୟୁନିଷ୍ଟ ପାର୍ଟି ଏଆଇଟିୟୁସି, ହାଇଦ୍ରାବାଦର ଛାତ୍ରସଂଘ ଓ ମହିଳାମାନଙ୍କୁ ଏହି ସଂଗ୍ରାମରେ ଯୋଗଦେବାକୁ ଆହ୍ୱାନ କଲେ। ୧୯୪୫ ମସିହାରେ ଲୋକମାନେ ଜୋରଜୁଲମ କର ଆଦାୟ ବିରୁଦ୍ଧରେ ବିଦ୍ରୋହ କଲେ। ନିଜାମର ସୈନ୍ୟ ଓ ରାଜ୍ୟପାଳିତ ଗୁଣ୍ଡାମାନେ ଅସ୍ତ୍ରଶସ୍ତ୍ର ଦ୍ୱାରା ବିରୋଧ କରି ଯୁଦ୍ଧ କଲେ । ଏହା ଏକ ଲମ୍ବା ଯୁଦ୍ଧ ଥିଲା। ଏଥିରେ ଗାଁକୁ ଗାଁ ଯୋଗ ଦେଲେ । ଏହି ସମୟରେ ଆନ୍ଧ୍ର ମହିଳା ସଂଗଠନ ଏକ ସଶକ୍ତ ଗଣ ସଂଗଠନ ଭାବେ ଗଢ଼ିଉଠିଲା । ତଥାପି ଏହା ପୂର୍ବରୁ ୧୯୪୩ ସେପ୍ଟେମ୍ବର ମାସରେ ବିଶେଷ ତାଲିମ କ୍ୟାମ୍ପ ବସାଇ ମହିଳାମାନଙ୍କୁ ତାଲିମ ଦିଆଯାଇଥିଲା ।[୧୯] ଗଣେଶ ଶୁକ୍ଲା ତାଙ୍କ ସ୍ମୃତି ରୋମାନ୍ଥନରେ ଉଲ୍ଲେଖ କରିଛନ୍ତି,

> "ତେଲେଙ୍ଗାନା ସଶସ୍ତ୍ର ବିପ୍ଳବର ପୃଷ୍ଠଭାଗରେ ଜୋଷୀଙ୍କର ପ୍ରାଥମିକ ପ୍ରୋତ୍ସାହନ ଥିଲା । ଦେଶର ବିଭିନ୍ନ ପ୍ରାନ୍ତରରୁ ଅସ୍ତ୍ରଶସ୍ତ୍ର ସଂଗ୍ରହ କରିବାର ସେ ବ୍ୟାପକ ବନ୍ଦୋବସ୍ତ କରିଥିଲେ । ଏହି କାର୍ଯ୍ୟରେ ତାଙ୍କୁ ବନ୍ଧୁ ସୈନ୍ୟ ବିଭାଗର ଅଫିସର ସାହାଯ୍ୟ କରୁଥିଲେ । ଜୋଷୀ ଓ ଅଧିକାରୀଙ୍କ ବ୍ୟତୀତ ଏହି ଗୁପ୍ତକର୍ମ ସମ୍ପାଦନରେ ଅନ୍ୟ କୌଣସି ନେତାଙ୍କର କିଛି ସଠିକ୍ ବିଚାର ନ ଥିଲା ।"[୨୦]

୧୯୫୧ ଶେଷ ପର୍ଯ୍ୟନ୍ତ ଏହି ସଶସ୍ତ୍ର ସଂଗ୍ରାମ ଚାଲିଲା । ପରିଶେଷରେ ନିଜାମ ସମର୍ପଣ କଲେ । ଏହି ସମୟରେ ଏଆଇଟିୟୁସି ନେତୃତ୍ୱରେ ଶ୍ରମିକମାନଙ୍କର ଅଧିକାର

---

୧୯. ରେଣୁ ଚକ୍ରବର୍ତ୍ତୀ - ପୃଷ୍ଠା ୧୩୮-୧୩୯ ।

୨୦. ଗଣେଶ ଶୁକ୍ଲା - ପୃଷ୍ଠା ୮୯ ।

ବିଶେଷକରି ମଜୁରୀ ବୃଦ୍ଧି ଦାବିରେ ଅନେକ ବୀରତ୍ୱପୂର୍ଣ୍ଣ ସଂଗ୍ରାମ ହୋଇଥିଲା । କଲିକତାର ଲୌହ ଓ ଇସ୍ପାତ କାରଖାନାର ଶ୍ରମିକମାନଙ୍କର ସମୂହ ଛଟେଇ ବିରୁଦ୍ଧରେ ଧର୍ମଘଟ, ଜୁଲାଇ ୨୯, ୧୯୪୬ରେ ସର୍ବଭାରତୀୟ ପୋଷ୍ଟାଲ ଧର୍ମଘଟ, ଅଗଷ୍ଟ ୧୯୪୬ରେ ମାନ୍ଦ୍ରାଜ କର୍ପୋରେସନ ଶ୍ରମିକ ଧର୍ମଘଟ, ଅଗଷ୍ଟ-ସେପ୍ଟେମ୍ବର ୧୯୪୬ରେ ଦକ୍ଷିଣ ରେଳପଥର ୪୦ହଜାର ଶ୍ରମିକ ଧର୍ମଘଟ, ନଭେମ୍ବର ୧୯୪୬ରେ କୋଏମ୍ବାଟୋରେ ବୟନଶିଳ୍ପ ଶ୍ରମିକ ଧର୍ମଘଟ ଇତ୍ୟାଦି କେତେକ ଟ୍ରେଡ୍ ୟୁନିୟନ ସଂଗ୍ରାମ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ କରାଯାଇଥିଲା । ୧୯୪୭ ମସିହାରେ ସମୁଦାୟ ଧର୍ମଘଟର ସଂଖ୍ୟା ଥିଲା ୧୮୧୧ ଏବଂ ଏହି ଟ୍ରେଡ୍ ୟୁନିୟନ ଆନ୍ଦୋଳନରେ ୧୮ଲକ୍ଷ ଶ୍ରମିକ ଅଂଶ ଗ୍ରହଣ କରିଥିଲେ ।

ଫେବୃୟାରୀ ୧୯୪୬ରେ ବମ୍ବେଠାରେ ଯେଉଁ ନୌ-ସୈନିକମାନଙ୍କର ବିଦ୍ରୋହ ହେଲା ସେଥିରେ ସମୁଦାୟ ରାଷ୍ଟ୍ର ଦୋହଲିଗଲା । ରୟାଲ୍ ଇଣ୍ଡିଆ ନୌ-ସୈନିକମାନଙ୍କ ମଧ୍ୟରେ ଥିବା କମ୍ୟୁନିଷ୍ଟ ସାଥୀମାନେ ବ୍ରିଟିଶ୍ ବିରୁଦ୍ଧରେ ଏହି ବିଦ୍ରୋହ କଲେ । ବମ୍ବେରେ ଥିବା ୧୨ଟି କୂଳବର୍ତ୍ତୀ କାର୍ଯ୍ୟାଳୟ ଓ ତା'ର ଆଖପାଖର ବନ୍ଦରରେ ଥିବା କୋଡ଼ିଏଟି ଜାହାଜର ପ୍ରାୟ ୨୦ହଜାର ନୌ-ସୈନିକ ଏକ ଆକସ୍ମିକ ଭାବେ ତଡ଼ିତ ବେଗରେ ଧର୍ମଘଟ ଆରମ୍ଭ କରିଦେଇଥିଲେ ।

> "କଂଗ୍ରେସ, ମୁସଲିମ୍ ଏବଂ କମ୍ୟୁନିଷ୍ଟ ପାର୍ଟିର ପତାକା ଶହ ଶହ ସଂଖ୍ୟାରେ ସାଙ୍ଗେ ସାଙ୍ଗେ ସିଲେଇ ହୋଇ ଅତ୍ୟନ୍ତ ଗୁପ୍ତ ଭାବରେ ଜାହାଜମାନଙ୍କୁ ପଠାଗଲା ଏବଂ ନିର୍ଦ୍ଦେଶ ଦିଆଗଲା ଯେ, ପ୍ରତ୍ୟେକ ଜାହାଜର ମାସ୍ତୁଲରେ ଏହି ତିନି ପତାକା ଉଡ଼ାଯିବ । ରାତିରେ ପତାକାଗୁଡ଼ିକ ଉଡ଼ାଗଲା । ଏହି ସାବଧାନ ପଦକ୍ଷେପ ଏଇଥିପାଇଁ ଗ୍ରହଣ କରାଗଲା ଯେ ବିଦ୍ରୋହୀମାନଙ୍କ ସମର୍ଥନରେ ସମସ୍ତ ଦଳ ଓ ସମ୍ପ୍ରଦାୟ ମଧ୍ୟରେ ଏକତା ବଜାୟ ରଖାଯିବ । ଠିକ୍ ସେହିପରି ଭାବରେ, ଏହି ତିନିଗୋଟି ପତାକା ବିଭିନ୍ନ କୋଠାଘର ଉପରେ, ଗଛ ଉପରେ, ବିଦ୍ୟୁତ୍ ଖୁଣ୍ଟମାନଙ୍କରେ ବନ୍ଦରକୁ ମୁହଁକରି ବନ୍ଧାହେଲା ।"[୨୧]

ବମ୍ବେର ଲୋକମାନେ ବିଦ୍ରୋହୀମାନଙ୍କ ପକ୍ଷରେ ଛିଡ଼ା ହେଲେ । ସ୍ୱତଃସ୍ଫୂର୍ତ୍ତ ଭାବରେ ହରତାଳ ଆରମ୍ଭ ହେଲା । ବମ୍ବେ ସହରରେ ନିରସ୍ତ୍ର ଜନତାଙ୍କ ଉପରେ ଅନାଧୁନିଆ ଭାବରେ ଗୁଳି ବର୍ଷଣ ହେଲା । ପିପୁଲ୍ସ ଏଜ୍‌ରେ ବିବରଣୀ ପ୍ରକାଶ ପାଇଲା,

> "ଏହି ତରୁଣ ନୌ-ସୈନିକମାନଙ୍କର ପ୍ରେରଣାର ଉତ୍ସ ଲୋକମାନେ ଥିଲେ ଯେଉଁମାନେ ସେମାନଙ୍କୁ ସାହାଯ୍ୟ କରିବାକୁ ଗୁଳିବର୍ଷଣ ମଧ୍ୟରେ ମଧ୍ୟ ଆଗେଇ ଆସିଥିଲେ । ସମୁଦ୍ର ମୁହଁରେ ଥିବା ଭାରତର ପ୍ରବେଶ ଦ୍ୱାରର ଚତୁଃଦିଗ - ସବୁ

---

୨୧. ତତ୍ରୈବ।

ପ୍ରକାର ଲୋକ - ଯୁବକ, ବୃଦ୍ଧ, ପୁରୁଷ, ମହିଳା, ପିଲା, ହିନ୍ଦୁ, ମୁସଲମାନ, ସବୁ ଅଞ୍ଚଳର ଲୋକମାନଙ୍କ ଦ୍ୱାରା ସମ୍ପୂର୍ଣ୍ଣ ଗୁନ୍ଧି ହୋଇଯାଇଥିଲା । ସେମାନେ ବିଭିନ୍ନ ଝୁଡ଼ିରେ ଓ ପ୍ୟାକେଟ୍‌ରେ ଫଳ ଓ ଖାଦ୍ୟ ଧରି ଆସିଥିଲେ ଏବଂ ଜାହାଜମାନଙ୍କରୁ ଆସୁଥିବା ମଟର ଲଞ୍ଚରେ ସେଗୁଡ଼ିକୁ ଅଜାଡ଼ି ଦେଉଥିଲେ । ଭାରତୀୟ ସୈନ୍ୟଦଳ ଏହାକୁ ଦେଖୁଥିଲେ ମଧ୍ୟ ଅଣଦେଖା କରୁଥିଲେ । ସାଧାରଣ ଲୋକମାନଙ୍କର ଏହି ଖାଦ୍ୟ ପୁଡ଼ିଆଗୁଡ଼ିକ ଯେପରି ଜାହାଜରେ ନୌ-ସୈନିକମାନଙ୍କ ନିକଟରେ ପହଞ୍ଚିବ ସେଥିପାଇଁ ସେମାନେ ଚେଷ୍ଟା କରୁଥିଲେ ।"[୨୨]

ଜୋଷୀ ଭାରତୀୟ ନୌସେନା ବାହିନୀରେ ଥିବା ସୁବ୍ରତ ବାନାର୍ଜୀଙ୍କୁ ଆର୍.ଆଇ.ଏନ୍ ଧର୍ମଘଟ ସମ୍ପର୍କରେ ସମ୍ପୂର୍ଣ୍ଣ ତଥ୍ୟ ଦେବାକୁ ପ୍ରେରଣା ଦେଇଥିଲେ। ସେ ସୁବ୍ରତଙ୍କୁ ଯେଉଁମାନେ ଧର୍ମଘଟରେ ଯୋଗ ଦେଇଥିଲେ, ସେମାନଙ୍କ ସହିତ ଓ କେତେକ ବିଦ୍ରୋହୀ ନେତାଙ୍କ ସହିତ ପରିଚୟ କରାଇ ଦେଇଥିଲେ। କେବଳ ସେତିକି ମଧ୍ୟ ନଥିଲା। ସୁବ୍ରତ ଏହାକୁ ମନେକରି ଲେଖିଛନ୍ତି,

"ସେତେବେଳକୁ କଂଗ୍ରେସ କେନ୍ଦ୍ରରେ ମଧ୍ୟବର୍ତ୍ତୀ ସରକାରରେ ଯୋଗ ଦେଇ ସାରିଥାଏ । କ୍ଷମତା ହସ୍ତାନ୍ତର ପ୍ରକ୍ରିୟା ଆରମ୍ଭ ହୋଇଯାଇଥାଏ । ଭାରତୀୟ ସୈନ୍ୟବାହିନୀକୁ ପୁନର୍ଗଠନ କରିବା ପାଇଁ ଆଲୋଚନା ଆରମ୍ଭ ହୋଇଥାଏ। କମ୍ୟୁନିଷ୍ଟ ଦୃଷ୍ଟିକୋଣରୁ ଏ ସମ୍ପର୍କରେ ଏକ ସ୍ମାରକ ପତ୍ର ପ୍ରସ୍ତୁତ କରିବାପାଇଁ ଜୋଷୀ କହିଥାନ୍ତି.... ଜୋଷୀଙ୍କ ସହିତ ବାରମ୍ବାର ଆଲୋଚନା ବହୁତ ସାହାଯ୍ୟକାରୀ ହୋଇଥିଲା । ତତ୍‌ପଶ୍ଚାତ୍‌ରେ ପାର୍ଟି ଓ ଦେଶ ବହୁ ପରିବର୍ତ୍ତନ ମଧ୍ୟରେ ବୁଡ଼ିଯାଏ। ଏହିପରି ପରିସ୍ଥିତିରେ, ମୁଁ ଯେଉଁ ସ୍ମାରକପତ୍ର ପ୍ରସ୍ତୁତ କରିଥିଲି, ଏହା କୌଣସି କାର୍ଯ୍ୟରେ ଲାଗି ନ ଥିଲା ।"

ଏହା ଥିଲା ପି.ସି. ଜୋଷୀଙ୍କର ମାନସିକ ଗଭୀରତା ଓ ବ୍ୟାପକ ଦୃଷ୍ଟିଭଙ୍ଗୀ । ପାର୍ଟିର ସାଧାରଣ ସମ୍ପାଦକ ଭାବେ ପି.ସି. ଜୋଷୀ ସମଗ୍ର ଦେଶ ତୃତୀୟ ଶ୍ରେଣୀ ବଗିରେ କେବଳ ବସିବା ଜାଗାରେ ବସି ବୁଲିଥିଲେ, କାରଣ ସେ ସମୟରେ ତିନିଥାକିଆ ସଂରକ୍ଷଣ ବ୍ୟବସ୍ଥା ନଥିଲା । ସେ ବାରମ୍ବାର ଲୋକମାନଙ୍କ ସହିତ ରହିବାକୁ ଚେଷ୍ଟା କରୁଥିଲେ, ସେମାନଙ୍କର ପ୍ରଥା, ବଞ୍ଚିବାର ପ୍ରଣାଳୀ, ସଂସ୍କୃତି ଏବଂ ଭାରତୀୟ ସମାଜର ସବୁ ଶ୍ରେଣୀ ବିଶେଷ କରି ଆଦିବାସୀମାନଙ୍କର କଳା ସମ୍ପର୍କରେ ଜାଣିବାକୁ ଚେଷ୍ଟା କରୁଥିଲେ । ତାଙ୍କର ବିଚକ୍ଷଣ କଳ୍ପନା ପାର୍ଟି ଅଭିବୃଦ୍ଧିରେ ସାହାଯ୍ୟକାରୀ ହୋଇଥିଲା । ଏହା ଶୈଶବରୁ ଉଠି ଭାରତର ଶୃଙ୍ଖଳିତ ଗଣ ପାର୍ଟି ଭାବରେ ଠିଆ ହାଇଥିଲା ଏବଂ ୧୯୪୭ ମସିହା ବେଳକୁ ଏହାର ସଭ୍ୟ ସଂଖ୍ୟା ଥିଲା

---

୨୨. ପିପୁଲ୍ସ ଏଜ୍ - ରିପୋର୍ଟ ବାଇ ଅରୁଣ ବୋଷ, ମାର୍ଚ୍ଚ ୩, ୧୯୪୬ ।

୮୦ ହଜାର । ତାଙ୍କର ଭ୍ରମଣ ମଧ୍ୟ ଥିଲା ତାଙ୍କ ରାଜନୈତିକ ବିଚାରକୁ ଉପସ୍ଥାପିତ କରି ପ୍ରଚାର କରିବାର ଅଂଶବିଶେଷ । ସେ ଥରେ କହିଥିଲେ,

> "ପାର୍ଟିର ନୀତି ସମ୍ପର୍କରେ ଲୋକମାନେ ଜାଣିବାର ସବୁଠାରୁ ଶ୍ରେଷ୍ଠ ମାର୍ଗ ହେଉଛି ତୃତୀୟ ଶ୍ରେଣୀ ବଗିରେ ଯାତ୍ରା କରିବା ଏବଂ ପାର୍ଟି କାଗଜକୁ ଖୋଲି ପଢ଼ିବା। ଏହା ନିଶ୍ଚିତ ରୂପେ ଆଗ୍ରହ ସୃଷ୍ଟି କରିବ ଏବଂ ବହୁ ବିବିଧ ପ୍ରଶ୍ନ ଆସିବ । ତାହା ସାଥୀମାନଙ୍କୁ ଲୋକମାନଙ୍କର ମତ ଓ ପ୍ରଶ୍ନ ସମ୍ପର୍କରେ ଜାଣିବାର ସୁଯୋଗ ମିଳିବ ଏବଂ ସନ୍ଦେହମୋଚନ ଓ ଭ୍ରାନ୍ତଧାରଣାକୁ ଦୂର କରାଯାଇ ପାରିବ । ଭାରତୀୟ ଭ୍ରମଣକାରୀମାନେ ଜାଣିବା ପାଇଁ ଇଚ୍ଛୁକ ଏବଂ ବହୁ ସମୟରେ ଆଲୋଚନା ସମୟ ବିତାଇବା ପାଇଁ ଉଦ୍ଦିଷ୍ଟ ହୋଇଥାଏ ଯାହା ଫଳରେ ଚିନାବାଦାମ ଓ ଚେନାଚୁର ବିକ୍ରେତାମାନେ ସେମାନଙ୍କର ବିକ୍ରି ବୃଦ୍ଧି କରିପାରିବେ ।"[୨୩]

ଏହି ସମୟ ମଧ୍ୟରେ ଯୋଷୀ ପାର୍ଟି ଓ ଗଣ ସଂଗଠନ ନିର୍ମାତା ଭାବେ ଉଭା ହୋଇଥିଲେ । ଏକ ନୂତନ ସାଂସ୍କୃତିକ ପରିବେଶ ସୃଷ୍ଟି କରିବା ପାଇଁ ଶିଳ୍ପୀ, ବୁଦ୍ଧିଜୀବୀ, ଲେଖକ, ନାଟ୍ୟକାର ଯେଉଁମାନେ ଲୋକମାନଙ୍କର ଓ ପାର୍ଟିର ନିକଟବର୍ତ୍ତୀ ସେମାନଙ୍କୁ ଏକାଠି କରିବାର ତାଙ୍କର କ୍ଳାନ୍ତିହୀନ ପ୍ରଚେଷ୍ଟାକୁ ସମସ୍ତେ ମନେ ରଖିବେ । ସେ ଥିଲେ ନୂତନ ସାଂସ୍କୃତିକ ନବଜାଗରଣର ତ୍ରାଣକର୍ତ୍ତା, କିନ୍ତୁ କମ୍ୟୁନିଷ୍ଟ ନେତା ଭାବରେ ତାଙ୍କର ଏତିକି ମାତ୍ର ଯୋଗଦାନ କହିଲେ ତାଙ୍କୁ ନ୍ୟୂନ କରି ଦେଖିବା – କାରଣ ସେ ଏହାଠାରୁ ଅଧିକ କିଛି ଥିଲେ । ସେ ଥିଲେ ବାସ୍ତବରେ ଦୂରଦୃଷ୍ଟିସମ୍ପନ୍ନ – ବଙ୍ଗଳାରେ ଦୁର୍ଭିକ୍ଷ ପରେ ସେ ଯେପରି ଭାବରେ କୃଷକମାନଙ୍କର ଦୁରାବସ୍ଥାର ସମସ୍ୟାକୁ ନେଇ ପାରିଥିଲେ ଏବଂ ପାର୍ଟିକୁ ସକ୍ରିୟ କରି ଏକ ଦୁର୍ଦ୍ଦାନ୍ତ କୃଷକ ଆନ୍ଦୋଳନ ସଂଗଠିତ କରିଥିଲେ ଏବଂ ସେହି ସମୟରେ ଟ୍ରେଡ୍ ୟୁନିୟନ ସଂଗ୍ରାମକୁ ସମଗ୍ର ଦେଶରେ ବିକାଶ ହେବାରେ ସାହାଯ୍ୟ କରିଥିଲେ ତାହା ତାଙ୍କର ସାମାଜିକ ପରିବର୍ତ୍ତନ ପାଇଁ ଗଣ ରାଜନୈତିକ ସଂଗ୍ରାମର ସୁସଂହତ ତଥ୍ୟ ପ୍ରକାଶ । ଏହା ସହିତ ସେ ଜଣେ ସୁସଂଗଠକର ପରିଚୟ ଦେଇଥିଲେ ଏବଂ ଭାବ ଆଦାନ ପ୍ରଦାନକାରୀ ଭାବେ ଅସାଧାରଣ ଥିଲେ। ସେ ନିଜର ସାବଲୀଳ ଓ ସୁସଂହତ ଲେଖା ମାଧ୍ୟମରେ ଜଣେ ସଫଳ ସାମ୍ବାଦିକ ଭାବେ ଏବଂ ବ୍ୟକ୍ତିଗତ ସମନ୍ୱୟ ଜରିଆରେ ଲୋକମାନଙ୍କ ନିକଟରେ ପହଞ୍ଚି ପାରୁଥିଲେ ଏବଂ ସର୍ବୋପରି ସେ କମ୍ୟୁନିଷ୍ଟ ପାର୍ଟିକୁ ମୂଳରୁ କୌଣସି ସୁବିଧା ନ ଥାଇ ଆରମ୍ଭ କରି ଏକ ଶକ୍ତି ଭାବରେ ଅଶି ହଜାରରୁ ଅଧିକ ସଭ୍ୟରେ ଠିଆ କରି ପାରିଥିଲେ ।

---

୨୩. ମୋହିତ ସେନ୍ - ଏ ଟ୍ରାଭଲର ଆଣ୍ଡ ଦି ରୋଡ୍ : ଦି ଜର୍ଣ୍ଣି ଅଫ୍ ମ୍ୟାନ୍ ଇଣ୍ଡିଆନ୍ କମ୍ୟୁନିଷ୍ଟ ରୁପା ଆଣ୍ଡ କମ୍ପାନୀ, ନୂଆ ଦିଲ୍ଲୀ, ୨୦୦୩, ପୃଷ୍ଠା-୧୨୦ ।

# ୪

# ଯୋଷୀ ଓ ଜାତୀୟ ଆନ୍ଦୋଳନ

ପି.ସି. ଯୋଷୀ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ଦାୟିତ୍ୱ ଏପରି ସମୟରେ ନେଲେ ଯେତେବେଳେ ଆମର ଜାତୀୟ ଆନ୍ଦୋଳନ ଏକ ସନ୍ଧିକ୍ଷଣ ଦେଇ ଅତିକ୍ରମ କରୁଥିଲା । ସେ ପାର୍ଟିକୁ ଏକ ଗୁରୁତ୍ୱହୀନ କ୍ଷୁଦ୍ର ବାମ ଆଞ୍ଚଳିକ ଗୋଷ୍ଠୀରୁ ଉଠାଇ ଏକ କେନ୍ଦ୍ରୀୟ ସର୍ବଭାରତୀୟ ରାଜନୈତିକ ସଂଗଠନ ଗଢ଼ି ପାରିଲେ । ତାଙ୍କର ନେତୃତ୍ୱରେ ସିପିଆଇ ଜାତୀୟ ପ୍ରତିଷ୍ଠା ଲାଭ କଲା ଏବଂ ସେ ଜାତୀୟ ନେତା ଭାବରେ ସ୍ୱୀକୃତି ଲାଭ କଲେ । ତାଙ୍କର ଏକନିଷ୍ଠ ଦେଶାତ୍ମବୋଧ ସହିତ ଆନ୍ତର୍ଜାତୀୟତାବାଦର ସମ୍ମିଶ୍ରଣ ଏବଂ ଗଭୀର ଭାବରେ ଚିନ୍ତା କରିବାର ଓ କାର୍ଯ୍ୟ କରିବାର ଦକ୍ଷତା ତାଙ୍କୁ ଏକ ସ୍ୱତନ୍ତ୍ର ଧରଣର ସ୍ୱାଧୀନତା ସଂଗ୍ରାମୀ ଭାବେ ପରିଗଣିତ କରିଥିଲା । ଅନ୍ୟ କୌଣସି କମ୍ୟୁନିଷ୍ଟ ନେତାମାନଙ୍କର ଏପରି ରାଜନୈତିକ ବିଚାର ଓ ବ୍ୟକ୍ତିଗତ ଚୁମ୍ବକୀୟ ଶକ୍ତି ନ ଥିଲା । ଏହା ଅଣକମ୍ୟୁନିଷ୍ଟମାନଙ୍କୁ ଓ କମ୍ୟୁନିଷ୍ଟ ବିରୋଧୀମାନଙ୍କୁ ତାଙ୍କ ଆଡ଼କୁ ଆକର୍ଷିତ କରିଥିଲା ଯେଉଁମାନେ ତାଙ୍କର ନିକଟତମ ହୋଇଥିଲେ । ସିପିଆଇ ଅନ୍ୟାନ୍ୟ ବାମପନ୍ଥୀ ଦଳମାନଙ୍କ ସହିତ ଯଥା- କଂଗ୍ରେସ ସମାଜବାଦୀ ପାର୍ଟି, ବାମ କଂଗ୍ରେସ ଲୋକ, ଆଞ୍ଚଳିକ ବିପ୍ଳବୀ ଗୋଷ୍ଠୀ ସହିତ ନେତୃତ୍ୱରେ ଅଂଶୀଦାର ହୋଇଥିଲେ । କିନ୍ତୁ ସିପିଆଇ ଏକ ନିର୍ଣ୍ଣାୟକ ଭୂମିକା ପାଳନ କରିଥିଲା ଏବଂ ଏହାକୁ ସମସ୍ତେ ଗ୍ରହଣ କରିଥିଲେ ଓ ସ୍ୱୀକୃତି ପ୍ରଦାନ କରିଥିଲେ । ନିଃସନ୍ଦେହ ଭାବରେ ଏହା ଯୋଷୀଙ୍କ ଅବଦାନ । ପି.ସି. ଯୋଷୀଙ୍କର ଜୀବନ ଓ କାର୍ଯ୍ୟ ବିଭିନ୍ନ ସମସ୍ୟା ବିଶେଷ କରି ଆନ୍ତର୍ଜାତୀୟ ଓ ଜାତୀୟ ରାଜନୈତିକ ସମସ୍ୟାରେ ଭରପୂର । ପାର୍ଟି ନେତୃତ୍ୱ ଅତ୍ୟନ୍ତ ସାଙ୍ଘାତିକ ଆହ୍ୱାନର ସମ୍ମୁଖୀନ ହୋଇଥିଲେ । ଏକ ପକ୍ଷରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ମୁକ୍ତି ସଂଗ୍ରାମ ଓ ଅନ୍ୟପକ୍ଷରେ ଗଣତନ୍ତ୍ର ଓ ସମାଜବାଦକୁ ଫାସିବାଦ ଓ ନାଜିବାଦ ଆକ୍ରମଣରୁ ସୁରକ୍ଷା । ଯୋଷୀ ଫାସିବାଦକୁ ସାମ୍ରାଜ୍ୟବାଦର ସବୁଠାରୁ ନିକୃଷ୍ଟ ରୂପ ବୋଲି ବିଚାର କରୁଥିଲେ । ସିପିଆଇ ଯାହାକି ଭୂମିଗତ ଭାବରେ ରହି କାର୍ଯ୍ୟ କରୁଥିଲା ଯୁଦ୍ଧ ବିଷୟରେ ପରିଷ୍କାର ରାଜନୈତିକ ନିର୍ଣ୍ଣୟ ନେବା କଷ୍ଟସାଧ୍ୟ ଥିଲା ।

ଦେଓଲି କ୍ୟାମ୍ପରେ ଅଟକବନ୍ଦୀ ଥିବା ସାଥୀମାନେ - ରଣଦିଭେ, ଡାଙ୍ଗେ ଏବଂ ଅଜୟ

ଘୋଷଯୁଦ୍ଧକୁ ଜନଯୁଦ୍ଧ ଭାବରେ ଚିତ୍ରିତ କରି ଲୁଚାଛପାରେ ଏକ ଦସ୍ତାବିଜ ପ୍ରକାଶ କଲେ ଏବଂ ଯୁଦ୍ଧ ପ୍ରଚେଷ୍ଟାକୁ ବିନା କାରଣରେ ସମର୍ଥନ କରିବାକୁ ଯୁକ୍ତି କଲେ । ଜୋଷୀଙ୍କର ତତ୍‌କ୍ଷଣାତ୍ ପ୍ରତିକ୍ରିୟା ନକରାତ୍ମକ ଥିଲା । ସେ ବହୁ ପରେ ଏହି ଦସ୍ତାବିଜ ସମ୍ପର୍କରେ ଲେଖିଥିଲେ,

> "ଏହା ମୋ ତଣ୍ଟିରେ ଗଳିଲା ନାହିଁ । ମୁଁ ଦେଓଲି ଦସ୍ତାବିଜ ଓ ଶାସକୀୟ ମାର୍ଗ ମଧ୍ୟରେ କୌଣସି ପ୍ରଭେଦ ଦେଖିବାକୁ ପାଇଲି ନାହିଁ ।"[୧]

କଂଗ୍ରେସର ଜାତୀୟ ନେତୃତ୍ୱକୁ ଅତି କଟୁଭାଷାରେ ଆକ୍ରମଣ କରି ଦେଓଲି କ୍ୟାମ୍ପର ସାଥୀମାନେ ଏକ ଦସ୍ତାବିଜ ପ୍ରସ୍ତୁତ କରିଥିଲେ ଯେହେତୁ ସୋଭିଏତ୍ ୟୁନିୟନ ଉପରେ ନାଜି ଆକ୍ରମଣ ପରେ ମଧ୍ୟ କଂଗ୍ରେସ ଯୁଦ୍ଧ ବିରୋଧୀ ମନୋବୃତ୍ତି ପୋଷଣ କରୁଥିଲା । ତଥାପି ବ୍ରିଟିଶ୍ କମ୍ୟୁନିଷ୍ଟ ନେତାମାନେ ପି.ସି. ଜୋଷୀ ଓ ଡକ୍ଟର ଅଧିକାରୀଙ୍କୁ ଦେଓଲି କ୍ୟାମ୍ପ ଦସ୍ତାବିଜର ସ୍ୱରକୁ ନରମ କରିବା ପାଇଁ ନିର୍ଦ୍ଦେଶ ଦେଲେ ଯାହା ଫଳରେ ଏହା ଦେଶର ଭାବାବେଗକୁ ଏବଂ ଯେଉଁମାନେ ପାର୍ଟିର ଚାରିକଡ଼ରେ ଅଛନ୍ତି ସେମାନଙ୍କୁ ନିୟନ୍ତ୍ରଣ କରିପାରିବ। ଯୁଦ୍ଧ ହେବା କାରଣରୁ ବ୍ରିଟିଶ୍ କମ୍ୟୁନିଷ୍ଟ ପାର୍ଟି ସହିତ ପୁରୁଣା ସମ୍ପର୍କ ଭାଙ୍ଗି ଯାଇଥିଲା ଏବଂ ପାର୍ଟିକୁ ଭୂମିଗତ ହେବାକୁ ପଡ଼ିଥିଲା । "ଆମ ଛାତି ଉପରେ ବ୍ରିଟିଶ୍ ସାମ୍ରାଜ୍ୟବାଦ ମାଡ଼ିବସି ରହିଥିବା କାରଣରୁ ସାମ୍ରାଜ୍ୟବାଦ ବଦଳରେ ଜନଗଣଙ୍କ ଯୁଦ୍ଧ ସ୍ଲୋଗାନ ଆଡ଼କୁ ଚଳିବା ଏତେ ସହଜ ନଥିଲା।"[୨] ଜୋଷୀ ଏହାକୁ ସ୍ୱୀକାର କରିଥିଲେ । ସେ ସେହି ଲେଖାରେ ଲେଖିଥିଲେ,

> "ମୋ ଅପେକ୍ଷା ସାଥୀ ଅଧିକାରୀ ଅନ୍ଧ ଭାବରେ ଆନ୍ତର୍ଜାତୀୟ ମାର୍ଗ ପ୍ରତି ଥିଲେ ବିଶ୍ୱସ୍ତ ଏବଂ ସେ ଯେତିକି ନମ୍ର ଥିଲେ, ସେତିକି ଥିଲେ କ୍ଳାନ୍ତିହୀନ। ଆରପିଡ଼ିଙ୍କ ପରେ ମୁଁ ତାଙ୍କୁ ଅତ୍ୟଧିକ ସମ୍ମାନ କରୁଥିଲି । ନେତୃତ୍ୱରେ ଥିବାବେଳେ, ମୁଁ ମୋର ସମସ୍ତ ଯୁକ୍ତି ଉପସ୍ଥାପିତ କରି ତାଗିଦ କରେ, ତାଙ୍କୁ ଗ୍ରହଣ କରୁଥିଲି ଏଇ ବିଶ୍ୱାସରେ ଯେ ତାଙ୍କ ବିଚାର ମୋ ଠାରୁ ଅଧିକ ଠିକ୍ ।"[୩]

ଏହି ଦସ୍ତାବିଜ ନଭେମ୍ବର ୧୯୪୧ ମସିହାରେ "ସ୍ୱାଧୀନତା ଆଡ଼କୁ ମାଡ଼ିବା" ଶୀର୍ଷକରେ ହଂସରାଜ ନାମରେ ପ୍ରକାଶ ପାଇଥିଲା । ପି.ସି. ଜୋଷୀଙ୍କର ଏହା ଭୂମିଗତ ନାମ ଥିଲା । ଏହାର ମୁଖବନ୍ଧରେ ଲେଖା ଯାଇଥିଲା,

> "ସିଙ୍ଗାପୁରର ପତନ ଯେପରି ଗତି ପରିବର୍ତ୍ତନର ନିର୍ଣ୍ଣାୟକ ଠିକ୍ ଫ୍ରାନ୍ସର ପତନ ପରି। ସିଙ୍ଗାପୁରର ଅତି ଶୋଚନୀୟ ପରାଜୟର ଫଳ ହେଉଛି ଫାସିବାଦ ବିରୋଧୀ

---

୧. ପି.ସି. ଜୋଷୀ - ରଜନୀ ପାମେ ଦତ୍ତ ଆଣ୍ଡ ଇଣ୍ଡିୟାନ୍ କମ୍ୟୁନିଷ୍ଟ ।

୨. ତତ୍ରୈବ।

୩. ତତ୍ରୈବ।



ସିପିଆଇର ପ୍ରଥମ ଅଧିବେଶନ, ବମ୍ବେ, ୧୯୪୩



କେନ୍ଦ୍ରୀୟ ସାଂସ୍କୃତିକ ଦଳ



ପଢ଼ା ଟେବୁଲରେ



ପି.ସି. ଯୋଷୀ ଓ କଳ୍ପନା ଯୋଷୀ, ୧୯୪୩



ସୁନୀଲ ଜାଣହାଙ୍କ ଦ୍ୱାରା ଉତ୍ତୋଳିତ ପି.ସି. ଜୋଷୀଙ୍କ ପ୍ରସିଦ୍ଧ ଫଟୋ

ପ୍ରଶ୍ନରେ ମୁହାଁମୁହିଁ ଚାହିଁବା, ଉପନିବେଶବାଦୀ ମୁକ୍ତି ବିଷୟକୁ ନେବା ଏବଂ ଭାରତୀୟମାନଙ୍କର ସମସ୍ତ ସମସ୍ୟାକୁ ପୂର୍ବ ଅପେକ୍ଷା ତ୍ୱରାନ୍ୱିତ କରିବା, ସେ ସମୟର ସମସ୍ୟା ଭାରତ ହିଁ ହେବା - ଯାହାକୁ ଆଦୌ ଘୁଞ୍ଚାଯାଇ ପାରିବ ନାହିଁ, ସ୍ୱାଧୀନତା ପାଇବାକୁ ଭଲ ପାଉଥିବା ସମସ୍ତ ଦେଶମାନଙ୍କର ଗଭୀର ସଂକଟ ସମୟ ବ୍ୟତୀତ। ଦକ୍ଷିଣ ପୂର୍ବ ଜାପାନ ଆଧିପତ୍ୟ ବିସ୍ତାର କରି ରହିବା ସମୟରେ, ଉଭୟ ସମୁଦ୍ର ଓ ଆକାଶ ପଥରେ, ସମଗ୍ର ଭାରତ ମହାସାଗର ଉନ୍ମୁକ୍ତ ହୋଇ ଛିଡ଼ା ହୋଇଛି। ଭାରତ ପ୍ରତି ବିପଦ ଏତେ ମାତ୍ରାରେ ବଢ଼ିଯାଇଛି ଯେ, ଜାପାନମାନଙ୍କର ଆକ୍ରମଣ ଅବଶ୍ୟମ୍ଭାବୀ ଜଣାଯାଉଛି ଏବଂ ଏହା କେବଳ କିଛି ସମୟର ପ୍ରଶ୍ନ ।"[୪]

ଯଦିଓ ଯୋଶୀଙ୍କର ଏହି ପ୍ରଚାର ପତ୍ର ପାର୍ଟି ସାଥୀମାନଙ୍କ ପାଇଁ ପାର୍ଟି ଭିତରେ ବାଇବେଲ ହୋଇଥିଲା, ଜନଯୁଦ୍ଧର କୌଶଳ ଥିଲା ହିଟଲରର ଫାସିବାଦ ବିରୁଦ୍ଧରେ ଯୁଦ୍ଧ ଯାହାକୁ ଲୋକମାନେ ସାଧାରଣ ଭାବେ ବୁଝିବାରେ ଭୁଲ୍ ଧାରଣା କଲେ। ଯେତେବେଳେ ଭାରତ ଉପରେ ଜାପାନ ଆକ୍ରମଣର ବାଦଲ ଛାଇ ହୋଇଗଲା, ଯୋଶୀଙ୍କୁ ନୂତନ ପରିସ୍ଥିତିରେ ପୁରୁଣା ଦେଓଲି ଦସ୍ତାବିଜ ବଦଳରେ ଏକ ନୂତନ ନୀତି ସମ୍ପର୍କିତ ଦସ୍ତାବିଜ ଉପସ୍ଥାପିତ କରିବାକୁ କୁହାଗଲା । ଏହା ତାଙ୍କ ପାଇଁ ଏକ ସୁଯୋଗ ଥିଲା "ଯେଉଁ ନୀତି ଗ୍ରହଣ କରାଯାଇଛି, ସେଥିରେ ଉନ୍ନତି କରି ଅଧିକ ପ୍ରୀତିପଦ କରିବା ପାଇଁ" ଯାହା ଜାତୀୟ ଭାବାବେଗ ପାଇଁ ପ୍ରଯୁଜ୍ୟ ଏବଂ ଏହି ସମୟରେ ଯୋଶୀ ଏକ ନୂତନ ଆହ୍ୱାନ ଦେଲେ "ଜାତୀୟ ସୁରକ୍ଷା ପାଇଁ, ଜାତୀୟ ଏକତା ଓ ଜାତୀୟ ସରକାର।"[୫] ଯୋଶୀ ଏହାପରେ ଏକ ପୁସ୍ତକ ରଚନା କଲେ ("ଦି ଇଣ୍ଡିଆନ କମ୍ୟୁନିଷ୍ଟ ପାର୍ଟି; ଇଟ୍ସ ପଲିସି ଆଣ୍ଡ ୱାର୍କ ଇନ୍ ଦ ୱାର ଅଫ୍ ଲିବରେସନ") ଭାରତୀୟ କମ୍ୟୁନିଷ୍ଟ ପାର୍ଟି - ଏହାର ନୀତି ଓ କାର୍ଯ୍ୟ;- ମୁକ୍ତିଯୁଦ୍ଧ ସମୟରେ । ୧୯୪୨ ସେପ୍ଟେମ୍ବର ମାସରେ ଏହା ପ୍ରକାଶିତ ହେଲା ଏବଂ ଏହାର ମୁଖବନ୍ଧ ଲେଖିଥିଲେ ହ୍ୟାରି ପଲ୍ଲିଟ୍ । ଏଥିରେ ଯୋଶୀ ଲେଖିଥିଲେ :

"ସୋଭିଏତ୍ ୟୁନିୟନ ଉପରେ ଆକ୍ରମଣ ସାମ୍ରାଜ୍ୟବାଦୀ ଯୁଦ୍ଧର ଚରିତ୍ରକୁ ବଦଳାଇ ଏହାକୁ ଜନଯୁଦ୍ଧରେ ପରିବର୍ତ୍ତନ କରିଦେଲା । ସୋଭିଏତ୍ ୟୁନିୟନର ବିଜୟ ବିଶ୍ୱବ୍ୟାପୀ ଜନଗଣଙ୍କର ମୁକ୍ତି ସଂଗ୍ରାମର ଗ୍ୟାରେଣ୍ଟି ହୋଇଗଲା ।"[୬]

---

୪. ହଂସରାଜ, ଫରୱାର୍ଡ ଟୁ ଫ୍ରିଡ଼ମ୍ (ଇଣ୍ଡିଆ ଇନ୍ ଦି ୱାର୍ ଅଫ୍ ଲିବରେସନ) ଆନନ୍ଦ ପ୍ରେସ୍, ନିଉ ଦିଲ୍ଲୀ, ନଭେମ୍ବର, ୧୯୪୧- ପୃଷ୍ଠା ୧୩।

୫. ପି.ସି.ଯୋଶୀ, (ରଜନୀ ପାମେ ଦତ୍ତ) ପୃଷ୍ଠା-୧୩।

୬. ପି.ସି.ଯୋଶୀ, ଦି ଇଣ୍ଡିଆନ୍ କମ୍ୟୁନିଷ୍ଟ ପାର୍ଟି: ଇଟସ୍ ପଲିସି ଆଣ୍ଡ ୱାର୍କ ଇନ୍ ଦି ୱାର୍ ଅଫ୍ ଲିବରେସନ୍, ସିପିଜିବି ପବ୍ଲିକେଶନ, ଲଣ୍ଡନ, ସେପ୍ଟେମ୍ବର ୧୯୪୨, ପୃଷ୍ଠା-୩।

ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କର ଫାସିବାଦକୁ ପ୍ରୋତ୍ସାହନ ଦେବାର ବିଶ୍ୱାସଘାତ ଭୂମିକା ସମ୍ପର୍କରେ ସୂଚନା ଦେଇ ସେ ବୁଝାଇଥିଲେ,

ବ୍ରିଟିଶ୍ ଓ ଆମେରିକାର ସାମ୍ରାଜ୍ୟବାଦୀମାନେ ଏହି ବିପଦ ପ୍ରତି ଅନ୍ଧ ନ ଥିଲେ, କିନ୍ତୁ ସେମାନେ ଜାଣିଶୁଣି ୟୁରୋପ ଓ ପୂର୍ବ ରାଷ୍ଟ୍ରମାନଙ୍କରେ ଏବଂ ସୋଭିଏତ୍ ୟୁନିୟନ ବିରୁଦ୍ଧରେ ଏହାକୁ ପ୍ରତି-ବିପ୍ଳବ ଭାବେ ଏହି ଫାସିବାଦ ଶକ୍ତିକୁ ବୃଦ୍ଧି କରିବାକୁ ଦେଲେ। ବିଶ୍ୱର କର୍ତ୍ତା ଭାବେ, ପ୍ରତିକ୍ରିୟା ଶକ୍ତିକୁ ପ୍ରୋତ୍ସାହନ ଦେଇ ଏବଂ ବିଶ୍ୱବ୍ୟାପୀ ଉଠୁଥିବା ଜନଗଣଙ୍କ ଆନ୍ଦୋଳନ ବିରୁଦ୍ଧରେ ଏହାକୁ ନିକ୍ଷେପ କରି ସେମାନେ 'ବଡ଼ପଣ ଓ ମାରାତ୍ମକ' ଖେଳ ଖେଳୁଥିଲେ । ଲୋକମାନଙ୍କର ସ୍ୱାର୍ଥ ଓ ସୋଭିଏତ୍ ୟୁନିୟନ ବିରୁଦ୍ଧରେ ସେମାନେ ଏହିପରି ଭାବରେ ନିଜର ଅନ୍ତର୍ଦ୍ୱନ୍ଦ୍ୱକୁ ସମାଧାନ କରିବାକୁ ଚେଷ୍ଟା କରୁଥିଲେ ।"[୭]

ଏହି ନୀତିର ଉଦ୍ଦେଶ୍ୟ ହେଉଛି ଫାସିବାଦକୁ ଶକ୍ତିଶାଳୀ କରିବା ଏବଂ ସୋଭିଏତ୍ ୟୁନିୟନ ଉପରେ ଦ୍ୱିତୀୟ ବିଶ୍ୱଯୁଦ୍ଧକୁ ଲଦିଦେବା । ଫାସିବାଦର ଏହି ଦାନବୀୟ ନୀତିକୁ ଓ ଫାସିବାଦ ସପକ୍ଷ ପ୍ରତିକ୍ରିୟାଶୀଳମାନଙ୍କୁ ପରାସ୍ତ କରିବା ପାଇଁ ଜନଗଣଙ୍କ ଆନ୍ଦୋଳନର ଆଗୁଆ ବାହିନୀ ବିଶ୍ୱବ୍ୟାପୀ ଫାସିବାଦ-ବିରୋଧୀ ଶାନ୍ତିଫ୍ରଣ୍ଟ ଗଠନ କରିବା ଆବଶ୍ୟକ ।[୮]

ଭାରତ ପାଇଁ ଏହି ନୂତନ ପରିସ୍ଥିତିରେ ପାର୍ଟିର ଭୂମିକା ସମ୍ପର୍କରେ, ସେ ଯୁକ୍ତିଯୁକ୍ତ ଭାବରେ ବୁଝାଇଥିଲେ :

"ଉପନିବେଶରେ ଥିବା ଭାରତ ଏବଂ ପ୍ରାଚ୍ୟ ରାଷ୍ଟ୍ରର ଲୋକମାନେ ଯେଉଁମାନେ ନିଜ ଅନୁଭୂତିରୁ ଶିକ୍ଷାଲାଭ କରୁଛନ୍ତି ଯେ ସ୍ୱାଧୀନତା କେବେହେଲେ ସାମ୍ରାଜ୍ୟବାଦୀଙ୍କ ହାତରୁ ଦାନରେ ଆସିପାରିବ ନାହିଁ ଏବଂ ଏହା ମଧ୍ୟ ଭଲଭାବରେ ଜାଣିଛନ୍ତି ଯେ ଏହା ମଧ୍ୟ ଜାପାନୀ ଫାସିଷ୍ଟମାନଙ୍କ ରକ୍ତରଞ୍ଜିତ ତରବାରୀ ମୁନରେ ମିଳିପାରିବ ନାହିଁ।"[୯]

ଏହାକୁ ଆହୁରି ପ୍ରାଞ୍ଜଳ କରି ସେ ଲେଖିଥିଲେ :

"ଆମେ ଏହି ଯୁଦ୍ଧକୁ ବିରୋଧ କରି ଆମର ସ୍ୱାଧୀନତା ପାଇଁ ସଂଗ୍ରାମ କରିପାରିବା ନାହିଁ । ଏହା କରିବା ଦ୍ୱାରା ଆମେ ଆମର ନିଜର ତଣ୍ଟିକୁ କାଟିବା । ଜାପାନୀ ଫାସିଷ୍ଟମାନଙ୍କର କାର୍ଯ୍ୟକୁ ସେମାନଙ୍କ ପାଇଁ କରି ଆମ୍ଭେମାନେ ବ୍ରିଟିଶ୍ ସାମ୍ରାଜ୍ୟବାଦକୁ

---

୭. ତତ୍ରୈବ, ପୃଷ୍ଠା-୪ ।

୮. ତତ୍ରୈବ ।

୯. ତତ୍ରୈବ, ପୃଷ୍ଠା-୬ ।

ଆଦୌ ଆଘାତ କରିପାରିବା ନାହିଁ । ଆମ୍ଭେମାନେ ମଧ୍ୟ ଯୁଦ୍ଧ ବାହାରେ ରହିପାରିବା ନାହିଁ। କାରଣ ଆମେ ବ୍ରିଟିଶ୍ ସାମ୍ରାଜ୍ୟବାଦର ଗୋଲାମ। ଯଦି ଆମେ ଏହି ଯୁଦ୍ଧ ସମ୍ପର୍କରେ ନିରପେକ୍ଷତା ଅବଲମ୍ବନ କରିବା, ତେବେ ଆମେ ଯେଉଁଠି ଅଛେ ସେଇଠି ରହିବା - ବ୍ରିଟିଶ୍ ସାମ୍ରାଜ୍ୟବାଦ ଅଧୀନରେ ଏବଂ ନିଃସହାୟ ଭାବରେ ଜାପାନୀ ଫାସିବାଦଠାରୁ ନିକୃଷ୍ଟ ଭାଗ୍ୟ ପାଇବାକୁ ଅପେକ୍ଷା କରିବା । ଯୁଦ୍ଧ ପ୍ରତି ନିରପେକ୍ଷତା ଅବଲମ୍ବନ ଆମକୁ ଭାରତର ସ୍ୱାଧୀନତା ଆଡ଼କୁ ନ ନେଇ ଜାପାନୀ ଶିଆଳମାନଙ୍କର ରାଜତ୍ୱ ଆଡ଼କୁ ନେଇଯିବ ।"[୧୦]

ଜୋଷୀ କେବଳ ଜାପାନୀ ଫାସିବାଦର ପ୍ରାଚ୍ୟ ସୀମାରେ ବିପଦର ବ୍ୟାପକ ବିଭୀଷିକାକୁ ଦର୍ଶାଇ ନ ଥିଲେ ବରଂ ଏକ ଜାତୀୟ କୌଶଳ ପ୍ରସ୍ତୁତ କରିଥିଲେ ଦ୍ୱୈତ ଶତ୍ରୁକୁ ସାମ୍ନା କରିବା ପାଇଁ - ସାମ୍ରାଜ୍ୟବାଦ ଓ ଫାସିବାଦ । ଏହାର ଶେଷ ଲକ୍ଷ୍ୟ ଥିଲା ଭାରତର ସ୍ୱାଧୀନତା ।

କମ୍ୟୁନିଷ୍ଟ ପାର୍ଟି ମତରେ ଜନଗଣ ଅଗ୍ରଗାମୀ ମାର୍ଗକୁ ତିନିଗୋଟି ଆହ୍ୱାନରେ ସମାପ୍ତ କରାଯାଇପାରେ - ସ୍ଥିତାବସ୍ଥାକୁ ଭାଙ୍ଗି ଚୁରମାର କର, ଜାତୀୟ ଏକତାକୁ ଦୃଢ଼ଭାବରେ ଘୋଷଣା କର, ଜନଗଣଙ୍କୁ ଏକତ୍ରୀତ କର ।"[୧୧]

ଜୋଷୀ ସେହି ଲେଖାରେ ଉଲ୍ଲେଖ କରିଥିଲେ :

"କମ୍ୟୁନିଷ୍ଟ ପାର୍ଟି କଂଗ୍ରେସ, ମୁସ୍‌ଲିମ୍ ଲିଗ୍, ଟ୍ରେଡ୍ ୟୁନିୟନ କଂଗ୍ରେସ, ସର୍ବଭାରତୀୟ କୃଷକ ସଭା ଏବଂ ଅଖିଳ ଭାରତ ଛାତ୍ର ସଂଘ ସହିତ ବ୍ୟାପକ ଜନଗଣଙ୍କର ଏକତା ପାଇଁ ଯୁକ୍ତ ଫ୍ରଣ୍ଟ ଗଠନ ନିମିତ୍ତ କାର୍ଯ୍ୟ କରେ । ଜାତୀୟ କଂଗ୍ରେସ ହେଉଛି, ଆମ ଲୋକମାନଙ୍କର ଅଗ୍ରଣୀ ରାଜନୈତିକ ସଂଗଠନ । ଏହା ଭାରତୀୟ ଲୋକମାନଙ୍କର ସର୍ବବୃହତ ଜାତୀୟ ଏକତାର ପ୍ରତିନିଧିତ୍ୱ କରେ ଯାହା ଏ ପର୍ଯ୍ୟନ୍ତ ପ୍ରାପ୍ୟ ହୋଇଛି। ଆମ ଦେଶରେ ଥିବା ଦ୍ୱିତୀୟ ବୃହତ୍ତମ ସମ୍ପ୍ରଦାୟର ରାଜନୈତିକ ସଙ୍ଗଠନ ହେଉଛି ମୁସ୍‌ଲିମ୍ ଲିଗ୍ । ଟ୍ରେଡ୍ ୟୁନିୟନଗୁଡ଼ିକ, କୃଷକ ସଭାଗୁଡ଼ିକ, ଛାତ୍ର ସଂଘ ସଂଗ୍ରାମୀ ସଙ୍ଗଠନ ଭାବେ ଜନ୍ମଲାଭ କରିଛି ଏବଂ ଦେଶର ସଂଗ୍ରାମଶୀଳ ଶକ୍ତି ଭାବରେ ଏ ପର୍ଯ୍ୟନ୍ତ କାର୍ଯ୍ୟ କରୁଛି । ଏହି ଲୋକପ୍ରିୟ ସଂଗଠନମାନଙ୍କର ବ୍ୟାପକ ଏକତା ଗୋଟିଏ ଯୁଗ୍ମ ଫ୍ରଣ୍ଟରେ କରାଗଲେ, ତାହା ଭାରତର ଏକତା ପାଇଁ ସବୁଠାରୁ ବ୍ୟାପକ ଲୋକ ସଂଗ୍ରହ ହେବ ।"[୧୨]

---

୧୦. ତତ୍ରୈବ, ପୃଷ୍ଠା-୧୩।

୧୧. ତତ୍ରୈବ, ପୃଷ୍ଠା-୧୫।

୧୨. ତତ୍ରୈବ, ପୃଷ୍ଠା-୧୬।

ଆମ୍ଭେ ସମସ୍ତ ରାଜନୈତିକ ଦଳ ଏବଂ ସମସ୍ତ ଦେଶପ୍ରେମୀ ଯେଉଁମାନେ ଭାରତର ସ୍ୱାଧୀନତା ନିମନ୍ତେ ଛିଡ଼ା ହୋଇଛନ୍ତି, ସେମାନଙ୍କୁ ନିବେଦନ କରୁ :

ଜନଯୁଦ୍ଧକୁ ଲୋକମାନଙ୍କ ହାତକୁ ନେବା ପାଇଁ ଏକାଠି କର ।
ଜାତୀୟ ସରକାର ପାଇଁ ଓ ଗଣତାନ୍ତ୍ରିକ ସ୍ୱତନ୍ତ୍ରତା ପାଇଁ ସଂଗ୍ରାମ କରିବାକୁ ଏକାଠି କର।
ଲୋକମାନଙ୍କୁ ସୁରକ୍ଷା ପ୍ରଦାନ କରିବାକୁ ଏକାଠି କର ।
ଆମର ପ୍ରିୟ ଦେଶକୁ ରକ୍ଷାକରିବା ପାଇଁ ଏକାଠି କର ।
ଜନଯୁଦ୍ଧ ଓ ଭାରତର ସ୍ୱାଧୀନତାର ସଫଳତା ପାଇଁ ଏକାଠି କର ।[୧୩]

ଯୁଦ୍ଧ ପୂର୍ବରୁ, କଂଗ୍ରେସ ନେତୃତ୍ୱରେ ଥିବା ଉଭୟ ବାମ ଓ ଦକ୍ଷିଣପନ୍ଥୀମାନେ ସିପିଆଇ ଦେଶଦ୍ରୋହୀ ଭାବରେ କାର୍ଯ୍ୟ କରୁଛି ବୋଲି ଅଭିଯୋଗ କରୁଥିଲେ । ଦକ୍ଷିଣପନ୍ଥୀ ମାନଙ୍କର ନେତୃତ୍ୱ ନେଇଥିଲେ ସରଦାର ପଟେଲ । ପି.ସି. ଯୋଶୀ ତାଙ୍କର ବର୍ଣ୍ଣନା କରିଥିଲେ, ପାରମ୍ପରିକ ରକ୍ଷଣଶୀଳ ଜାତୀୟବାଦୀ, ବାମପନ୍ଥୀମାନଙ୍କର ନେତୃତ୍ୱ ନେଉଥିଲେ, ଫରୱାଡ଼ ବ୍ଲକ୍ ବ୍ୟତୀତ କଂଗ୍ରେସ ସମାଜବାଦୀ ଯଥା ଜୟପ୍ରକାଶ ନାରାୟଣ । କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ପି.ସି. ଯୋଶୀ ମହାତ୍ମା ଗାନ୍ଧିଙ୍କୁ କେତେଥର ଭେଟିଥିଲେ ଓ ତାଙ୍କୁ ଦୋହଲାଇ ଦେବାକୁ ଚେଷ୍ଟା କରିଥିଲେ ଏବଂ ପାର୍ଟିର ରାଜନୈତିକ ମାର୍ଗର ସଠିକତା ସମ୍ପର୍କରେ ବୁଝାଇବାକୁ ଚେଷ୍ଟା କରିଥିଲେ କିନ୍ତୁ ଗାନ୍ଧିଜୀଙ୍କର ମନୋଭାବରେ କୌଣସି ମୌଳିକ ପରିବର୍ତ୍ତନ ହୋଇନଥିଲା । ଏହାର ଫଳ ହେଲା 'ଗାନ୍ଧି-ଯୋଶୀ ଆଦାନ-ପ୍ରଦାନ'ର ପ୍ରକାଶନ ଯାହା ଦେଶବ୍ୟାପୀ ଗରମ ରୁଟି ବିକ୍ରି ହେବାପରି ବିକ୍ରି ହୋଇଥିଲା ଏବଂ ସମସ୍ତ ମୁଖ୍ୟ ଭାରତୀୟ ଭାଷାରେ ଅନୁବାଦିତ ହୋଇଥିଲା । ବାସ୍ତବରେ ଯୋଶୀଙ୍କର ଗାନ୍ଧିଜୀଙ୍କ ସହିତ ଦୀର୍ଘ ଆଦାନ-ପ୍ରଦାନ ମାଧ୍ୟମରେ ଯୋଶୀ "ଜନଯୁଦ୍ଧ" କ'ଣ ତାହାର ଚର୍ଚ୍ଚା କରିଥିଲେ । ସେ ଲେଖିଥିଲେ, "ଜନଯୁଦ୍ଧରେ ଗଣର ଅର୍ଥ ହେଉଛି କୌଣସି ବ୍ୟତିରେକ ନ ଥାଇ ବିଶ୍ୱବ୍ୟାପୀ ଜନଗଣ । ସେ ବିଶ୍ୱକୁ ଦୁଇଟି କ୍ୟାମ୍ପରେ ବିଭକ୍ତ କରିଥିଲେ - ଗୋଟିଏ ହେଉଛି ସ୍ୱାଧୀନତା ଓ ଗଣତନ୍ତ୍ର ଏବଂ ଅନ୍ୟଟି ହେଉଛି ଫାସିବାଦ ଓ ସାମ୍ରାଜ୍ୟବାଦୀ ଦାସତ୍ୱ । ସେ ନିମ୍ନପ୍ରକାରେ ଯୁକ୍ତି କରିଥିଲେ,

"ପ୍ରତ୍ୟେକ ଲୋକ ନିଜକୁ ନିଜେ ବାଛିବ ସେ କେଉଁ କ୍ୟାମ୍ପ ସହିତ ଛିଡ଼ା ହେବ, କାହାର ବିଜୟ ଇଚ୍ଛା କରିବ । ପ୍ରତ୍ୟେକ ରାଷ୍ଟ୍ରରେ ଥିବା ଲୋକମାନଙ୍କର ଭାଗ୍ୟ ଏବଂ ସମଗ୍ର ବିଶ୍ୱର ଭାଗ୍ୟ କେଉଁ ପକ୍ଷ ଜୀବିତ ତାହା ଉପରେ ନିର୍ଭର କରେ।"

ଯଦି ଫାସିବାଦ ପକ୍ଷମାନେ ଜିତନ୍ତି, ତେବେ ତାହା ହେବ ବିଶ୍ୱର ସବୁ ରାଷ୍ଟ୍ର ଉପରେ ଫାସିଷ୍ଟ-ସାମ୍ରାଜ୍ୟବାଦୀ ଦାସତ୍ୱ ଏବଂ ସମସ୍ତଙ୍କର ସ୍ୱାଧୀନତାର ପରିସମାପ୍ତି। ଯଦି ମିତ୍ର ପକ୍ଷ ଜିତନ୍ତି, ତେବେ ସ୍ୱାଧୀନତାର ଉଦ୍ଦେଶ୍ୟ ବଞ୍ଚିଯିବ । ପ୍ରତ୍ୟେକ ରାଷ୍ଟ୍ର

୧୩. ତତ୍ରୈବ, ପୃଷ୍ଠା-୩୨ ।

ନିଜ ଦେଶ ପାଇଁ ଓ ସମଗ୍ର ବିଶ୍ୱର ମୁକ୍ତି ପାଇଁ ଏହି କ୍ୟାମ୍ପରେ ରହି ସଂଗ୍ରାମ କରିବେ। ପ୍ରାଚ୍ୟର ଦାସତ୍ୱ ବନ୍ଧନରେ ବାନ୍ଧି ହୋଇ ରହିଥିବା ରାଷ୍ଟ୍ରମାନେ, ଅବଶ୍ୟ, ଅତ୍ୟନ୍ତ କଠିନ ପରିସ୍ଥିତି ମଧ୍ୟରେ ରହିଛନ୍ତି । କିପରି ସେମାନେ ସେମାନଙ୍କର ହୃଦୟ ମଧ୍ୟରେ ଉଠୁଥିବା ଦେଶପ୍ରେମକୁ ନେଇ ସଂଗ୍ରାମ କରିପାରିବେ ଯେତେବେଳେ ସେମାନେ ନିଜେ ଲୌହ ଶୃଙ୍ଖଳରେ ବନ୍ଦୀ ? ସାଧାରଣ ଭାବରେ ବିଷୟଟି ଏହି ଯେ ସେମାନେ ପ୍ରଥମେ ନିଜ ଦେଶର ମୁକ୍ତି ପାଇଁ ଏକ ନୂତନ ପରିବେଶରେ, ଏକ ନୂତନ କୌଶଳ ନେଇ ସଂଗ୍ରାମ କରିବେ ।

ଚାଲ, ପ୍ରଥମେ ବିକଳ୍ପକୁ ବାହାର କରିବା ।

ଯଦି ସାମନ୍ତବାଦୀ ଲୋକମାନଙ୍କର ଦେଶପ୍ରେମୀ ନେତାମାନେ ଏହି ଯୁଦ୍ଧକୁ ବିରୋଧ କରନ୍ତି ଏବଂ ସେମାନେ ପ୍ରତ୍ୟକ୍ଷଭାବେ ନିଜ ଦେଶକୁ ଫାସିବାଦ ଦାସତ୍ୱ ପାଇଁ ସାହାଯ୍ୟ କରନ୍ତି ଏବଂ ଫାସିଷ୍ଟ ସାମ୍ରାଜ୍ୟବାଦୀମାନେ ସେମାନଙ୍କର ଅଧିକ ସଂଗ୍ରହ ଶକ୍ତି ବଳରେ ବିଶ୍ୱକୁ ଜୟ କରିବାରେ ସହଯୋଗ କରନ୍ତି, ତେବେ ସେମାନେ ସେମାନଙ୍କର ମୃତ୍ୟୁଦଣ୍ଡରେ ନିଜେ ହିଁ ଦସ୍ତଖତ କରିବେ ।

ଆମେ ଯେତେ ଅଧିକ ଭାବେ ଯୁଦ୍ଧରେ ବ୍ୟାପୃତ ଦୁଇଟି କ୍ୟାମ୍ପ ମଧ୍ୟରେ ଥିବା ପାର୍ଥକ୍ୟକୁ ଜାଣି ପାରିବା, ଆମେ ସେତେ ସଠିକ୍‌ଭାବେ ଆମର ଜାତୀୟ ନୀତି ଆଜିର ବିଶେଷ ସମୟରେ ନିର୍ଦ୍ଧାରଣ କରିପାରିବା । ଫାସିବାଦ ଆକ୍ରମଣକାରୀଙ୍କୁ ଜାତୀୟସ୍ତରରେ ପ୍ରତିରୋଧ କରିବା ପାଇଁ ସମସ୍ତ ପ୍ରଗତିଶୀଳ ଶକ୍ତିମାନେ ଯେଉଁମାନେ ଫାସିବାଦକୁ ବିରୋଧ କରୁଛନ୍ତି, ସେମାନେ ଏକତ୍ର ହୋଇ ପାରିଲେ ତାହା ସାମ୍ରାଜ୍ୟବାଦୀ ପ୍ରାଧାନ୍ୟ ବିରୁଦ୍ଧରେ ଜାତୀୟ ମୁକ୍ତିର ଏକମାତ୍ର ମାର୍ଗ ହୋଇପାରିବ ।"[୧୪]

ଏହାହିଁ ଥିଲା ଯୁକ୍ତିର ସାରାଂଶ ଯାହାକୁ ଯୋଷୀ ସିପିଆଇ ପକ୍ଷରୁ ଉପସ୍ଥାପିତ କରିଥିଲେ ।

ଯୋଷୀଙ୍କର ଗାନ୍ଧିଜୀଙ୍କ ପ୍ରତି ବହୁତ ସମ୍ମାନ ଥିଲା, କିନ୍ତୁ କମ୍ୟୁନିଷ୍ଟମାନଙ୍କ ସମ୍ପର୍କରେ ଗାନ୍ଧିଜୀଙ୍କୁ ଅନ୍ୟ ଦଳମାନଙ୍କ ଦ୍ୱାରା ଓ ଗାନ୍ଧିଜୀଙ୍କର ସହଯାତ୍ରୀମାନେ ଭୁଲ୍ ତଥ୍ୟ ଦେବା ନେଇ ସେ ବିବ୍ରତ ହୋଇଥିଲେ । ଯୋଷୀ ନିୟମିତ ଭାବରେ ଚିଠିର ଆଦାନ-ପ୍ରଦାନ କରି ସମସ୍ତ ପ୍ରଶ୍ନର ଉତ୍ତର ଦେଉଥିଲେ ଏବଂ ଗାନ୍ଧିଜୀଙ୍କର କମ୍ୟୁନିଷ୍ଟମାନଙ୍କ ରାଜନୈତିକ କୌଶଳ ଓ ଦୈନନ୍ଦିନ ଜୀବନ ପ୍ରଣାଳୀ ସମ୍ପର୍କରେ ସମସ୍ତ ଅଭିଯୋଗକୁ ଖଣ୍ଡନ କରୁଥିଲେ । ଯୋଷୀ ହିଁ କେବଳ ଗାନ୍ଧିଜୀଙ୍କ ସହିତ ଯୁକ୍ତି କରୁଥିଲେ ଏବଂ ତାଙ୍କ ଚିଠିର ସ୍ୱର ମଧ୍ୟ ଖୁବ୍ ଦୃଢ଼ ଥିଲା,

---

୧୪. କରେସପଣ୍ଡେନ୍‌ସ ବିଟ୍‌ୱଇନ୍ ମହାତ୍ମାଗାନ୍ଧି ଆଣ୍ଡ୍ ପି.ସି. ଯୋଷୀ, ବମ୍ବେ, ପିପିଏଚ୍, ୧୯୪୫ । (ପୃଷ୍ଠା ୫-୬)

କିନ୍ତୁ ଥିଲା ସମ୍ମାନସୂଚକ। "ମୁଁ ଆପଣଙ୍କୁ ଚିଠି ଲେଖୁଛି କାରଣ ଆପଣ ଜାତିର ଜନକ। ମୋ ପକ୍ଷରେ ଆପଣଙ୍କ ଉପରେ କ୍ରୋଧ କରିବା ଦେଶପ୍ରେମୀ ବିରୋଧୀ ହେବ ଯଦିଓ ଆପଣ ଆମକୁ ଅସମ୍ମାନ ଓ ଅପମାନିତ କରିଛନ୍ତି ।"[୧୫] ଜୋଷୀ ହିଁ ପ୍ରଥମେ ଗାନ୍ଧିଙ୍କୁ ଜାତିର ପିତା ଭାବରେ ସଂବୋଧନ କରିଥିଲେ ।

ଗାନ୍ଧି ଜୋଷୀଙ୍କର ଚିଠିର ପ୍ରତ୍ୟୁତ୍ତରରେ ସେହି ପ୍ରେମ ଓ ଶ୍ରଦ୍ଧା ଦୋହରାଇଛନ୍ତି ଏବଂ ଲେଖିଛନ୍ତି, "ମୁଁ ତୁମର ଗୁଣବତ୍ତା ଜାଣେ । ତୁମେମାନେ ଅତ୍ୟନ୍ତ ସକ୍ଷମ ନିଃସ୍ୱାର୍ଥପର ଯୁବକ ଓ ଯୁବତୀ, ବୋଲି ମୁଁ ଦାବି କରେ । ତୁମେମାନେ କଠୋର ପରିଶ୍ରମୀ ଏବଂ ଅମାପ ସାମର୍ଥ୍ୟର ଅଧିକାରୀ ଏବଂ ତୁମ୍ଭମାନଙ୍କର କର୍ମୀମାନଙ୍କ ଉପରେ କଠୋର ଶୃଙ୍ଖଳା ଲଗାଅ । ଏହି ସମସ୍ତ ମୂଲ୍ୟକୁ ମୁଁ ପ୍ରଶଂସା କରେ । ମୁଁ ସହଜରେ ଏପରି ଶକ୍ତିକୁ ହରାଇବାକୁ ଚାହେଁ ନାହିଁ କାରଣ ମୋର ଏ ସମ୍ପର୍କରେ କୌଣସି ପୂର୍ବର ବଦ୍ଧମୂଳ ଧାରଣା ନାହିଁ ।"[୧୬]

ଗାନ୍ଧିଙ୍କ ଚିଠି ଏହିପରି ଭାବରେ ପରିସମାପ୍ତି ହୋଇଥିଲା :

> "ପରିଶେଷରେ ମୁଁ କହିବାକୁ ଚାହେଁ ଯେ ତୁମେ ମୋତେ ବିଶ୍ୱାସ କରିବା ଉଚିତ। ମୁଁ ତୁମ ସମସ୍ତଙ୍କୁ ବୁଝାଇ ଦେବାକୁ ଚାହେଁ ଯେ ସ୍ୱାଧୀନତା ପାଇଁ ମୁଁ ଯେଉଁ ମାର୍ଗ ଗ୍ରହଣ କରିଛି ସେହି ମାର୍ଗରେ ତୁମ୍ଭେମାନେ ଓ ସମଗ୍ର ଦେଶ ଚାଲିତ ହେବା ଦରକାର। ଯଦି ମୋର ହୃଦ୍‌ବୋଧ ହୁଏ ଯେ ମୁଁ ଭୁଲ୍‌ବାଟରେ ଯାଉଛି ଏବଂ ତୁମର ମାର୍ଗ ସଠିକ୍, ତେବେ ତୁମେ ମୋତେ ତୁମ ପକ୍ଷକୁ ଜିତିକରି ନେଇପାର ଏବଂ ମୁଁ ଅତ୍ୟନ୍ତ ନିଷ୍ଠା ଓ ଆନନ୍ଦର ସହିତ ତୁମ ଗୋଷ୍ଠୀର ଜଣେ ଶିକ୍ଷାନବିଶ ଭାବରେ ସେବା କରିବି ।"[୧୭]

ଏ ପିଢ଼ିର ବହୁତ ଏହା ଜାଣି ନ ପାରିଥାନ୍ତି ଯେ ଗାନ୍ଧି ନିଜେ ଭୂମିଗତ କମ୍ୟୁନିଷ୍ଟ ନେତା ଆର୍.ଡି. ଭରଦ୍ୱାଜଙ୍କୁ ତାଙ୍କ କାର୍‌ରେ କଂଗ୍ରେସର ରାମଗଡ଼ ଅଧିବେଶନକୁ ଏଆଇସିସି ମଞ୍ଚକୁ ସାଙ୍ଗରେ ନେଇକରି ଯାଇଥିଲେ, ଯାହା ଫଳରେ ବ୍ରିଟିଶ୍ ପୁଲିସ୍ ତାଙ୍କୁ ବନ୍ଦୀକରି ପାରିବନାହିଁ । ଏହା ଜାତୀୟତାବାଦୀ ଓ କମ୍ୟୁନିଷ୍ଟ ନେତାମାନଙ୍କ ମଧ୍ୟରେ ଥିବା ସହନଶୀଳତା ଓ ପରସ୍ପର ସମ୍ମାନବୋଧର ପରିପ୍ରକାଶ । ଯଦିଓ ସେମାନଙ୍କ ମଧ୍ୟରେ ରାଜନୈତିକ ଓ ଆଦର୍ଶଗତ ମତପାର୍ଥକ୍ୟ ଥିଲା । ତଥାପି ତଳସ୍ତରରେ ପ୍ରଚୁର ଘୃଣାଭାବ ଓ ଉତ୍ତେଜନା ବୃଦ୍ଧି ପାଇଥିଲା କାରଣ ସିପିଆଇ 'ଜନଯୁଦ୍ଧ'ର କୌଶଳ ଗ୍ରହଣ କରିଥିଲା । ପ୍ରସଙ୍ଗ କ୍ରମେ, ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଆଇନ ସମ୍ମତ ସିପିଆଇର ୧୩ ଜଣ ସଭ୍ୟ ଡକ୍ଟର କେ.ଏମ୍. ଆସରଫ୍‌ଙ୍କ

---

୧୫. ତତ୍ରୈବ, ପୃଷ୍ଠା-୨୩ ।

୧୬. ତତ୍ରୈବ, ପୃଷ୍ଠା-୧୯ ।

୧୭. ଲେଟରେ ଫ୍ରମ୍ ସେବାଗ୍ରାମ, ସିପି, ଜୁଲାଇ ୩୦, ୧୯୪୪ - ପୃଷ୍ଠା ୨୦-୨୧ ।

ନେତୃତ୍ୱରେ ୧୯୪୨ ଅଗଷ୍ଟ ୮ ତାରିଖ ବମ୍ବେ ଏଆଇସିସି ଅଧିବେଶନରେ ଗୃହୀତ ଭାରତଛାଡ଼ ଆନ୍ଦୋଳନ ପ୍ରସ୍ତାବକୁ ବିରୋଧ କରିନଥିଲେ କିନ୍ତୁ ଏହାର କାର୍ଯ୍ୟକାରୀ ଅଂଶ ଉପରେ ସଂଶୋଧନ ଆଣିଥିଲେ ଯାହା କାଟ୍ ଖାଇ ଯାଇଥିଲା ।[୧୮] ତଥାପି ଯୋଷୀ ପାର୍ଟିର ରାଜନୈତିକ ସ୍ଥିତିକୁ ଭୁଲ୍ ବୋଲି ବିଚାର କରିନଥିଲେ । ସେ ଅନୁଭବ କରିଥିଲେ ଯେ ସିପିଆଇ ଗୋଟିଏ ରାଜନୈତିକ ପାର୍ଟି ଭାବରେ ତା'ର ରାଜନୈତିକ ପ୍ରତିଷ୍ଠା ପାଇଁ ପ୍ରତିଷ୍ଠିତ ହୋଇପାରିଛି । ଏହାର ପ୍ରୟୋଗାତ୍ମକ ଫଳାଫଳ ଥିଲା ବହୁତ ବେଶି ।[୧୯]

ବାସ୍ତବରେ ସୋଭିଏତ୍ ୟୁନିୟନ ଉପରେ ନାଜି ଜର୍ମାନୀର ଆକ୍ରମଣ ପରେ ଯୁଦ୍ଧର ଚରିତ୍ର ସାମ୍ରାଜ୍ୟବାଦୀ ଯୁଦ୍ଧ ପରିବର୍ତ୍ତେ ଜନଯୁଦ୍ଧରେ ପରିବର୍ତ୍ତିତ ହେଲା ଏବଂ ପରବର୍ତ୍ତୀ ସମୟରେ ଭାରତୀୟ କମ୍ୟୁନିଷ୍ଟମାନଙ୍କର ଭାରତର ଜାତୀୟ ଆନ୍ଦୋଳନ ଭାରତଛାଡ଼ ଆନ୍ଦୋଳନରୁ ଅଲଗା ରହିବା ଫଳରେ କମ୍ୟୁନିଷ୍ଟମାନଙ୍କୁ ଦେଶଦ୍ରୋହୀ ଏବଂ ବ୍ରିଟିଶ୍‌ର ଏଜେଣ୍ଟ ଭାବରେ ଲୋକଚକ୍ଷୁରେ ଦେଖାଗଲା । ବିଶ୍ୱ ଅବସ୍ଥାର ଜଟିଳତା ହେତୁ କମ୍ୟୁନିଷ୍ଟମାନେ ଯୁଦ୍ଧର ପୁନଃମୂଲ୍ୟାୟନ କଲେ ଏବଂ ଏକ ସ୍ୱାଧୀନ କୌଶଳ ପ୍ରସ୍ତୁତ କଲେ, ଏହା ଲୋକଙ୍କୁ ବୁଝାଇବା କଷ୍ଟସାଧ ଥିଲା। ସିପିଆଇର ବମ୍ବେଠାରେ ଥିବା ମୁଖ୍ୟ କାର୍ଯ୍ୟାଳୟ ଉପରେ ଉତ୍ତ୍ୟକ୍ତ ଜନତା ଆକ୍ରମଣ କଲେ, ବହୁ ସାଥୀ ଲୋକମାନଙ୍କ ସହିତ ସଂଘର୍ଷରେ କ୍ଷତବିକ୍ଷତ ହେଲେ । ଯୋଷୀଙ୍କର ପାଟନା, ମୁଙ୍ଗେର, ଲକ୍ଷି ସରାଇ, ବେଗୁ ସରାଇଠାରେ ସଭା ସଫଳ ହେଲାନାହିଁ । ବହୁସ୍ଥାନରେ, ସଭା ଉପରକୁ ଆକ୍ରମଣ କରାଗଲା । ଟେକା ପଥର ପକାଇବା ସାଧାରଣ ଘଟଣା ହୋଇଗଲା। ଯୋଷୀଙ୍କର ଜୀବନ ପ୍ରତି ବିପଦ ଦେଖାଗଲା।

ଯଦିଓ କମ୍ୟୁନିଷ୍ଟମାନଙ୍କୁ ଭାରତଛାଡ଼ ଆନ୍ଦୋଳନରେ ଯୋଗ ନ ଦେବା ଫଳରେ ବ୍ରିଟିଶ୍ ସରକାରର ଏଜେଣ୍ଟ ଭାବରେ କଂଗ୍ରେସ, କଂଗ୍ରେସ ସମାଜବାଦୀ ଦଳ ଓ ଫରୱାଡ଼ ବ୍ଲକ୍ ବ୍ୟବହାର କଲେ, କିନ୍ତୁ ବାସ୍ତବତା ଥିଲା ଭିନ୍ନ । ଏହି ସମୟରେ କିନ୍ତୁ ବ୍ରିଟିଶ୍ ସରକାର କମ୍ୟୁନିଷ୍ଟମାନଙ୍କୁ ଅତ୍ୟନ୍ତ ନିଷ୍ଠୁର ଭାବରେ ନିର୍ଯ୍ୟାତନା ଦେଇଥିଲା । ମାର୍ଚ୍ଚ ୭, ୧୯୪୩ ମସିହାରେ ପି.ସି. ଯୋଷୀ ପିପୁଲ୍ସ ୱାରରେ ଲେଖିଥିଲେ :

> ସରକାର ଆମକୁ କଂଗ୍ରେସର ପଞ୍ଚମ ସ୍ତମ୍ଭ ଭାବରେ ବିଚାର କରି ଆକ୍ରମଣ କରିଥିଲା। ଆମର ବିକ୍ଷୋଭକାରୀମାନଙ୍କୁ ଆରେଷ୍ଟ କରିଥିଲା, ଆମର ସଙ୍ଗଠକମାନଙ୍କୁ ବିନା ବିଚାରରେ ଅଟକବନ୍ଦୀ ରଖିଥିଲା, ଆମ ଅଫିସ୍ ଉପରେ ତଲାସି କରିଥିଲା ଏବଂ ସଭା କରିବାକୁ ଆମମାନଙ୍କୁ ଅନୁମତି ଦେଉନଥିଲା । ଅନ୍ୟାନ୍ୟ ଜାତୀୟ ଆନ୍ଦୋଳନ

---

୧୮. ଦିଲୀପ ବୋଷ, ପି.ସି. ଯୋଷୀ; ମୋଲଡ଼ର ଅଫ୍ ଏ ଜେନେରେସନ୍, ମେନ୍‌ଷ୍ଟ୍ରିମ୍ ନଭେମ୍ବର ୨୨, ୧୯୮୦ ।

୧୯. ଯୋଷୀ ଇନ୍ ଆନ୍ ଇଣ୍ଟରଭ୍ୟୁ ଅନ୍ ୬ ଏପ୍ରିଲ ୧୯୫୧ ଇନ୍ ପାର୍ଟି ହେଡ୍ କ୍ୱାର୍ଟରସ୍, ଫାଇଲ୍ ନମ୍ବର ସିପିଆଇ, ୧୯୫୧/୪୭ - ଆରକାଇଭିସ୍ ଅଫ୍ କନ୍‌ଟେମ୍ପରାରି ଇଣ୍ଡିଆନ୍ ହିଷ୍ଟ୍ରି, ଜେଏନ୍‌ୟୁ ।

ପରି ଆମେ ମଧ୍ୟ ବୈଧାନିକ ସ୍ୱତନ୍ତ୍ରତା ପାଇବାରୁ ବଞ୍ଚିତ ହୋଇଥିଲୁ। କେବଳ ବ୍ୟତିରେକ ଥିଲା ଯେ ଆମ ପାର୍ଟି ଔପଚାରିକ ଭାବେ ଆଇନସମ୍ମତ ଥିଲା ।

ପି.ସି. ଜୋଷୀ ଗାନ୍ଧିଜୀଙ୍କର କୌଶଳ 'କର ବା ମର'ଠାରୁ ପାର୍ଥକ୍ୟ ମତପୋଷଣ କରୁଥିଲେ, କିନ୍ତୁ ସେ କଂଗ୍ରେସ ନେତୃମଣ୍ଡଳୀଙ୍କ ମୁକ୍ତି ପାଇଁ ପ୍ରଚାର ଅଭିଯାନ ଚଳାଇଥିଲେ ଏବଂ ସେ ବିଷୟରେ ସେ ଅତ୍ୟନ୍ତ ସାଙ୍ଘାତିକ ଥିଲେ । ସେପ୍ଟେମ୍ବର ୨୦, ୧୯୪୨ ମସିହାରେ କେନ୍ଦ୍ରୀୟ କମିଟି ବୈଠକରେ ଏକ ପ୍ରସ୍ତାବ ଗୃହୀତ ହେଲା । "ଏହା କଂଗ୍ରେସ ଓ ଲୋକମାନଙ୍କ ଉପରେ ହେଉଥିବା ସାମ୍ରାଜ୍ୟବାଦୀ ନିର୍ଯ୍ୟାତନାକୁ ନିନ୍ଦା କରୁଛି । ଏହା ଉଲ୍ଲେଖ କରାଯାଉଛି ଯେ ଯେତେବେଳେ ସାମ୍ରାଜ୍ୟବାଦୀ ଅମଲାତନ୍ତ୍ର ଲୋକମାନଙ୍କ ଉପରେ ନୃଶଂସ ଭାବରେ ଚାଲୁଥିଲା, ବାସ୍ତବରେ ଏହା ସବୁ ଗୋଷ୍ଠୀର ଲୋକମାନଙ୍କଠାରୁ ବିଚ୍ଛିନ୍ନ ହୋଇଯାଇଥିଲା ଏବଂ ଭାଙ୍ଗିପଡୁଥିଲା ।" ଏହା ନିର୍ଦ୍ଧାରଣ କରାଗଲା ଯେ ଜାତୀୟ ଏକତା ପାଇଁ, ଜାତୀୟ ନେତାମାନଙ୍କୁ ମୁକ୍ତ କରାଯିବା ପାଇଁ ଏବଂ ଅମଲାତନ୍ତ୍ରକୁ ଏକ ଜାତୀୟ ସରକାର ପ୍ରତିଷ୍ଠା କରିବାକୁ ବାଧ କରାଯିବା ପାଇଁ ଦେଶବ୍ୟାପୀ ପ୍ରଚାର କରାଯିବ। ସେହି ପ୍ରସ୍ତାବରେ ପୁନଶ୍ଚ କୁହାଯାଇଥିଲା ଯେ:

> "କମ୍ୟୁନିଷ୍ଟ ପାର୍ଟି ବ୍ରିଟିଶ୍ ସରକାରକୁ ଚେତେଇ ଦେଉଛି ଯେ ଯଦି ସେ ସେହି ନୀତି ଗ୍ରହଣ କରି କଂଗ୍ରେସକୁ ଧୂଳିସାତ୍ କରିବାକୁ ଚାହାଁନ୍ତି, ତେବେ ଏହା ବ୍ରିଟିଶ ଓ ଭାରତ ପାଇଁ ଏକ ସାଧାରଣ ବିପର୍ଯ୍ୟୟ ସୃଷ୍ଟି କରିବ । ଏହି ପ୍ରକାର ଏକ ବିପଦସଙ୍କୁଳ ଅବସ୍ଥାରେ ଯାହା ଦୈନନ୍ଦିନ ଅଧିକରୁ ଅଧିକ ସଂକଟମୟ ହେଉଛି, କଂଗ୍ରେସ ଓ ଲୋକମାନଙ୍କ ବିରୁଦ୍ଧରେ ହେଉଥିବା ଦମନ ଲୀଳା ବନ୍ଦ ହେବା ଦରକାର । ମହାତ୍ମା ଗାନ୍ଧି ଓ ଅନ୍ୟ କଂଗ୍ରେସ ନେତାଙ୍କୁ ତୁରନ୍ତ ମୁକ୍ତ କରିବା, କଂଗ୍ରେସ ଉପରୁ ବାସନ୍ଦ ଉଠାଇବା ଏବଂ କଂଗ୍ରେସ ଓ ଅନ୍ୟାନ୍ୟ ରାଜନୈତିକ ଦଳ ସହିତ ଆଲୋଚନାର ଦ୍ୱାର ଉନ୍ମୁକ୍ତ କରିବା ବିଶେଷକରି ମୁସଲିମ୍ ଲିଗ୍ ସହିତ, ଏକ ଅଳ୍ପକାଳୀନ ଜାତୀୟ ସରକାର ପ୍ରତିଷ୍ଠା କରିବା ଯାହାକି ସମ୍ପୂର୍ଣ୍ଣ ଭାବେ କ୍ଷମତାସମ୍ପନ୍ନ ହେବ ଏବଂ ଲୋକମାନଙ୍କୁ ଏକାଠି କରିବାକୁ ଦୃଢ଼ ସଂକଳ୍ପ ହେବ ଏବଂ ଲୋକମାନଙ୍କୁ ସ୍ୱାଧୀନତା ଓ ସୁରକ୍ଷା ପାଇଁ ସଂଗ୍ରହ କରିପାରିବ। ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଏହି ଜାତୀୟ ସଂକଟରେ ସମାଧାନ ପାଇଁ ଜାତୀୟ ଏକତା ପ୍ରତିଷ୍ଠା ନିମିତ୍ତ ସଂକଳ୍ପ ନେଇଛି ଏବଂ ବ୍ରିଟେନ ଓ ଆମେରିକାର ପ୍ରଗତିଶୀଳ ଓ ଶ୍ରମିକମାନଙ୍କୁ ନିବେଦନ କରୁଛି ଯେ ସେମାନେ ବ୍ରିଟିଶ୍ ସରକାର ଉପରେ ଭାରତୀୟମାନଙ୍କ ଜାତୀୟ ଦାବି ଗ୍ରହଣ ପାଇଁ ଚାପ ପକାନ୍ତୁ ଏବଂ ଏହି ମୁକ୍ତି ଯୁଦ୍ଧରେ ଆମର ବିଜୟ ପାଇଁ ପଥ ପରିଷ୍କାର କରନ୍ତୁ ।"[୨୦]

---

୨୦. ପିପୁଲ୍ସ ୱାର୍, ସେପ୍ଟେମ୍ବର ୨୦, ୧୯୪୨।

ଠିକ୍ ସେହିପରି ଭାବରେ, ଫେବୃୟାରୀ ୧୫, ୧୯୪୩ରେ ଏହି ଜାତୀୟ ବିପତ୍ତିର ପରିସମାପ୍ତି ପାଇଁ ଗାନ୍ଧିଜୀଙ୍କୁ ମୁକ୍ତ କରିବାକୁ ଅନ୍ୟ ଏକ ପ୍ରସ୍ତାବ ଗ୍ରହଣ କରାଯାଇଥିଲା ।

"ଜାତୀୟ ନେତାମାନେ ଜେଲର ଚାରିକାନ୍ଥ ମଧ୍ୟରେ ରହି ଏହି ଜାତୀୟ ବିପତ୍ତିକୁ ଅସହାୟ ଭାବରେ ଦେଖିବା ଆଉ ସମ୍ଭବ ନୁହେଁ । ଗାନ୍ଧିଜୀଙ୍କର ଅନଶନ ହେଉଛି ଦେଶବାସୀଙ୍କ ପ୍ରତି ଆକୁଳ ଆହ୍ୱାନ ଯେ ଅଧିକ ବିଳମ୍ବ ହେବା ପୂର୍ବରୁ ସେମାନେ ଉଠନ୍ତୁ ଏବଂ ସଂଘବଦ୍ଧ ହୋଇ ସମ୍ପୂର୍ଣ୍ଣ ଲୋପ ପାଇଯିବା ପୂର୍ବରୁ ନିଜକୁ ରକ୍ଷା କରନ୍ତୁ ।

ଯେଉଁ ହାତସବୁ ଅଗଷ୍ଟ ୯ ତାରିଖ ଦିନ ଜାତୀୟ ନେତାମାନଙ୍କୁ ଜେଲଖାନା ଫାଟକ ଭିତରେ ରଖି ଚାବି ପକାଇଛି, ବର୍ତ୍ତମାନ ତାହାକୁ ଉନ୍ମୁକ୍ତ କରିବାକୁ ଅନିଚ୍ଛୁକ । ରାଷ୍ଟ୍ରର ଅଗ୍ରଣୀ ନେତାମାନଙ୍କର ଜୀବନ ସଂକଟାପନ୍ନ । ତାଙ୍କର ସମାଧାନ କରିବାର ଆହ୍ୱାନ ଯାହାକି ଏକମାତ୍ର ବାଟକୁ ପଦାଘାତ କରାଯାଉଛି ।

ଏହା ଆମର ସମଗ୍ର ରାଷ୍ଟ୍ରପାଇଁ 'ବର୍ତ୍ତମାନ କିମ୍ବା ଆଦୌ ନୁହେଁ ।' ଆମେ ହୁଏତ ଗାନ୍ଧିଜୀଙ୍କୁ ମୁକ୍ତକରି ଏହି ବିପତ୍ତିର ସମାଧାନ କରିବୁ, କିମ୍ବା ଏଥିରେ ଆମେ ସମ୍ପୂର୍ଣ୍ଣ ଅଯୋଗ୍ୟ ହେବା ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ବୁଡ଼ିଯିବୁ ଏବଂ ଅସହାୟ ଭାବରେ ଜଣେ କ୍ରୀତଦାସରେ ପରିଣତ କରିବା ଲୋକଠାରୁ ଆଉ ଜଣକ କବ୍‌ଜାରେ ପଡ଼ିବୁ ।"

ଗାନ୍ଧିଜୀଙ୍କର ଅନଶନ ସମୟରେ ଯୋଶୀ ସିପିଆଇର ସାଧାରଣ ସମ୍ପାଦକ ଭାବରେ ଶ୍ରମିକ ଶ୍ରେଣୀ, କୃଷକ ଓ ଛାତ୍ର ସଂଗଠନମାନଙ୍କୁ ଗାନ୍ଧିଜୀଙ୍କର ମୁକ୍ତିପାଇଁ ହେଉଥିବା ପ୍ରଚାରରେ ବିଶେଷ ଭାବରେ ଠିଆ ହେବାକୁ ନିବେଦନ କରିଥିଲେ । ମଇ ଦିବସ ସଂହତି ଅବସରରେ ପାର୍ଟି ପକ୍ଷରୁ ଇସ୍ତାହାର ପ୍ରକାଶ କରି କୁହାଯାଇଥିଲା,

"ମୁଖ୍ୟ ସଂଗଠନଗୁଡ଼ିକୁ ଏକାଠି କରି ନ ପାରିବାର ବିଫଳତା ହିଁ ଆମକୁ କ୍ଷମତା ଓ ଜାତୀୟ ସରକାରଠାରୁ ଦୂରରେ ରଖିଛି । ଏହି ବିଫଳତା ଯୋଗୁଁ ହିଁ ବର୍ତ୍ତମାନ ଆମର ଜାତୀୟ ନେତାମାନେ ଜେଲରେ ଅଛନ୍ତି ଏବଂ ନିୟୁତ ନିୟୁତ ହିନ୍ଦୁ ଓ ମୁସଲମାନମାନଙ୍କ ଉପରେ ଅନାହାରରେ ରହିବାକୁ ଚାପି ଦେଉଛନ୍ତି । ଗାନ୍ଧିଜୀ ଅନଶନରେ ଥିବାବେଳେ ତାଙ୍କ ଜୀବନ ପାଇଁ ଆମକୁ ମୂଲ୍ୟ ଦେବାକୁ ପଡୁଛି ।"[୨୧]

ଯୋଶୀଙ୍କର ବାସ୍ତବ ସ୍ଥିତି ବୁଝିବାରେ ବିରଳ ରାଜନୈତିକ ଦକ୍ଷତା ଥିଲା । ସେ ଜାଣିଥିଲେ କମ୍ୟୁନିଷ୍ଟ ପାର୍ଟି ଏକ ଘରିଆ ହୋଇ ଆଗକୁ ଯିବା ସମ୍ଭବ ନୁହେଁ । ସେଇଥିପାଇଁ ସେ ବାରମ୍ବାର ଜାତୀୟ ସୁରକ୍ଷା ପାଇଁ ଜାତୀୟ ସରକାର ଦାବିକୁ ଲୋକପ୍ରିୟ କରୁଥିଲେ ।

---

୨୧. ପିପୁଲ୍ସ ୱାର୍, ଏପ୍ରିଲ ୨୫, ୧୯୪୩ ।

୧୯୪୩ ଦୁର୍ଭିକ୍ଷ ପରେ ଏବଂ ଖାଦ୍ୟ ସଙ୍କଟ ହେତୁ, ସେ ଜାତୀୟ ସୁରକ୍ଷା ଓ ଲୋକମାନଙ୍କୁ ଖାଦ୍ୟ ପାଇଁ ଏକ ଜାତୀୟ ସରକାର ପ୍ରତିଷ୍ଠାର ପ୍ରକ୍ଷେପଣ କରିଥିଲେ ।

ବାସ୍ତବରେ, ସେହି ଉତ୍ସାହର ସହିତ, ଗାନ୍ଧିଜୀ ଓ କଂଗ୍ରେସ ନେତୃବୃନ୍ଦଙ୍କର ମୁକ୍ତିପାଇଁ କାର୍ଯ୍ୟ କରିବାକୁ ଯୋଷୀ ପାର୍ଟି ସଂଗଠନକୁ ସକ୍ରିୟ କରିଥିଲେ । ସେ ଗାନ୍ଧିଜୀଙ୍କୁ ଲେଖିଥିଲେ,

> "ଆମ୍ଭେ ଆଶା କରୁଥିଲୁ କଂଗ୍ରେସ-ଲିଗ୍ ମଧ୍ୟରେ ଏକତା ପାଇଁ, ଆମର ଦେଶପ୍ରେମୀ ସଂଗଠନଗୁଡ଼ିକର ଏକତ୍ୱର ପରିପ୍ରକାଶ ପାଇଁ ଆପଣ ନେତୃତ୍ୱ ନେବେ ଏବଂ ଲୋକପ୍ରିୟ ସରକାର ହସ୍ତରେ କ୍ଷମତା ହସ୍ତାନ୍ତର ହୋଇପାରିବ । ବାସ୍ତବରେ, ଆପଣଙ୍କ ଅନୁପସ୍ଥିତିରେ ଆମର ଏକମାତ୍ର ଜିଦ୍‌ଖୋର ଆହ୍ୱାନ ଥିଲା ଆପଣଙ୍କର ମୁକ୍ତି ଏବଂ ଜାତୀୟ ସରକାର ପ୍ରତିଷ୍ଠା କରି ଦେଶର ସୁରକ୍ଷାକୁ ଓ ଲୋକମାନଙ୍କର ଖାଦ୍ୟକୁ ସୁବ୍ୟବସ୍ଥିତ କରିବା ।"[୨୨]

କଂଗ୍ରେସ କାର୍ଯ୍ୟକାରୀ କମିଟି ଅଖିଳ ଭାରତ କଂଗ୍ରେସ କମିଟିରେ ଥିବା ସଭ୍ୟମାନଙ୍କୁ ଏକ ଆରୋପ ପତ୍ର ପ୍ରଦାନ କଲେ । ଯୋଷୀ ଏହାର ଉତ୍ତର ଦେଲେ - କାର୍ଯ୍ୟକାରୀ କମିଟିକୁ କମ୍ୟୁନିଷ୍ଟ ଉତ୍ତର । ଏହା ଅତି ବୃହତ ଏବଂ ଦୁଇଟି ଖଣ୍ଡରେ ପ୍ରକାଶିତ । ଏହି ଉତ୍ତର ରାଜନୈତିକ ଭାବେ କମ୍ୟୁନିଷ୍ଟମାନଙ୍କୁ କଂଗ୍ରେସର ଭୟଙ୍କର ଆକ୍ରମଣ ଓ ଅଭିଯୋଗ ବିରୁଦ୍ଧରେ ଛିଡ଼ା କରିବାରେ ସାହାଯ୍ୟ କରି ପାରିଲା । ୧୯୪୬ରେ ସାମ୍ବିଧାନିକ ସଭାର ସଭ୍ୟ ନିର୍ବାଚନ ନିମନ୍ତେ ପ୍ରାଦେଶିକ ବିଧାନସଭାର ନିର୍ବାଚନ ହେଲା । ସେହିପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଏହି ଉତ୍ତର ପାର୍ଟିକୁ ସଶକ୍ତ କରିଥିଲା ବୋଲି ଯୋଷୀ ବିଶ୍ୱାସ କରିଥିଲେ । ସେ ଏହାର ବହୁ ପରେ ଲେଖିଥିଲେ, "ଏପରିକି ଯେଉଁ କଂଗ୍ରେସ ଲୋକମାନେ ଆମ ସହିତ ଏକମତ ହୋଇନଥିଲେ, ସେମାନେ ଆମର ଆନ୍ତରିକତାକୁ ଗ୍ରହଣ କରିଥିଲେ । ଆମର ନୀତିଗତ ମାର୍ଗ ଥିଲା ଏବଂ ଯଥାର୍ଥ ଭାବେ ଯୁକ୍ତି ସଂଗତ।"[୨୩] ମୋହିତ ସେନ ଯଥାର୍ଥ ଭାବେ କହିଥିଲେ ଯେ, "ପି.ସି. ଯୋଷୀଙ୍କର ଜାତୀୟ ରୂଢ଼ିର ଯାହା ଜାତୀୟ ସ୍ତରରେ ରାଜନୈତିକ ଧାରା ଭାବରେ ଗ୍ରହଣୀୟ ନୁହେଁ ତାହାକୁ ପ୍ରକାଶ କରିବାର ଦକ୍ଷତା ଥିଲା ।"[୨୪] ଯେଉଁମାନେ ସେମାନଙ୍କ ସହିତ ଆଦୌ ଏକମତ ହେଉନଥିଲେ ସେମାନଙ୍କୁ ନିଜ ଆଡ଼କୁ କମ୍ୟୁନିଷ୍ଟମାନେ ଆକର୍ଷିତ କରିପାରିଲେ। ବିରୋଧୀମାନେ ଯୋଷୀଙ୍କର ସଚ୍ଚୋଟତା ଏବଂ ବୌଦ୍ଧିକ ଶକ୍ତି ଉପରେ ପ୍ରଶ୍ନ କରିପାରି ନ ଥିଲେ।

ଯୋଷୀଙ୍କର ଜାତୀୟ ଏବଂ ଆନ୍ତର୍ଜାତିକ ଘଟଣାବଳୀ ପ୍ରତି ଜବାବ ଥିଲା ସ୍ୱତଃସ୍ଫୂର୍ତ୍ତ,

---

୨୨. ପି.ସି. ଯୋଷୀ, କମ୍ୟୁନିଷ୍ଟ ରିପ୍ଲାଏ ଟୁ କଂଗ୍ରେସ ୱାର୍କିଂ କମିଟିଜ୍ ଚାର୍ଜେସ୍, ପାର୍ଟ ୧, ବମ୍ବେ, ପିପିଏଚ୍, ଡିସେମ୍ବର, ୧୯୪୫, ପୃଷ୍ଠା-୨୧୦ ।

୨୩. ପି.ସି. ଯୋଷୀ, "ସୁଶୋଭନ ସରକାର, ଏ ଡେଡ଼ିକେଟେଡ୍ ଟିଚର, ସମ୍ ମେମୋରିଜ୍", ନିଉ ଥିଙ୍କିଂ କମ୍ୟୁନିଷ୍ଟସ, ଜୁଲାଇ ୧୫, ୨୦୦୧ ।

୨୪. ମୋହିତ ସେନ୍ - ପୃଷ୍ଠା ୨୬ ।

ଦୂରଦୃଷ୍ଟିସମ୍ପନ୍ନ ଏବଂ ସିଧାସଳଖ । ମେ ୯, ୧୯୪୫ ବର୍ଲିନର ପତନ ପରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ଘଟିଲା । ଜୋଷୀ ସେହିମାନଙ୍କୁ ସମାଲୋଚନା କଲେ ଯେଉଁମାନେ ବିଚାର କରୁଥିଲେ ଫାସିବାଦ ଉପରେ ବିଜୟ ଭାରତ ପାଇଁ ବିଜୟ ନୁହେଁ । ସେ ଯୁଦ୍ଧ ଶେଷ ହେବାପରେ ଗୋଟିଏ ହୃଦୟସ୍ପର୍ଶୀ ଲେଖା ଲେଖିଥିଲେ, "ଇଉରୋପରେ ବିଜୟ-ଭାରତ ପାଇଁ ଏହାର ଅର୍ଥ ।" ଜୋଷୀ ଏଥିରେ ଯୁକ୍ତି କରିଥିଲେ,

> ଲାଲ ବାହିନୀ ଯେକୌଣସି ମିତ୍ରଗୋଷ୍ଠୀ ସୈନ୍ୟବାହିନୀଠାରୁ କେବଳ ଅଧିକ ଜର୍ମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିନଥିଲେ ବରଂ ସବୁଠାରୁ ଅଧିକ ନିଶ୍ଚିତମୂଳକ ଯୁଦ୍ଧ କରିଥିଲେ । ଯେତେବେଳେ ହିଟ୍ଲର ସୋଭିଏତ୍ ୟୁନିୟନ ଉପରେ ଆକ୍ରମଣ କଲେ, ସେତେବେଳେ ସମଗ୍ର ୟୁରୋପ ତାଙ୍କ ପାଦତଳେ ଲୋଟିଗଲେ । ତାଙ୍କର ଯୋଜନା ଥିଲା ସୋଭିଏତ୍ ଭୂମି ଦେଇ ଫାଟି ପଡ଼ିବ ଏବଂ ଜାପାନୀମାନଙ୍କ ସହିତ ମିଶି ଏସିଆ ପାଇଁ ସଂଗ୍ରାମ କରିବେ ଏବଂ ଦୁଇଟି ଉପମହାଦେଶର ପ୍ରଭୁ ହୋଇ, ଆମେରିକାକୁ ପଦାନତ କରିଥାନ୍ତେ । ଲାଲ ବାହିନୀର ପ୍ରତିରୋଧ ତାଙ୍କର ବିଶ୍ୱଜୟର ଯୋଜନାକୁ ଧୂଳିସାତ୍ କରିଦେଲା ଏବଂ ବିଶ୍ୱକୁ ରକ୍ଷା କଲା । ବ୍ରିଟିଶ୍ ଏହାର ପ୍ରତିକ୍ରିୟା ଆସନ୍ତା ନିର୍ବାଚନରେ ନିଜ ଲୋକଙ୍କ ଦ୍ୱାରା ପାଇବ । ଯୁଦ୍ଧ ପୂର୍ବର ଅବସ୍ଥାକୁ ବ୍ରିଟେନ୍ ଫେରିବା ଆଦୌ ସମ୍ଭବ ନୁହେଁ ।
>
> ଯଦି ବ୍ରିଟିଶ୍ ଲୋକମାନେ ସେମାନଙ୍କର ଖାଦ୍ୟ ପାଇଁ ଲଢ଼ନ୍ତି, ସେମାନେ ଆମର ସ୍ୱାଧୀନତା ପାଇଁ ମଧ୍ୟ ରାଜି ହେବାକୁ ହେବ ।
>
> ଏତିକି କହିଲେ ଯଥେଷ୍ଟ ହେବ ନାହିଁ ଯେ ଆମେ ମଧ୍ୟ ସ୍ୱାଧୀନତା ପାଇଁ ଛିଡ଼ା ହୋଇଛୁ, ଆମକୁ ସ୍ୱାଧୀନତା ପ୍ରେମୀ ମାନବିକତା ସହିତ ଆଗେଇବାକୁ ହେବ।
>
> ଏତିକି କହିଲେ ଯଥେଷ୍ଟ ହେବନାହିଁ ଯେ ଆମେ ମଧ୍ୟ ସ୍ୱାଧୀନତା ଚାହୁଁ, ଆମକୁ ଆମର ଦେଶରେ ଥିବା ଦେଶପ୍ରେମୀ ଭାଇମାନଙ୍କ ସହିତ ଏକାଠି ହେବାକୁ ହେବ।
>
> ସ୍ୱଳ୍ପକାଳୀନ ଜାତୀୟ ସରକାର ନେତୃତ୍ୱରେ ଏକ ମିଳିତ ଜାତୀୟ ଆନ୍ଦୋଳନ ଆମ ଦେଶ ଭିତରେ ଥିବା ଆବର୍ଜନାକୁ ବନ୍ଦ କରିପାରିବ । ଅସହାୟତା ଓ ନିସ୍ପୃହତା ଯୁଗର ଅବସାନ ଘଟିବ ଏବଂ ଗଠନମୂଳକ ପ୍ରଚେଷ୍ଟାର ଯୁଗ ଆରମ୍ଭ ହେବ। ମହଜୁଦକାରୀ, ଲାଭଖୋରୀ ଏବଂ ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀମାନଙ୍କର ଦିନ ସରିବ ଏବଂ ବର୍ତ୍ତମାନ ଲୋକମାନଙ୍କର ତତ୍କ୍ଷଣାତ୍ ଆବଶ୍ୟକତାକୁ ପୂରଣ କରିବା ସହିତ ଆମକୁ ଯୁଦ୍ଧ ପରବର୍ତ୍ତୀ ଭବିଷ୍ୟତ କିପରି ପ୍ରାଚୁର୍ଯ୍ୟମୟ ହେବ ସେଥିପାଇଁ ଯୋଜନା କରିବାକୁ ହେବ ।[୨୫]

---

୨୫. ପିପୁଲ୍ସ ୱାର୍, ମେ ୨୦,୧୯୪୫।

ଏହା ଫଳରେ ଯୋଷୀ, ଯୁଦ୍ଧ ଜୟକରି ସାମ୍ରାଜ୍ୟବାଦୀମାନେ ଅଧିକ ଶକ୍ତିଶାଳୀ ହେଲେ, ଏହି ଲୋକପ୍ରିୟ ପ୍ରାଧାନ୍ୟ ଲାଭ କରିଥିବା ଜାତୀୟ ବିଚାରକୁ ଖଣ୍ଡନ କରିଥିଲେ ।

ଯୁଦ୍ଧ ପରେ, କ୍ଷମତା ହସ୍ତାନ୍ତର ପାଇଁ ଆଶାପୋଷଣ ବଢ଼ିଗଲା, କିନ୍ତୁ ଅଟଲି-ୱାଭେଲ ଘୋଷଣା ଏକ ରୁକ୍ଷ ଝଟ୍‌କା ପରି ଆସିଲା ଏବଂ ଯୋଷୀ ସେପ୍ଟେମ୍ବର ୨୦, ୧୯୪୫ରେ ନିମ୍ନମତେ ବକ୍ତବ୍ୟ ଉପସ୍ଥାପିତ କଲେ ।

> "ଏହି ଘୋଷଣା ଭାରତୀୟ ଲୋକମାନଙ୍କ ପାଇଁ ଅତ୍ୟନ୍ତ ଅପମାନଜନକ ଏବଂ କଂଗ୍ରେସ ଓ ଲିଗ୍ ଉଭୟଙ୍କ ପ୍ରତି ଏକ ଧକ୍କା । ଆମର ଅନୈକତା ଯୋଗୁଁ ହିଁ ଏହି ତିକ୍ତଫଳ । ଏହା କଂଗ୍ରେସ ଓ ଲିଗ୍ ଏବଂ ସେମାନଙ୍କର ନିଜ ନିଜର ଲକ୍ଷ୍ୟ ପ୍ରତି ଏକ ସାଧାରଣ ଆହ୍ୱାନ । କଂଗ୍ରେସ ଓ ଲିଗ୍ ଯଦି ବ୍ରିଟିଶ୍ ସରକାରକୁ ସାମ୍ନା କଲେ ଏହି ଆହ୍ୱାନକୁ ସମ୍ମୁଖୀନ ହୋଇପାରିବେ ଏବଂ ଉଭୟ ଏହି ବିପର୍ଯ୍ୟୟକୁ ଦୂର କରିପାରିବେ । ଏଥିପାଇଁ ମିଳିତଭାବେ ରାଜିନାମା ଦ୍ୱାରା ସ୍ଥିରୀକୃତ ବର୍ତ୍ତମାନର ବ୍ରିଟିଶ୍ ଭାରତ ଅଞ୍ଚଳ ଓ ବର୍ତ୍ତମାନର ଭାରତ ରାଜ୍ୟର ସାବାଳକ ଭୋଟରମାନଙ୍କ ଦ୍ୱାରା ନିର୍ବାଚନ କରାଇ ସମ୍ବିଧାନ ସଭା ଗଠନ କରାଯିବା ଦରକାର, ଯାହା ଫଳରେ ସ୍ୱାଧୀନ ଓ ଗଣତାନ୍ତ୍ରିକ ଭାରତ ଗୋଟିଏ ସଂଘ ଭାବେ ଉଭାରି ପାରିବ କିମ୍ବା ସାର୍ବଭୌମ ରାଜ୍ୟଗୁଡ଼ିକର ମୈତ୍ରୀ ବନ୍ଧନ ହେବ ।"[୨୬]

କିନ୍ତୁ ଏହି ବକ୍ତବ୍ୟ ଦେବା ପୂର୍ବରୁ, ଯୋଷୀ ଉଭୟ କଂଗ୍ରେସ ଓ ମୁସ୍‌ଲିମ ଲିଗ୍‌ର ଜାତୀୟ ନେତାମାନଙ୍କୁ ସେମାନଙ୍କ ମଧ୍ୟରେ ଥିବା ମତପାର୍ଥକ୍ୟ ଦୂର କରିବାକୁ ବାରମ୍ବାର ନିବେଦନ କରିଥିଲେ ଯାହାଫଳରେ ଜାତୀୟ ସରକାର ପ୍ରତିଷ୍ଠା ସମ୍ଭବ ହୋଇପାରିବ । ଯୋଷୀ ଲେଖିଥିଲେ :

> "ଗାନ୍ଧି-ଜିନ୍ନାଙ୍କର ସାକ୍ଷାତ ଭାରତୀୟ ଜାତୀୟ ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ଯୁଦ୍ଧ ଆରମ୍ଭ ହେବା ସମୟରୁ, କଂଗ୍ରେସ ଓ ଲିଗ୍ ସେମାନଙ୍କର ଦାବି ବ୍ରିଟିଶ୍ ସରକାର ପାଖରେ ଉପସ୍ଥାପିତ କରୁଥିଲେ ଏବଂ ବ୍ରିଟିଶ ସରକାର ସେମାନଙ୍କ କଥା ଶୁଣୁ ନ ଥିଲେ । ଏହି ଦୁଇଟି ସଂଗଠନର ମହାନ୍ ନେତାମାନେ ଏକତ୍ରୀତ ହୋଇପାରିବେ କି ନାହିଁ ତାହା ଚେଷ୍ଟା କରୁଥିଲେ । ଏକ ସଂଯୁକ୍ତ ମେଣ୍ଟ ପ୍ରତିଷ୍ଠା କରି ବ୍ରିଟିଶ୍ ଅପମାନର ପରିସମାପ୍ତି କରିବା ଥିଲା ଏହାର ଉଦ୍ଦେଶ୍ୟ । ସେମାନେ ସାମ୍ରାଜ୍ୟବାଦୀ ଶାସକ ଆଡୁ ମୁହଁ ଫେରାଇ ଦେଇଥିଲେ । ସେମାନେ ସେମାନଙ୍କର ହାତକୁ ଉଭୟ ଦୁଇଭାଇ ପରି ବଢ଼ାଇଥିଲେ । ଏହା ଏକ ଐତିହାସିକ ଘଟଣା ।
>
> ଗତ ଦୁଇବର୍ଷ ମଧ୍ୟରେ ଲିଗ୍‌ର ନେତାମାନେ ଭାବୁଥିଲେ ଯେ କଂଗ୍ରେସ

୨୬. ପିପୁଲ୍ସ ୱାର୍, ସେପ୍ଟେମ୍ବର ୨୩, ୧୯୪୫ ।

ସେମାନଙ୍କର ଅବସ୍ଥା ବୁଝିପାରୁ ନାହିଁ ଏବଂ କଂଗ୍ରେସ ଲୋକମାନେ ଭାବୁଥିଲେ ଯେ ଲିଗ୍ ନେତାମାନେ ଏକତା ଚାହାଁନ୍ତି, ଆମେ କେବଳ ଘୋଷଣା କରିଥିଲୁ ଯେ କଂଗ୍ରେସ-ଲିଗ୍ ବୁଝାମଣା ବ୍ୟତୀତ ରାଷ୍ଟ୍ର ପାଇଁ ଅନ୍ୟ କୌଣସି ରାସ୍ତା ନାହିଁ। ଆମେ ଅକ୍ଲାନ୍ତ ଭାବରେ କଂଗ୍ରେସ-ଲିଗ୍ ଏକତ୍ୱ ପାଇଁ ପ୍ରଚାର କରିଥିଲୁ ଏବଂ ଆମ ଦ୍ୱାରା ଯେତିକି ସମ୍ଭବ ଦେଶାତ୍ମବୋଧ ମତ ସୃଷ୍ଟି ପାଇଁ ସେତିକି କରିଥିଲୁ ।"[୨୭]

ଗାନ୍ଧି-ଜିନ୍ନା ସାକ୍ଷାତର ବିଫଳତା ହେତୁ ଜୋଷୀ ଅତ୍ୟନ୍ତ ହତୋତ୍ସାହ ହୋଇପଡ଼ିଥିଲେ ଏବଂ ସେ ସେମାନଙ୍କୁ ପୁଣିଥରେ ଭେଟିବାକୁ ଅନୁରୋଧ କରିଥିଲେ । ପି.ସି. ଜୋଷୀଙ୍କର ସୂଚନା ପତ୍ର "ଦେ ମଷ୍ଟ ମିଟ୍" ଏବଂ ଆଲୋଚନା ବିଫଳ ହେବା ପରେ ଆଉ ଏକ 'ଦେ ମଷ୍ଟ ମିଟ୍ ଏଗେନ୍' ରାସ୍ତାରେ ସାଥୀମାନଙ୍କ ଦ୍ୱାରା ବିକ୍ରି ହୋଇଥିଲା । ଏହି ସମୟରେ ଜୋଷୀଙ୍କ କଲମରୁ ଅନେକ ଲେଖା ପ୍ରକାଶ ପାଇଥିଲା । ଅକ୍ଟୋବର ୭, ୧୯୪୫ରେ କଂଗ୍ରେସ-ଲିଗ୍-କମ୍ୟୁନିଷ୍ଟ ଜାତୀୟ ସଂଯୁକ୍ତ ଫ୍ରଣ୍ଟର ଆହ୍ୱାନ ଦିଆଯାଇଥିଲା । ଅକ୍ଟୋବର ୨୭, ୧୯୪୬ ପିପୁଲ୍ସ ଏଜ୍‌ରେ ଜୋଷୀ ନେହେରୁ-ଜିନ୍ନା ଆଲୋଚନାର ବିଫଳତା ସମ୍ପର୍କରେ ଉଲ୍ଲେଖ କରିଥିଲେ। ଏଥିରେ ଦର୍ଶାଇଥିଲେ ଯେ କିପରି ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ କଂଗ୍ରେସ-ଲିଗ୍ ନେତୃବୃନ୍ଦଙ୍କୁ ଚାଲ୍‌ରେ ଟପିଯାଇଥିଲେ ଏବଂ ଏହାର ଅନିବାର୍ଯ୍ୟ ଫଳାଫଳ ଥିଲା ସମ୍‌ଝୋତା ନୀତି।

ଜାତୀୟତା ପ୍ରଶ୍ନ ଏବଂ ରାଷ୍ଟ୍ରର ଆତ୍ମସ୍ଥିତି ଏପରିକି ବିଚ୍ଛିନ୍ନ ହେବାର ଅଧିକାର ସମ୍ପର୍କରେ ସୋଭିଏତ୍ ଢାଞ୍ଚା ଉପରେ ଆଧାରିତ ପାର୍ଟିର ମତ ହେତୁ କମ୍ୟୁନିଷ୍ଟ ପାର୍ଟିର ଛବି ମଳିନ ପଡ଼ିଗଲା। ଏହା ପରୋକ୍ଷରେ ପାକିସ୍ଥାନ ଓ ଶିଖ୍ ଜନ୍ମଭୂମି ଦାବିକୁ ସ୍ୱୀକୃତି ପ୍ରଦାନ ଥିଲା । ରାଷ୍ଟ୍ରର ଆତ୍ମସ୍ଥିତି ଦାବି ଉପସ୍ଥାପିତ କରିବା ମଧ୍ୟ ଥିଲା ପାର୍ଟି ପାଇଁ ମାରାତ୍ମକ ଭୁଲ୍ । ଏହା କମ୍ୟୁନିଷ୍ଟମାନଙ୍କୁ ଜାତୀୟ ମହାସ୍ରୋତରୁ ଏକଘରିଆ କରିଦେଲା ଏବଂ ସେମାନଙ୍କୁ ଏହାର ମୂଲ୍ୟ ୧୯୪୬ ଆସନ୍ତା ନିର୍ବାଚନରେ ଦେବାକୁ ହୋଇଥିଲା । ସମସ୍ତ କମ୍ୟୁନିଷ୍ଟମାନଙ୍କୁ କଂଗ୍ରେସ ସଭ୍ୟ ପଦ ତ୍ୟାଗ କରିବାକୁ କୁହାଗଲା । ଜୋଷୀ କଂଗ୍ରେସ-ଲିଗ୍-କମ୍ୟୁନିଷ୍ଟ ଜାତୀୟ ସଂଯୁକ୍ତ ଫ୍ରଣ୍ଟକୁ ସାଧାରଣ ସ୍ୱାଧୀନତା ଓ ରାଷ୍ଟ୍ରର ଆତ୍ମସ୍ଥିତି ପାଇଁ ଆହ୍ୱାନ କଲେ । ଜୋଷୀ ପିପୁଲ୍ସ ଏଜ୍‌ରେ ଲେଖିଥିଲେ, "ବ୍ରିଟିଶ୍ ଯୋଜନାକୁ ଖାରଜ କର - ଅଖିଳ ଭାରତ କଂଗ୍ରେସ କମିଟିକୁ କମ୍ୟୁନିଷ୍ଟ ପାର୍ଟିର ନିବେଦନ ।"

"ଯଦି କଂଗ୍ରେସ ରାଷ୍ଟ୍ରର ଆତ୍ମସ୍ଥିତି ସହିତ କଂଗ୍ରେସ ମନ୍ତ୍ରୀମଣ୍ଡଳ ଜମିଦାର ବ୍ୟବସ୍ଥାର ବିଲୋପ, ଲାଭଖୋରୀ ସମାପ୍ତି ଇତ୍ୟାଦି ଗ୍ରହଣ କରି ତୁରନ୍ତ ପଦକ୍ଷେପ ନେଇପାରେ, ତେବେ ସେମାନେ ସାଧାରଣ ମୁସଲମାନମାନଙ୍କୁ ଉତ୍ସାହିତ କରିବାରେ ସାହାଯ୍ୟ କରିପାରିବେ ନାହିଁ ବରଂ କଂଗ୍ରେସ ମଧ୍ୟରେ ଥିବା ହିନ୍ଦୁ ପୁଞ୍ଜିପତିଙ୍କ ପ୍ରତି ସନ୍ଦେହ

---

୨୭. ପିପୁଲ୍ସ ୱାର୍, ଅଗଷ୍ଟ ୨୦, ୧୯୪୪।

ସୃଷ୍ଟି କରିବ, କିନ୍ତୁ ଏହା ମଧ୍ୟ ଲିଗ୍ ମଧ୍ୟରେ ଥିବା ମୁସଲମାନ ସାମନ୍ତବାଦୀ ଜମିଦାରୀ ନେତୃତ୍ୱ ଏକତ୍ୱରୁ ଖସିଯିବାକୁ କଷ୍ଟସାଧ୍ୟ ହେବ ।"[୨୮]

ଯୋଷୀ ଅନୁଭବ କରିଥିଲେ ଯେ କଂଗ୍ରେସ ନେତୃତ୍ୱ ସାମ୍ରାଜ୍ୟବାଦୀ ଖାଲରେ ପଡ଼ିବାକୁ ଯାଉଛନ୍ତି । ସେ ପୁନଶ୍ଚ କହିଥିଲେ,

"ଆମେ ସ୍ୱାଧୀନତା ଆନ୍ଦୋଳନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଏବଂ ଯାହାକୁ ବ୍ରିଟିଶ୍‌ମାନେ ଆମ ଦେଶରେ ବହୁ ସମୟ ଶୋଷଣ କରି ରହିବାକୁ ସକ୍ଷମ ହୋଇଛନ୍ତି, ସେହି ବିବାଦ ହେଉଛି "ସଂଘ" ଓ "ବିଭାଜନ" । ହୁଏତ କଂଗ୍ରେସ ଏହି ବିବାଦକୁ ଗଣତାନ୍ତ୍ରିକ ମାଧ୍ୟମରେ ସମାଧାନ କରୁ କିମ୍ବା ବ୍ରିଟିଶ୍‌ମାନେ ଏକତା ନଷ୍ଟ କରିବା ଉଦ୍ଦେଶ୍ୟରେ ନିଜ କାର୍ଯ୍ୟରେ ଅନ୍ୟକୁ ଲଗାନ୍ତୁ ।"

ସେହି ଲେଖାରେ ସେ ସେହି ପରିସ୍ଥିତିରେ ବାମପନ୍ଥୀମାନଙ୍କର ଭୂମିକା କ'ଣ ତାହା କହିଥିଲେ,

"ବାମପନ୍ଥୀମାନଙ୍କର ମୁଖ୍ୟ ଦାୟିତ୍ୱ ହେଉଛି କଂଗ୍ରେସ ମଧ୍ୟରେ ରହି ବ୍ରିଟିଶ୍ ଯୋଜନା ବିରୁଦ୍ଧରେ ସଂଗ୍ରାମ କରିବା ଏବଂ ନୀତି ପାଇଁ ଗଣ ସଂଗ୍ରାମକୁ ତ୍ୱରାନ୍ୱିତ କରିବା । ବାମପନ୍ଥୀମାନେ କୌଣସି ସମଝୋତା ପାଇଁ ଠିଆ ହେବେ ନାହିଁ । ସେମାନେ ବ୍ରିଟିଶ ଯୋଜନାର ଦୂରଭିସନ୍ଧି ଦେଖି ପାରୁଛନ୍ତି । ସେମାନେ ଲୋକମାନଙ୍କର ଉତ୍ତେଜନା ବୃଦ୍ଧିକୁ ଲକ୍ଷ୍ୟକରି ପାରୁଛନ୍ତି । ସେମାନେ କ'ଣ ଅତ୍ୟଧିକ ପରିଷ୍କାର ବିଚାର ଓ ସାହସ ସଂଗ୍ରହ କରି କହିପାରିବେ ଏବଂ ନୀତି ବିରୁଦ୍ଧରେ ଲଢ଼େଇ କରି ପାରିବେ ଯାହାକି ଜାତୀୟ ସମ୍ମାନକୁ ରକ୍ଷା କରିବ, ଯାହା ବାସ୍ତବ ଗଣତାନ୍ତ୍ରିକ ନୀତି ଉପରେ ଆଧାରିତ ଏବଂ ଆମର ଆଗାମୀ ସ୍ୱାଧୀନତା ଆନ୍ଦୋଳନ ପାଇଁ ବାସ୍ତବିକ ମଞ୍ଚ ହେବ ?"

ଖୁବ୍ ସାହସର ସହିତ ଏହି ଯୋଜନାକୁ ଖାରଜ କରିବାକୁ କହି, ବର୍ଦ୍ଧିଷ୍ଣୁ ଆନ୍ଦୋଳନର ନେତୃତ୍ୱ ନେଇ ଏବଂ ରାଷ୍ଟ୍ରର ଆତ୍ମସ୍ଥିତିକୁ ସୁସ୍ପଷ୍ଟ ଭାବରେ ଗ୍ରହଣ କରି, ବାମପନ୍ଥୀମାନେ ରାଜନୈତିକ ସମଝୋତା ଓ ବିଭେଦକରଣ ବିରୁଦ୍ଧରେ ସଂଗ୍ରାମ କରିପାରିବେ ଏବଂ ଦେଶର ସମ୍ମାନକୁ ଉଦ୍ଧାର କରିପାରିବେ ?"[୨୯]

ଯୋଷୀ ଯେତେବେଳେ ଦେଖିଲେ ଯେ ଅଖିଳ ଭାରତ କଂଗ୍ରେସ କମିଟି ବ୍ରିଟିଶ ଯୋଜନାକୁ ଗ୍ରହଣ କଲେ, ସେ ହତୋତ୍ସାହ ହେଲେ ଏବଂ ଏହା ସମଝୋତାର ବିଜୟ ବୋଲି

---

୨୮. ପିପୁଲ୍ସ ଏଜ୍, ଜୁଲାଇ ୭, ୧୯୪୬ ।

୨୯. ତତ୍ରୈବ ।

ବିଚାର କଲେ । ସେ ସମ୍ବିଧାନ ପ୍ରସ୍ତୁତ ସଂସ୍ଥା ଓ ଜନଗଣଙ୍କ ସଂଗ୍ରାମ ଜାରୀ ରଖିବା ପରିବର୍ତ୍ତେ ବ୍ରିଟିଶ୍ ଯୋଜନା ବିରୁଦ୍ଧରେ ଭାରତୀୟ ଖସଡ଼ାକୁ କାର୍ଯ୍ୟକାରୀ କରିବା ପାଇଁ ଦେଶବ୍ୟାପୀ ପ୍ରଚାର କରିବାକୁ ଆହ୍ୱାନ କଲେ ।[୩୦]

ମୁସ୍‌ଲିମ୍ ଲିଗ୍ ତାହାର ପରିଷଦ ବୈଠକରେ ଏପରି ଯୁକ୍ତି ଉପସ୍ଥାପିତ କଲେ ଯାହା ତାହାର ବିଚ୍ଛିନ୍ନତାବାଦୀ ମନୋଭାବକୁ ପ୍ରକାଶ କଲା । ଏହା ଯୁକ୍ତି କରିଥିଲା ଯେ, ଯଦି କଂଗ୍ରେସ ପାକିସ୍ଥାନ ହେବାକୁ ଗ୍ରହଣ କରେ, ତେବେ ମୁସଲିମ୍ ଲିଗ୍ ବ୍ରିଟିଶ୍ ବିରୁଦ୍ଧରେ ସଂଯୁକ୍ତ ମୋର୍ଚ୍ଚା ଗଠନ କରିବ, କିନ୍ତୁ ତା' ପରିବର୍ତ୍ତେ କଂଗ୍ରେସ ଲିଗ୍‌କୁ ଅତିକ୍ରମ କରି ବ୍ରିଟିଶ୍ ସହିତ ମିଶି ନିଷ୍ପତ୍ତି କରିବାକୁ ଚାହିଁଲା । ତେଣୁ ଲିଗ୍ ନିଜ ବାଟରେ ଆଗେଇବାକୁ ଲାଗିଲା ।

ଲିଗ୍‌ର ଏହି ମନୋବୃତ୍ତିକୁ କମ୍ୟୁନିଷ୍ଟ ପାର୍ଟି ପତ୍ରିକାରେ ଅଗଣତାନ୍ତ୍ରିକ ବୋଲି ଉଲ୍ଲେଖ କରାଯାଇ ସମାଲୋଚନା କରାଯାଇଥିଲା ।

> "ଲିଗ୍ ନେତୃତ୍ୱ କ'ଣ ଭାବୁଛନ୍ତି ଯେ, ସେମାନେ କଂଗ୍ରେସ ବିରୁଦ୍ଧରେ ଏବଂ ହିନ୍ଦୁମାନଙ୍କ ବିରୁଦ୍ଧରେ ହିଂସାତ୍ମକ ପ୍ରଚାର କରି ସମଝୋତା ପାଇଁ ଏକ ସୁସ୍ଥ ବାତାବରଣ ସୃଷ୍ଟି କରୁଛନ୍ତି ? ସେମାନେ ଦେଶର ସବୁଠାରୁ ବୃହତ୍ତମ ରାଜନୈତିକ ସଂଗଠନକୁ ନିଜର ରାଜନୈତିକ ସହଯୋଗୀ ଭାବରେ ବିଚାର ନ କରି ଖୋଲାଖୋଲି ଭାବରେ ଶତ୍ରୁ ଭାବରେ ଘୋଷଣା କରିବା, ଦିନ ଦିନ ଧରି ନିର୍ବାଚିତ ସଭାପତିଙ୍କୁ ଅପମାନିତ କରିବା ଏବଂ ଲିଗ୍ ବାହାରେ ଥିବା ସମ୍ମାନିତ ମୁସଲମାନ ଦେଶପ୍ରେମୀମାନଙ୍କୁ କଦର୍ଯ୍ୟ ଭାଷାରେ ଗାଳିଦେବା ଉଚିତ କି ?"[୩୧]

ଏହି ରିପୋର୍ଟ ଅତ୍ୟନ୍ତ କୁଟ ସମାଲୋଚନା କରି ଉଲ୍ଲେଖ କରିଥିଲା:

> "କୌଣସି ଗଣତନ୍ତ୍ର ପ୍ରେମୀ ଲିଗ୍ ନେତୃତ୍ୱ ଦ୍ୱାରା ଉପସ୍ଥାପିତ କରାଯାଇଥିବା ପାକିସ୍ଥାନ ଦାବିକୁ ଗ୍ରହଣ କରିପାରିବେ ନାହିଁ ।"

ଜୁଲାଇ ୩୦, ୧୯୪୬ ମସିହାରେ ପି.ସି. ଜୋଷୀ ମୁସଲିମ୍ ଲିଗ୍‌ର ବ୍ରିଟିଶ୍ ପ୍ରସ୍ତାବ ପ୍ରତ୍ୟାଖ୍ୟାନ ସମ୍ପର୍କରେ ଏକ ବକ୍ତବ୍ୟ ଜାରୀ କରିଥିଲେ । "ଲିଗ୍‌ର ପ୍ରସ୍ତାବ କଂଗ୍ରେସ ନେତୃତ୍ୱର ଆଖି ଖୋଲିଦେବା ଉଚିତ ।" ସେ କଂଗ୍ରେସ ନେତୃତ୍ୱ ଏହି ଖସଡ଼ାକୁ ପ୍ରତ୍ୟାଖ୍ୟାନ କରିବାକୁ କହି ସାବାଳକ ଭୋଟ ଏବଂ ରାଷ୍ଟ୍ରର ଆତ୍ମସ୍ଥିତି ଜରିଆରେ ସାମ୍ବିଧାନିକ ସଭା ଗଠନର ଆହ୍ୱାନ ଦେବାକୁ କହିଥିଲେ ଏବଂ ବ୍ରିଟିଶ୍ ଭାରତ ଛାଡ଼ିବାକୁ ପ୍ରତ୍ୟାଖ୍ୟାନ କରିବା ବିରୁଦ୍ଧରେ ନେତୃତ୍ୱ ଲିଗ୍ ସହିତ ମିଶି ମିଳିତ ସଂଗ୍ରାମ କରୁ ବୋଲି ମଧ୍ୟ କହିଥିଲେ ।"[୩୨]

---

୩୦. ପିପୁଲ୍ସ ଏଜ୍, ଜୁଲାଇ ୧୪, ୧୯୪୬।

୩୧. ରିପୋର୍ଟ ବାଇ ସଜ୍ଜାଦ ଜହୀର ଅନ୍ ମୁସଲିମ୍ ଲିଗ୍ କାଉନ୍‌ସିଲ ମିଟିଂ ହେଲ୍ଡ ଅନ୍ ଜୁନ୍ ୫-୬, ୧୯୪୬, ନିଉ ଦିଲ୍ଲୀ, ପିପୁଲ୍ସ ଏଜ୍, ଜୁଲାଇ ୭, ୧୯୪୬।

୩୨. ପିପୁଲ୍ସ ଏଜ୍, ଅଗଷ୍ଟ ୪, ୧୯୪୬।

ଡକ୍ଟର ଜି. ଅଧିକାରୀଙ୍କ ଦ୍ୱାରା ପ୍ରସ୍ତୁତ ରାଷ୍ଟ୍ରର ଆତ୍ମସ୍ଥିତି ପ୍ରସ୍ତାବ ସମ୍ପର୍କରେ କମ୍ୟୁନିଷ୍ଟମାନେ ତୀବ୍ର ଭାବରେ ସମାଲୋଚିତ ହୋଇଥିଲେ । ଜୋଷୀ ମଧ ଏହି ତତ୍ତ୍ୱ ସମ୍ପର୍କରେ ସମ୍ପୂର୍ଣ୍ଣ ଭାବରେ ହୃଦ୍‌ବୋଧ ହୋଇନଥିଲେ ଏବଂ ତାଙ୍କର ମତ ମଧ ଅଧିକାରୀଙ୍କୁ ଜଣାଇଥିଲେ, କିନ୍ତୁ ଥରେ ପାର୍ଟି ନେତୃତ୍ୱ ଏହାକୁ ଗ୍ରହଣ କଲାପରେ ପାର୍ଟି ପତ୍ରିକା ନିୟମିତ ଭାବରେ ରାଷ୍ଟ୍ରର ଆତ୍ମସ୍ଥିତି ସମ୍ପର୍କରେ ସମାଧାନ ସୂତ୍ରରେ ବିଶେଷତ୍ୱକୁ ଲେଖା ମାଧ୍ୟମରେ ପ୍ରକାଶ କରୁଥିଲା। ଏଥିରେ ଲେଖାଥିଲା,

> "ଜାତୀୟତା ସମ୍ପର୍କରେ ରାଷ୍ଟ୍ରର ନିଜସ୍ୱ କ୍ଷମତାର ପ୍ରଶ୍ନ ନୁହେଁ ଯେ ଗୋଟିଏ ଜାତୀୟ ଅଙ୍ଗ ପୃଥକ ହେବ ବା ନ ହେବ । ଅପର ପକ୍ଷରେ ଏହା ଏକ ବୈପ୍ଲବିକ ସଂଯୁକ୍ତିକରଣ ନୀତି ଯାହା ସ୍ୱାଧୀନ ଭାରତରେ ଥିବା ପ୍ରତ୍ୟେକ ଜାତୀୟତାର ଲୋକମାନଙ୍କୁ ବାସ୍ତବ ସ୍ୱାଧୀନତା ଓ ଗଣତନ୍ତ୍ରର ନିର୍ଭୋରୋକ୍ତି ପ୍ରଦାନ କରିବ ।
>
> ଜାତୀୟତା ସମ୍ପର୍କରେ ରାଷ୍ଟ୍ରର ଆତ୍ମସ୍ଥିତିର ଅର୍ଥ ହେଉଛି ସେହି ଜାତୀୟତାରେ ସାଧାରଣ ଲୋକମାନଙ୍କୁ ଏକାଠି କରାଇବା, ହିନ୍ଦୁ ଓ ମୁସଲମାନ ଏକାଠି ହୋଇ ସାମ୍ରାଜ୍ୟବାଦୀ - ସାମନ୍ତବାଦୀ ଶାସନ ବିରୁଦ୍ଧରେ, ରାଜାରାଜୁଡ଼ାଙ୍କର ସ୍ୱେଚ୍ଛାଚାର ଓ ଜମିଦାରୀ ବ୍ୟବସ୍ଥା ବିରୁଦ୍ଧରେ ସଂଗ୍ରାମ କରିବେ ।"[୩୩]

୧୯୪୬-୪୭ରେ ଆରପିଡ଼ି (ରଜନୀ ପାମେ ଦତ୍ତ) ସିପିଆଇର ପାକିସ୍ଥାନ-ଜାତୀୟତା ସମ୍ପର୍କରେ ରାଷ୍ଟ୍ରର ଆତ୍ମସ୍ଥିତି ତତ୍ତ୍ୱକୁ ଫୋଡ଼ି ପକାଇଲେ । ଏହାର ବହୁ ପରେ ୧୯୫୧ରେ ଜୋଷୀ ଏକ ସାକ୍ଷାତକାର ସମୟରେ ଏହି ତଥ୍ୟକୁ ଉନ୍ମୋଚନ କରିଥିଲେ ଏବଂ କହିଥିଲେ ଯେ ଏହି ତତ୍ତ୍ୱର ବିନ୍ଧାଣୀ ଡକ୍ଟର ଅଧିକାରୀଙ୍କୁ ଆରପିଡ଼ିଙ୍କ ଉଦ୍ଦେଶ୍ୟକୁ ବୁଝିବାକୁ ଛ'ମାସ ସମୟ ଲାଗିଥିଲା। ଜୋଷୀଙ୍କ ଅନୁସାରେ କଂଗ୍ରେସ-ଲିଗ୍ ଏକତ୍ରର ଏକ ଜାତୀୟ ସରକାର ହେଉଛି ଯୁଦ୍ଧ ସମୟ ଶେଷ ପର୍ଯ୍ୟନ୍ତ ଠିକ୍; କିନ୍ତୁ ପାକିସ୍ଥାନ ଆଧାରରେ କଂଗ୍ରେସ-ଲିଗ୍ ଏକତ୍ୱ ଭୁଲ । ସେ କହିଥିଲେ,

> "ପାକିସ୍ଥାନ ସମ୍ପର୍କରେ କଂଗ୍ରେସର ଗୋଷ୍ଠୀଗତ ଦୃଷ୍ଟିକୋଣକୁ ଦୋଷଦେବା ଓ ସମାଲୋଚନା କରିବା ଆମ୍ଭମାନଙ୍କ ଦ୍ୱାରା ଠିକ୍, କିନ୍ତୁ ଜିନ୍ନାଙ୍କ ସମ୍ପର୍କରେ ଆମର ସମାଲୋଚନାମୂଳକ ଦୃଷ୍ଟିଭଙ୍ଗୀ ନାହିଁ । ଦ୍ୱିତୀୟରେ ଆମେ ପାକିସ୍ଥାନକୁ ଜାତୀୟତା ସମ୍ପର୍କରେ ରାଷ୍ଟ୍ରର ଆତ୍ମସ୍ଥିତି ସହିତ ବିଚାର କରୁଛୁ। ନୀତିଗତ କୌଶଳ ହେଉଛି ଏ ସମ୍ପର୍କରେ କାର୍ଯ୍ୟ କରିବା ।"[୩୪]

---

୩୩. ପିପୁଲ୍ସ ଏଜ୍, ଅଗଷ୍ଟ ୧୮, ୧୯୪୬।

୩୪. ପି.ସି. ଜୋଷୀ, କୋଶ୍ଚେନ-ଆନ୍‌ସାର ସେସନ ଇନ୍ ପାର୍ଟି ହେଡ୍‌କ୍ୱାର୍ଟସ୍, ଏପ୍ରିଲ୍ ୬, ୧୯୫୧, ଫାଇଲ୍ ନମ୍ବର ସିପିଆଇ ୧୯୫୧/୪୭, ଆରକାଇଭିସ୍ ଅଫ୍ କନ୍‌ଟେମ୍ପରାରି ଇଣ୍ଡିଆ, ଜେଏନ୍‌ୟୁ।

କମ୍ୟୁନିଷ୍ଟ ପାର୍ଟି ଅନୁଭବ କରିଥିଲା ଯେ, ମୁସଲିମ୍ ଲିଗ୍ ସାମ୍ରାଜ୍ୟବାଦ ବିରୋଧୀ ଉଲ୍ଲାସ ମୁସଲମାନ ଲୋକମାନଙ୍କ ମଧ୍ୟରେ ସୃଷ୍ଟି କରିପାରିବା ବେଳେ ସେମାନଙ୍କୁ ବିଚ୍ଛିନ୍ନତାବାଦୀ ଏକତ୍ରୀକରଣ ପାଇଁ ଭୁଲ ନିର୍ଦ୍ଦେଶ ଦେଉଛନ୍ତି । ଉତ୍ତର-ପଶ୍ଚିମ ଓ ଉତ୍ତର-ପୂର୍ବ ଅଞ୍ଚଳରେ ଯେଉଁଠାରେ ଲୋକସଂଖ୍ୟାର ୪୦ ପ୍ରତିଶତ ଅଣ-ମୁସଲମାନ ସେଠାରେ ମୁସଲିମ୍ ଲିଗ୍ ଏକ ଅଲଗା ରାଜ୍ୟ ଦାବି କରିବା, ସେହି ଅଞ୍ଚଳରେ ଥିବା ଲୋକମାନଙ୍କୁ ଗଣତାନ୍ତ୍ରିକ ପ୍ରକ୍ରିୟାରେ ଭୋଟ ଅଧିକାର ନଦେବା ଏବଂ ଜାତୀୟତା ଭିତ୍ତିରେ ରାଷ୍ଟ୍ରର ଆତ୍ମସ୍ଥିତି ନ ଦେବା ସମ୍ପୂର୍ଣ୍ଣ ଅଗଣତାନ୍ତ୍ରିକ ।[୩୫]

କଂଗ୍ରେସ ଓ ଲିଗ୍‌କୁ କମ୍ୟୁନିଷ୍ଟ ପାର୍ଟିର ନିବେଦନ ନିଷ୍ଫଳ ପ୍ରମାଣିତ ହେଲା । ଜୁଲାଇ ୨୯, ୧୯୪୬ରେ ସର୍ବଭାରତୀୟ ମୁସଲିମ ଲିଗ୍ ତାହାର ବମ୍ବେ ପରିଷଦ ବୈଠକରେ ଏକ ପୃଥକ ରାଷ୍ଟ୍ର ପାକିସ୍ଥାନ ଗଠନ ପାଇଁ ତା'ର ପ୍ରତ୍ୟକ୍ଷ ଆନ୍ଦୋଳନ କାର୍ଯ୍ୟକ୍ରମ ଜାରୀ କରିବାକୁ ତାରିଖ ଧାର୍ଯ୍ୟ ହେଲା ଏବଂ ସରକାର ଉପରେ ଚାପ ପକାଇବାକୁ ସ୍ଥିର ହେଲା, କିନ୍ତୁ ଏହାର ପରବର୍ତ୍ତୀ ଅବସ୍ଥା ହେଲା ଭୟଙ୍କର ଦଙ୍ଗା ଯାହା ସମଗ୍ର ଦେଶକୁ ବ୍ୟାପିଗଲା । ସବୁଠାରୁ ବେଶି କ୍ଷତି ହେଲା କଲିକତା ଏବଂ କଲିକତାରେ ସବୁଠାରୁ ଅଧିକ ହତ୍ୟା ଇତିହାସରେ ଲିପିବଦ୍ଧ ହୋଇ ରହିଛି । ଦଙ୍ଗା ବମ୍ବେ, ପଞ୍ଜାବ ଓ ଉତ୍ତର ପ୍ରଦେଶକୁ ବ୍ୟାପିଗଲା । ହିନ୍ଦୁ ଓ ମୁସଲମାନମାନଙ୍କର ଅମାନୁଷିକ ହତ୍ୟା ଓ ବିଭୀଷିକାର ବିବରଣୀ ପ୍ରକାଶ ପାଇଲା । କମ୍ୟୁନିଷ୍ଟମାନେ ରିଲିଫ୍ ଓ ଉଦ୍ଧାର କାର୍ଯ୍ୟରେ ଲାଗିଗଲେ ।[୩୬]

ଜୋଷୀ ସମସ୍ତ ସଭ୍ୟମାନଙ୍କୁ ରିଲିଫ୍ କମିଟିମାନ ଗଠନ କରିବାକୁ ନିର୍ଦ୍ଦେଶ ଦେଲେ, ଶରଣାର୍ଥୀମାନଙ୍କର ଦୁର୍ଦ୍ଦଶା ମୋଚନ କରିବା ପାଇଁ କାର୍ଯ୍ୟ କରିବାକୁ ଏବଂ ଅଧିକ ଦଙ୍ଗା ଯେପରି ନ ଘଟିବ ତାହାକୁ ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲେ । ସେହି ସମୟରେ ବ୍ରିଟିଶ୍ ଶାସନଠାରୁ ସ୍ୱାଧୀନତା ପାଇବା ପାଇଁ ହିନ୍ଦୁ-ମୁସଲମାନ ଏକତା ଉପରେ ଗୁରୁତ୍ୱ ଦେଲେ । ଜୋଷୀ ବିଚାର କରିଥିଲେ ଯେ ଲୋକମାନଙ୍କ ମଧ୍ୟରେ କାର୍ଯ୍ୟ କରିବା, ସେମାନଙ୍କୁ ସାହାଯ୍ୟ କରିବା ଏବଂ ଏକାଠି ରହିବା ସେହି ମୁହୂର୍ତ୍ତରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ । ସେହି ଦଙ୍ଗା ସ୍ଥିତି ମଧ୍ୟରେ ସେ ନିଜେ ପାଗଳଙ୍କ ପରି ଦେଶବ୍ୟାପୀ ବୁଲୁଥିଲେ । ଜୋଷୀ ଅନୁଭବ କରିଥିଲେ ଯେ ଲିଗ୍‌ର ସଂଗ୍ରାମ ଗୃହଯୁଦ୍ଧ ଆଡ଼କୁ ଗତି କରିଛି, ସାମ୍ରାଜ୍ୟବାଦ-ବିରୋଧୀ ଯୁଦ୍ଧ ନୁହେଁ । ଜୋଷୀ ଲେଖିଥିଲେ, "ପୁରୁଣା ଢାଞ୍ଚାର ଏହା ସାମ୍ପ୍ରଦାୟିକ ଦଙ୍ଗା ନୁହେଁ । ଏହା ରାଜନୈତିକ ଦଙ୍ଗା- କଂଗ୍ରେସ ଓ ଲିଗ୍ ମଧ୍ୟରେ ଦ୍ୱନ୍ଦ୍ୱର ପ୍ରତ୍ୟକ୍ଷ ଫଳ । ସେମାନେ ଏତେଦୂର ଅଗ୍ରସର ହୋଇ ଯାଇଛନ୍ତି ଯେ, ସବୁକିଛି ଗଦା ହୋଇଯାଇଛି - ସାଧାରଣ ଜୀବନ, ସାଧାରଣ ସଂଗ୍ରାମ ଓ ସାଧାରଣ ସ୍ୱାଧୀନତା । କେବଳ ବ୍ରିଟିଶ୍ ରାଜତ୍ୱ ନିରାପଦ ।"[୩୭]

---

୩୫. ପିପୁଲ୍ସ ଏଜ୍, ଅଗଷ୍ଟ ୧୮, ୧୯୪୬।

୩୬. ପିପୁଲ୍ସ ଏଜ୍, ଅଗଷ୍ଟ ୨୫, ୧୯୪୬।

୩୭. ପିପୁଲ୍ସ ଏଜ୍, ଅକ୍ଟୋବର ୨୭, ୧୯୪୬।

ସାମ୍ପ୍ରଦାୟିକ ମାନସିକ ଆଘାତର ଧ୍ୱଂସ ସାଧନ ମଧ୍ୟରେ, ଗାନ୍ଧି ଓ ନେହେରୁଙ୍କ ସମାଲୋଚନା କ୍ଷମତା ଓ ଜାତୀୟ ବୈଶିଷ୍ଟ୍ୟ ଯୋଶୀଙ୍କର ଥିଲା, ଯେ କି ହିନ୍ଦୁ, ମୁସଲମାନ ଓ ଶିଖ୍‌ମାନଙ୍କୁ ନିବେଦନ କରିପାରିଥିଲେ । ତୃଣମୂଳ ସ୍ତରର ଲୋକମାନଙ୍କ ନିକଟକୁ ତାଙ୍କର ନିବେଦନକୁ ସାଥୀମାନେ ନେଇ ପହଞ୍ଚାଇ ଥିଲେ ଏବଂ ସବୁ ମତର ବିବେକୀ ବ୍ୟକ୍ତିମାନଙ୍କର ହୃଦୟକୁ ଏହା ସ୍ପର୍ଶ କରିଥିଲା । ଯେତେବେଳେ ନେହେରୁ ଦେଖିବାକୁ ପାଇଲେ ଯେ ଗୋବିନ୍ଦ ବଲ୍ଲଭ ପନ୍ଥ ରାଷ୍ଟ୍ରୀୟ ସ୍ୱୟଂସେବକମାନଙ୍କ ପ୍ରତି କୋହଳ ହେଉଛନ୍ତି, ସେ ଯୋଶୀଙ୍କୁ ପନ୍ଥଙ୍କ ନିକଟକୁ ଯିବାକୁ କହିଲେ କାରଣ ତାଙ୍କ ମା'ଙ୍କ ଆଡୁ ସେ ଥିଲେ ଯୋଶୀଙ୍କର ନିକଟ ସମ୍ପର୍କୀୟ । ଯୋଶୀ ସେହି ମୁହୂର୍ତ୍ତରେ ତାଙ୍କର ତଥ୍ୟ ଓ ସଂଖ୍ୟା ଉପରେ ଆଧାରିତ ଅକାଟ୍ୟ ଯୁକ୍ତି ସାହାଯ୍ୟରେ ପଟେଲଙ୍କୁ ହୃଦବୋଧ କରାଇ ପାରିଥିଲେ । ଏହି ଘଟଣା ଓ ପୂର୍ବର ଗାନ୍ଧି-ଯୋଶୀ ପ୍ରତ୍ୟାଳାପରୁ ଦେଖାଯାଏ ଯେ ଯୋଶୀ ସିପିଆଇର ସାଧାରଣ ସମ୍ପାଦକ ହେବାର ଅଳ୍ପ କେତେବର୍ଷ ମଧ୍ୟରେ ଜାତୀୟ ବୈଶିଷ୍ଟ୍ୟ ହାସଲ କରିପାରିଥିଲେ । ତାଙ୍କର କ'ଣ ଏମିତି ବିଶେଷତ୍ୱ ଥିଲା ? ଯଦି ଯୋଶୀଙ୍କୁ ବିଶ୍ଳେଷଣ କରାଯାଏ ତେବେ ଦେଖାଯିବ ଯେ ସେ କଂଗ୍ରେସ ଦ୍ୱାରା ସିପିଆଇ ଉପରେ ହେଉଥିବା ସମାଲୋଚନାକୁ କେବେହେଲେ ଉପେକ୍ଷା କରି ନାହାନ୍ତି ଏବଂ ଯେତେଦୂର ସମ୍ଭବ କଂଗ୍ରେସ ଏପରିକି ଗାନ୍ଧିଜୀଙ୍କୁ ଉତ୍ତର ଦେଇଛନ୍ତି । ସେ କେବେହେଲେ ପାର୍ଟିର ରାଜନୈତିକ ମର୍ଯ୍ୟାଦାକୁ ସମଝୋତା କରି ନାହାନ୍ତି ଏବଂ ବହୁ ସମୟରେ ସେ ଯାହା କହିଛନ୍ତି ବା ଲେଖିଛନ୍ତି ସେଥିରେ ଅତ୍ୟଧିକ କଟୁ ହୋଇଛନ୍ତି । ତଥାପି, ସେ ଏପରି ଭାଷାର ବ୍ୟବହାର କରିଛନ୍ତି, ଯେ କେହି ଅବଧାରଣା କରିପାରିବ ନାହିଁ ଯେ ସେ ବିରୋଧୀମାନଙ୍କ ସହିତ କଥାବାର୍ତ୍ତା କରୁଛନ୍ତି । ତାଙ୍କ ଶବ୍ଦର ରୂଢ଼ି କଂଗ୍ରେସ ଲୋକଙ୍କୁ କମ୍ୟୁନିଷ୍ଟମାନଙ୍କର ଅବସ୍ଥିତି ସମ୍ପର୍କରେ ବୁଝିବାରେ ଓ ଯଥୋଚିତ ରୂପେ ଉପଲବ୍ଧି କରିବାରେ ସାହାଯ୍ୟ କରିଛି । ସେଇଥିପାଇଁ ପି.ସି. ଯୋଶୀ ଗ୍ରହଣୀୟ ହୋଇଥିଲେ ଏବଂ ବ୍ୟାପକ ଗୋଷ୍ଠୀର ଲୋକମାନଙ୍କର ପ୍ରଶଂସାଭାଜନ ହୋଇଥିଲେ ।

ସ୍ୱାଧୀନତା ଆସୁଛି । ୧୯୪୬ ଅଗଷ୍ଟ ୧୬-୧୯ ବୃହତ କଲିକତା ହତ୍ୟା ପରେ ଅକ୍ଟୋବର ୧୯୪୬ରେ ହିଂସା ଜନିତ ଦଙ୍ଗା, ଧର୍ଷଣ, ମହିଳାମାନଙ୍କୁ ବଳପୂର୍ବକ ଅପହରଣ, ନୂଆଖାଲି ଟିପେରା ଅଞ୍ଚଳରେ ସଂଗଠିତ ହୋଇଛି । ଗାନ୍ଧିଜୀ ନୂଆଖାଲିକୁ ତୁରନ୍ତ ଯାଇଛନ୍ତି ଏବଂ ହିନ୍ଦୁ ଓ ମୁସଲମାନମାନଙ୍କୁ ଏକାଠି କରିବାକୁ ଚେଷ୍ଟା କରିଛନ୍ତି ଯାହା ଫଳରେ ଦେଶ ଭାଗ ଭାଗ ହେବନାହିଁ । ଯୋଶୀ ଜାଣିଛନ୍ତି ଯେ ପ୍ରତିଶୋଧ ନେବାର ଅନୁଭବ ପ୍ରତି - ପ୍ରତିଶୋଧ ନେବା ଦ୍ୱାରା ଦୂର ହୋଇପାରିବ ନାହିଁ । ନୂଆଖାଲିର ଲୋକମାନଙ୍କ ପ୍ରତି ସମବେଦନା ଜଣାଇ ଅକ୍ଟୋବର ୨୦, ୧୯୪୬ରେ ଯୋଶୀ ଏକ ବକ୍ତବ୍ୟ ଜାରୀ କରିଥିଲେ,

> "ମୁଁ ଆନ୍ତରିକତାର ସହିତ ନ୍ୟାୟସଙ୍ଗତ ଭାବରେ ଆଘାତ ପାଇଥିବା ମୋର ହିନ୍ଦୁ ଭାଇମାନଙ୍କୁ ଉତ୍ତେଜିତ ନ ହେବା ପାଇଁ ନିବେଦନ କରୁଛି । ପ୍ରତିଶୋଧ ନେବାର ମନୋବୃତ୍ତି ପରସ୍ପର ପରସ୍ପରକୁ ହତ୍ୟା କରିବାକୁ ବୃଦ୍ଧି କରିବ ଏହାଦ୍ୱାରା କେବଳ

ବ୍ରିଟିଶ୍ ସାମ୍ରାଜ୍ୟବାଦୀମାନେ ଉତ୍ସାହିତ ହେବେ । ପୂର୍ବ ବଙ୍ଗରେ ଥିବା ହିନ୍ଦୁମାନଙ୍କୁ ବଡ଼ ସାହାଯ୍ୟ ହେବ ଯଦି ସେମାନଙ୍କୁ ଆଘାତ ନ କରି ଯେଉଁଠାରେ ସଂଖ୍ୟାଲଘୁ ମୁସଲମାନ ଅଛନ୍ତି ସେମାନଙ୍କର ସମ୍ପୂର୍ଣ୍ଣ ନିରାପତ୍ତାକୁ ଗ୍ୟାରେଣ୍ଟି କରାଯାଇପାରିବ ।"[୩୮]

ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ, ତାଙ୍କର ସଂଗ୍ରାମର କେନ୍ଦ୍ରବିନ୍ଦୁ ଥିଲା ସାମ୍ପ୍ରଦାୟିକ ଶାନ୍ତି ପ୍ରତିଷ୍ଠା କରିବା । ସେ ପାର୍ଟି ସାଥୀମାନଙ୍କୁ ଓ ସମର୍ଥକମାନଙ୍କୁ ଦଙ୍ଗା ଅବସ୍ଥାରେ ନିଜ ନିଜ ଅଞ୍ଚଳରେ କାର୍ଯ୍ୟ କରିବାକୁ କହିଥିଲେ । ସେ ସହିଦ ହୋଇଥିବା ସାଥୀ ଲାଲ ମୋହନ ସେନ କିପରି ସଂଖ୍ୟାଲଘୁମାନଙ୍କ ଜୀବନ ବଞ୍ଚାଇଥିଲେ ତାହାର ଉଦାହରଣ ଦେଇଥିଲେ । ସେ ଗଣ ସଂଗଠନର ନେତାମାନଙ୍କୁ, ଶ୍ରମିକ ଓ କୃଷକ ସାଥୀମାନଙ୍କୁ ଦଙ୍ଗା ଶେଷ ହେବା ପର୍ଯ୍ୟନ୍ତ ଜଗି ରହିବାକୁ କହିଥିଲେ ।[୩୯]

ଯୋଷୀ ଲିଗ୍‌ର ଘୃଣାଭାବ ପ୍ରଚାରକୁ ନିନ୍ଦା କରିଥିଲେ ଏବଂ ସାଧାରଣ ଲୋକମାନଙ୍କର ମିଳିତ ସଂଗ୍ରାମ ହିଁ ଆଗକୁ ଅଗ୍ରସର କରିପାରିବ ବୋଲି ଆହ୍ୱାନ ଦେଇଥିଲେ ।[୪୦] ସେ କଂଗ୍ରେସ ନେତୃତ୍ୱକୁ ବ୍ରିଟିଶ୍ ଖସଡ଼ାକୁ ଖାରଜ କରିବା ପାଇଁ ବାରମ୍ବାର ନିବେଦନ କରିଥିଲେ। ୧୯୪୬ରେ ଏଆଇସିସିର ମିରଟ୍ ଅଧିବେଶନରେ ନିଜର ନିବେଦନକୁ ସୁସ୍ପଷ୍ଟ ଭାବରେ, ଦୃଢ଼ ବିଶ୍ୱାସର ସହିତ ନିଜର ଯୁକ୍ତିକୁ ଉଲ୍ଲେଖ କରିଥିଲେ,

> କେବଳ ଆମର ପାର୍ଟି ହିଁ ସତର୍କ କରି ଦେଇଥିଲା ଯେ ବ୍ରିଟିଶ ଖସଡ଼ାରେ କ୍ଷମତା ହସ୍ତାନ୍ତର ନାହିଁ, କେବଳ ଭାରତୀୟ ପାର୍ଥକ୍ୟତାକୁ ପୋଷଣ କରିବା, ଭାରତୀୟ ବିପ୍ଳବର ଧ୍ୱଂସସାଧନ କରିବା ଏବଂ ପରସ୍ପର ମଧ୍ୟରେ ସଂଘର୍ଷ କରୁଥିବା ହିନ୍ଦୁ ଓ ମୁସଲମାନଙ୍କୁ ବିଭିନ୍ନ ଜୋନ୍‌ରେ ବିଭକ୍ତ କରି ଏକ ବିଭାଜିତ ଭାରତ ଗଠନ କରିବା ଯାହାକି ବ୍ରିଟିଶ୍‌ମାନଙ୍କ ଦ୍ୱାରା ସେମାନଙ୍କର ପଞ୍ଚମ ସ୍ତମ୍ଭ ଭାରତୀୟ ରାଜାରାଜୁଡ଼ାଙ୍କ ଦ୍ୱାରା ନିୟନ୍ତ୍ରିତ ହେବ ।
>
> କଂଗ୍ରେସ ନେତୃତ୍ୱ ଅନ୍ୟ ପ୍ରକାର ବିଚାର କରୁଥିଲେ । ସେମାନେ ବ୍ରିଟିଶ୍ ଖସଡ଼ା ସ୍ୱାଧୀନତାର ପାହାଚ ଭାବରେ ଦେଖୁଥିଲେ। ସେମାନେ ସମସ୍ତ ସମାଲୋଚନାକୁ ବନ୍ଦ କରିଦେଲେ କାରଣ ଏହି ଯୁକ୍ତିରେ ଯେ ଲୋକମାନେ ସଶକ୍ତ ଭାବରେ ଦଣ୍ଡାୟମାନ। ଏହା ସତ୍ୟ ଅଟେ। କଂଗ୍ରେସ ମଧ୍ୟ ସୁଦୃଢ଼। ଏହା ମଧ୍ୟ ସତ୍ୟ ଅଟେ। ତେଣୁ ବ୍ରିଟିଶ୍‌ମାନେ ଛାଡ଼ି ଯିବାକୁ ପ୍ରସ୍ତୁତ, ଏହା କିନ୍ତୁ ଆଦୌ ସତ୍ୟ ନୁହେଁ ।"

ମିରଟ୍ ଅଧିବେଶନ ବ୍ରିଟିଶ୍ ଖସଡ଼ାକୁ ସମ୍ପୂର୍ଣ୍ଣ ଖାରଜ କରିବାକୁ ଆହ୍ୱାନ ଦେବା

---

୩୮. ପିପୁଲ୍ସ ଏଜ୍, ଅକ୍ଟୋବର ୨୭, ୧୯୪୬।

୩୯. ପି.ସି. ଯୋଷୀ - "ଟୁ ଅଲ୍ ପାର୍ଟି ମେମ୍ବରସ୍ ଆଣ୍ଡ ସିମ୍ପାଥାଇଜରସ୍", ପିପୁଲ୍ସ ଏଜ୍, ସେପ୍ଟେମ୍ବର ୧୪, ୧୯୪୭।

୪୦. ପିପୁଲ୍ସ ଏଜ୍, ନଭେମ୍ବର ୩, ୧୯୪୬।

ଉଚିତ ଏବଂ ପୂର୍ଣ୍ଣ ଭାବରେ ଘୋଷଣା କରିବା ଦରକାର ଯେ କଂଗ୍ରେସ କେବଳ ଭାରତର ସମ୍ପୂର୍ଣ୍ଣ ସ୍ୱାଧୀନତା ଆଧାରରେ, ଜାତୀୟ ଆତ୍ମସ୍ଥିତି ଓ ବାସ୍ତବ ଗଣତନ୍ତ୍ର ପାଇଁ ଏକ ସମ୍ବିଧାନ ଚିଠା ପ୍ରସ୍ତୁତ କରିବ ।"[୪୧]

ମାର୍ଚ୍ଚ ୧୯୪୭ରେ ମାଉଣ୍ଟବେଟେନ ତାଙ୍କର ଖସଡ଼ା ଉପସ୍ଥାପିତ କଲେ ଏବଂ କ୍ଷମତା ହସ୍ତାନ୍ତର ପାଇଁ ନେତାମାନଙ୍କ ସହିତ ଅନେକଗୁଡ଼ିଏ ସମ୍ମିଳନୀ ଅନୁଷ୍ଠିତ ହେଲା। କିନ୍ତୁ ଗାନ୍ଧିଜୀ ଏହି ଆଲୋଚନାମାନଙ୍କରେ ଅଂଶ ଗ୍ରହଣ କଲେନାହିଁ କାରଣ ସେ ବିଭାଜନ ଚାହୁଁ ନଥିଲେ।

୧୯୪୬ ମସିହାରେ ଡେଲିଓ୍ୱାକର ପ୍ରତିନିଧି ଭାବରେ କ୍ୟାବିନେଟ୍ ମିଶନର କାର୍ଯ୍ୟ ଲିପିବଦ୍ଧ କରିବା ପାଇଁ ଆରପିଡ଼ି ଭାରତ ପରିଦର୍ଶନରେ ଆସିଲେ । ଏହା ଯୋଷୀଙ୍କ ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା । ଆରପିଡ଼ି କଂଗ୍ରେସ ନେତୃବୃନ୍ଦ ଓ ନେହେରୁଙ୍କ ସହିତ ଦୁଇଥରରୁ ଅଧିକ ସାକ୍ଷାତ କଲେ । ପାର୍ଟି ନେତୃତ୍ୱ ମଧ୍ୟ ଆରପିଡ଼ିଙ୍କୁ ସାକ୍ଷାତ କରିଥିଲେ ଯେଉଁ ସମ୍ପର୍କରେ ପରବର୍ତ୍ତୀ ସମୟରେ ଯୋଷୀ ଉଲ୍ଲେଖ କରିଥିଲେ :

"ସେ (ଆରପିଡ଼ି) ଅତ୍ୟଧିକ ସତର୍କତା ଅବଲମ୍ବନ ଉପରେ ଗୁରୁତ୍ୱ ଦେଇଥିଲେ ଏବଂ ସେହି ମାର୍ଗରେ ନୂତନ ବିଚାରକୁ ଧରି ରଖିବାକୁ କହିଥିଲେ। ଏକ ନୂତନ ଐତିହାସିକ ଅଧ୍ୟାୟ ଆରମ୍ଭ ହେଉଛି । କାର୍ଯ୍ୟସୂଚୀରେ ଭାରତର ସ୍ୱାଧୀନତା ରହିଛି। ବ୍ରିଟିଶ୍ ସାମ୍ରାଜ୍ୟବାଦ ହତାଶ ହେତୁ ସମ୍ପୂର୍ଣ୍ଣ ଧ୍ୱଂସମୂଳକ ଚକ୍ରାନ୍ତ ପ୍ରୟୋଗ କରିବାକୁ ଚେଷ୍ଟା କରିବ । ଭାରତୀୟ ପାର୍ଟି ଅବସ୍ଥାର ଦ୍ରୁତ ଉତ୍ଥାନ ପତନ ମଧ୍ୟରେ ନିଜକୁ ସମ୍ପୂର୍ଣ୍ଣ ଜାଗତିଆର କରି ରଖିବା ଦରକାର ।

ଆରପିଡ଼ି କହିଲେ ଯେ ନେହେରୁ ଅତ୍ୟନ୍ତ ଭଦ୍ର କିନ୍ତୁ ଦୁର୍ବଳ । ତାଙ୍କ ଦଳରେ ଥିବା ଦକ୍ଷିଣ ପନ୍ଥୀମାନଙ୍କ ଦ୍ୱାରା ସେ ଭାସିଯିବାର ସମ୍ପୂର୍ଣ୍ଣ ବିପଦ ରହିଛି ।"

ଆରପିଡ଼ିଙ୍କ ଉପଦେଶ ଥିଲା:

"କଂଗ୍ରେସ ସହିତ ଭାଙ୍ଗିଯାଇଥିବା ସମ୍ପର୍କକୁ ଯୋଡ଼ । ସିପିଆଇ ଓ କଂଗ୍ରେସ ମଧ୍ୟରେ ଯୁଦ୍ଧର ଚରିତ୍ରକୁ ନେଇଥିବା ପାର୍ଥକ୍ୟ ଅତୀତର କଥା, କିନ୍ତୁ ମୁସଲିମ୍ ଲିଗ୍‌ର ପାକିସ୍ଥାନ ଦାବି ହେଉଛି ବାସ୍ତବ ପ୍ରତିବନ୍ଧକ । ଆରପିଡ଼ି ପାକିସ୍ଥାନ ଗଠନ ପାଇଁ ଆମର ସମର୍ଥନକୁ ରାଜି ହୋଇନଥିଲେ କାରଣ ଆମର ବିଚାର ଥିଲା ଜାତୀୟତାବାଦୀ ସମସ୍ୟାକୁ ଲେନିନ୍‌ବାଦୀ ଶିକ୍ଷାର ବାସ୍ତବ ପ୍ରୟୋଗ ।"[୪୨]

---

୪୧. ପିପୁଲ୍ସ ଏଜ୍, ନଭେମ୍ବର ୧୭, ୧୯୪୬।

୪୨. ପି.ସି. ଯୋଷୀ : ରଜନୀ ପାମେ ଦତ୍ତ, ଆନ୍ ଇଣ୍ଡିଆନ୍ କମ୍ୟୁନିଷ୍ଟ।

ଆତ୍ମସ୍ଥିତି ପ୍ରଶ୍ନ ନେଇ ପାର୍ଟି ଭିତରେ ପୁନଃ ବିଚାର ଆରମ୍ଭ ହୋଇଯାଇଥାଏ। ପାକିସ୍ଥାନ ସପକ୍ଷରେ ଲେନିନ୍‌ଙ୍କ ବିଚାରର ଦୁରୁ-ପ୍ରୟୋଗକୁ ପରିତ୍ୟାଗ କରାଯାଇଥାଏ । କମ୍ୟୁନିଷ୍ଟ ନେତୃତ୍ୱ ହିନ୍ଦୁ ମୁସଲମାନ ଏକତା ଉପରେ ଗୁରୁତ୍ୱଆରୋପ କରି କଂଗ୍ରେସ ଓ ମୁସଲିମ୍ ଲିଗ୍ ପରସ୍ପର ପରସ୍ପର ସହମତି ଭିତ୍ତିରେ ଭାରତର ସ୍ୱାଧୀନତା ପାଇଁ ରାଜିନାମା ଉପରେ ପ୍ରାଧାନ୍ୟ ଦେଇଥାଏ।

କମ୍ୟୁନିଷ୍ଟ ଆନ୍ଦୋଳନ ପାଇଁ ୧ ୯ ୪ ୭ ଭାରତର ସ୍ୱାଧୀନତା ନିର୍ଣ୍ଣାୟକ ପରିବର୍ତ୍ତନର ସମୟ ହୋଇଥାଏ । ଜୋଷୀ ସ୍ୱାଧୀନତାକୁ ସ୍ୱାଗତ କରିଥିଲେ ଓ ଜାତୀୟ ପୁନର୍ଜାଗରଣ ଦିଗରେ ପ୍ରଥମ ସକାରାତ୍ମକ ପଦକ୍ଷେପ ଭାବେ ବିଚାର କରିଥିଲେ । ତାଙ୍କ ନିକଟରେ ଏହା ଥିଲା ଭାରତର ପ୍ରଗତିଶୀଳ ଜନଗଣଙ୍କର ପ୍ରତିକ୍ରିୟାଶୀଳ ଶକ୍ତି ବିରୁଦ୍ଧରେ ଆନ୍ଦୋଳନର ଏକ ନୂତନ ଯୁଗ । ତାଙ୍କ ପାଇଁ ଦେଶ ଭିତରେ ଥିବା ସାମନ୍ତବାଦୀ ଦକ୍ଷିଣପନ୍ଥୀ ପ୍ରତିରୋଧକାରୀ ଶକ୍ତି ଯେଉଁମାନେ ନବ୍ୟ ଉପନିବେଶବାଦ ବିପଦର ପ୍ରତିନିଧିତ୍ୱ କରନ୍ତି ସେମାନଙ୍କ ବିରୁଦ୍ଧରେ ଏକ ନୂତନ ରାଷ୍ଟ୍ରର ନିର୍ମାଣ ।

ଜୋଷୀଙ୍କୁ ପାର୍ଟି ଭିତରେ ଏକଘରିଆ କରିଦିଆଗଲା । କମ୍ୟୁନିଷ୍ଟ ପାର୍ଟିର ସଂଖ୍ୟାଧିକ ନେତୃତ୍ୱ ଭାରତର ସ୍ୱାଧୀନତାର ଚରିତ୍ରକୁ ନକଲି ବୋଲି ବିଚାର କଲେ । କିପରି ଭାବରେ ଏକ ଜାତୀୟ ବୁର୍ଜୁଆ ନେତୃତ୍ୱ ଏକ ସ୍ୱାଧୀନ ଶାସନ ପ୍ରଣାଳୀ ଆଡ଼କୁ ନେଇପାରିବ ? ଜୋଷୀଙ୍କୁ ସାଧାରଣ ସମ୍ପାଦକ ପଦବୀରୁ ଅପସାରଣ କରିଦିଆଗଲା । ରାଜନୈତିକ ବିଚାରରେ ଏ ଯେଉଁ ଉଗ୍ର ପରିବର୍ତ୍ତନ ଘଟିଲା କିପରି ଭାବରେ ଜୋଷୀ ସାଧାରଣ ସମ୍ପାଦକ ଭାବରେ ଏ ସମ୍ପର୍କରେ ସଚେତନ ହେଲେ ନାହିଁ ? ଏହି ପ୍ରଶ୍ନର କୌଣସି ସୀମିତ ଉତ୍ତର ନାହିଁ । ଏହା ଗୋଟିଏ ଯୁଗର ଅବସାନ ଥିଲା ।

ଜୋଷୀଙ୍କର ସମୟ (୧ ୯ ୩ ୬-୪ ୮) ଭାରତୀୟ କମ୍ୟୁନିଷ୍ଟ ଆନ୍ଦୋଳନର ସବୁଠାରୁ ଗୌରବମୟ ଅଧ୍ୟାୟ । ଏହି ସମୟରେ ତାଙ୍କ ନେତୃତ୍ୱରେ ପରିଚାଳିତ ହୋଇ କମ୍ୟୁନିଷ୍ଟମାନେ ଜାତୀୟ ରାଜନୈତିକ କାର୍ଯ୍ୟ ଆଡ଼କୁ ଏକ ତୀକ୍ଷ୍ଣ ମୋଡ଼ ଦେଇଥିଲେ। ସେ ପାର୍ଟିକୁ ଜାତୀୟ ସ୍ତରର ମାନ୍ୟତା ପ୍ରଦାନ କରିଥିଲେ । ସେ ନିଜେ ମଧ୍ୟ ବିଭିନ୍ନ ଜାତୀୟ ନେତାମାନଙ୍କ ସମ୍ପର୍କରେ ଆସିଥିଲେ - ମହାତ୍ମାଗାନ୍ଧି, ନେହେରୁ, ସର୍ଦ୍ଦାର ପଟେଲ, ମୌଲାନା ଆବୁଲ କାଲାମ ଆଜାଦ, ରଫି ଅହମ୍ମଦ କିଦ୍‌ୱାଇ । ତାଙ୍କର ଅତ୍ୟନ୍ତ ଗଭୀର ରାଜନୈତିକ ସମ୍ପର୍କ କଂଗ୍ରେସ ସମାଜବାଦୀ ନେତାମାନଙ୍କ ସହିତ ଥିଲା । ଜୟପ୍ରକାଶ ନାରାୟଣ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଏମ୍ ଆର ମାସାନୀ, ଅଶୋକ ମେହେଟା ଏବଂ ଅନ୍ୟମାନେ । ଜୋଷୀ କେବଳ ସିପିଆଇ ନେତା ନ ଥିଲେ, ସେ ଜାତୀୟ ସ୍ତରର ନେତା ଥିଲେ । ବୁଦ୍ଧିଜୀବୀ ଓ ରାଜନୈତିକ ଭାବେ ସଚେତନ କର୍ମୀମାନଙ୍କ ମଧ୍ୟରେ ଜବାହରଲାଲ ନେହେରୁଙ୍କ ପରେ ତାଙ୍କୁ ହିଁ ନେତାଭାବରେ ଗଣ୍ୟ କରାଯାଉଥିଲା। ତାଙ୍କ ସମୟରେ, ସିପିଆଇ କେବଳ ଜାତୀୟ ଦଳ ହୋଇ ନ ଥିଲା, ବରଂ ଏହା ମୁଖ୍ୟସ୍ରୋତ ଜାତୀୟ ଆନ୍ଦୋଳନରେ ଅଂଶଗ୍ରହଣ କରିଥିଲା ଏବଂ ଏହାର ବହୁସଂଖ୍ୟକ କର୍ମୀ ନିଜକୁ ଆତ୍ମବଳୀ ଦେଇ

ସବୁଠାରୁ ଉତ୍ତମ କମ୍ୟୁନିଷ୍ଟ ଦେଶ ପ୍ରେମୀ ହୋଇଥିଲେ ।

ପି.ସି. ଜୋଷୀ ଚାହୁଁଥିଲେ ତାଙ୍କର ସାଥୀମାନେ ସବୁଠାରୁ ଶ୍ରେଷ୍ଠ ସ୍ୱାଧୀନତା ସଂଗ୍ରାମୀ ହୁଅନ୍ତୁ, କ୍ଷୁଦ୍ର ଦୃଷ୍ଟିଭଙ୍ଗୀ ସେମାନଙ୍କ ନିକଟରେ ନ ରହୁ, ସମସ୍ତଙ୍କ ନିକଟରେ ପହଞ୍ଚନ୍ତୁ ଏପରିକି ଯେଉଁମାନେ ସେମାନଙ୍କୁ ବିରୋଧ କରୁଛନ୍ତି ।

୫

# ସ୍ୱାଧୀନତା ପରବର୍ତ୍ତୀ ସମୟ

## ଆଭ୍ୟନ୍ତରୀଣ ସଂଘର୍ଷ

ସ୍ୱାଧୀନତା ଏକ ଭଗ୍ନ ରାଷ୍ଟ୍ର ପାଇଁ ଆସିଲା । ରାଷ୍ଟ୍ର ଭ୍ରାତୃ ହତ୍ୟାକାରୀ ସାମ୍ପ୍ରଦାୟିକ ଦଙ୍ଗା ପ୍ରବାହରେ ନିମଜ୍ଜିତ ହେବା ଓ ତାହା ବିଭାଜନ ସୃଷ୍ଟି କରିବା ଫଳରେ ଉଭୟ ଅଞ୍ଚଳରୁ ସୀମା ଅତିକ୍ରମ କରି ଶରଣାର୍ଥୀମାନଙ୍କର ସୁଅ ଛୁଟିବାକୁ ଲାଗିଲା । ମହାତ୍ମାଗାନ୍ଧିଙ୍କ ପରି ପି.ସି. ଜୋଷୀ ମଧ ମାଉଣ୍ଟବେଟେନ୍‌ଙ୍କର ଭାରତ ବିଭାଜନ ଖସଡ଼ାକୁ ବିରୋଧ କରିଥିଲେ ଯାହାକୁ ଉଭୟ କଂଗ୍ରେସ ଓ ମୁସଲିମ୍ ଲିଗ୍ ଗ୍ରହଣ କରିଥିଲେ । ସେ ସମ୍ପୂର୍ଣ୍ଣ ଭାବରେ ସଚେତନ ଥିଲେ ଯେ ଏହା ହିନ୍ଦୁ-ମୁସଲମାନମାନଙ୍କର ସମସ୍ୟାକୁ ସମାଧାନ କରିପାରିବ ନାହିଁ ବରଂ ସମସ୍ତ ଦ୍ୱନ୍ଦ୍ୱକୁ ଅଧିକ ବ୍ୟାପକ କରିବ । ସମ୍ପୂର୍ଣ୍ଣ କ୍ଷମତା ହସ୍ତାନ୍ତର କରିବାର କିଛି ସପ୍ତାହ ପୂର୍ବରୁ, ସେ ପିପୁଲ୍ସ ଏଜ୍‌ରେ ଲେଖିଥିଲେ :

> ଏହା ସାଧାରଣ ଭାବରେ ଅନୁଭବ ହୋଇଥିଲା ଯେ, ବିଭାଜନ ଉଭୟ ଅଂଶକୁ ଅର୍ଥନୈତିକ ଓ ସାମରିକ କ୍ଷେତ୍ରରେ ଦୁର୍ବଳ କରିବ, କିନ୍ତୁ ଏହା ଅନୁଭବ କରାଯାଇ ପାରିନଥିଲା ଯେ ବ୍ରିଟିଶ୍ ଖସଡ଼ାର ସାରାଂଶ ଥିଲା ବିଭାଜନ ମାଧ୍ୟମରେ ପ୍ରଥମେ ଦୁର୍ବଳ କରିବା ଏବଂ ତା'ପରେ ଆମର ଏହି ଦୁର୍ବଳତାର ସୁଯୋଗ ନେଇ ଉଭୟ ରାଷ୍ଟ୍ର ଉପରେ ଅର୍ଥନୈତିକ ଓ ସାମରିକ ଆଧିପତ୍ୟ ଜାହିର କରିବା ଏବଂ ଏଥିପାଇଁ 'ଆର୍ଥିକ ସହାୟତା' ଓ 'ସାମରିକ ସୁରକ୍ଷା' ଆଢୁଆଳରେ ବ୍ରିଟିଶ୍ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରି ରଖିବାର କୌଶଳ ।[୧]

ବ୍ରିଟିଶ୍ ଶାସନରୁ ପରିଶେଷରେ ଯେତେବେଳେ ଭାରତ ସ୍ୱାଧୀନତା ଲାଭ କଲା ପି.ସି. ଜୋଷୀ ଏହି ସ୍ୱାଧୀନତାକୁ ସ୍ୱାଗତ କରିଥିଲେ ଏବଂ ବିଚାର କରିଥିଲେ ଯେ ରାଷ୍ଟ୍ରର

---

୧. ପିପୁଲ୍ସ ଏଜ୍, ଜୁଲାଇ ୨୦, ୧୯୪୭ ।

ଜାତୀୟ ପୁନର୍ଜାଗରଣରେ ଏହା ପ୍ରଥମ ମାଇଲ୍ ଖୁଣ୍ଟ । ଦେଶ ସମ୍ମୁଖରେ ଅକଳ୍ପନୀୟ ସମସ୍ୟା ଭିତରେ ରାଷ୍ଟ୍ରଗଠନ କାର୍ଯ୍ୟ କଷ୍ଟସାଧ୍ୟ ଥିଲା ଏବଂ ଶରଣାର୍ଥୀମାନଙ୍କର ଥଇଥାନ, ସାମ୍ପ୍ରଦାୟିକ ଦଙ୍ଗା ନିଆଁକୁ ନିର୍ବାପିତ କରିବା, ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘର ଦୂରଭିସନ୍ଧି ଯୋଜନାକୁ ପଣ୍ଡ କରିବା, ଏବଂ ଭାରତର ଏହି ଶୈଶବ ଅବସ୍ଥାରେ ସରକାରକୁ ଅବ୍ୟବସ୍ଥିତ କରିବାର ଚକ୍ରାନ୍ତକୁ ପ୍ରତିହତ କରିବା ତାଙ୍କ ବିଚାରରେ ଦୂରୁହ କାର୍ଯ୍ୟ ଥିଲା । ଅକ୍ଟୋବର ୮, ୧୯୪୭ରେ ବଙ୍ଗଳା କମିଟି ଦ୍ୱାରା କଲିକତାଠାରେ ଆୟୋଜିତ ପଚିଶ ହଜାର ଲୋକଙ୍କର ଏକ ବିଶାଳ ଶୋଭାଯାତ୍ରାକୁ ସମ୍ବୋଧିତ କରି ସେ କହିଲେ, "ସରକାର ମଧ୍ୟରେ ରହି ଯେଉଁମାନେ ପଣ୍ଡିତ ନେହେରୁଙ୍କୁ ବିରୋଧ କରୁଛନ୍ତି, ସେମାନେ ଇସ୍ତଫା ଦେବା ଉଚିତ, ନେହେରୁ ନୁହଁନ୍ତି ।" ଦେଶ ଯେଉଁ ସମସ୍ୟାର ସମ୍ମୁଖୀନ ହେଉଛି, ସେଥିରୁ ମୁକୁଳିବା ପାଇଁ ସରକାର ପଛରେ ସମସ୍ତେ ଛିଡ଼ା ହେବାର ଆବଶ୍ୟକତାକୁ ଜରୁରୀ ବୋଲି ସେ ଅନୁଭବ କରିଥିଲେ । ସେହିପରି ପରିସ୍ଥିତିରେ ପାର୍ଟିର କର୍ତ୍ତବ୍ୟ କ'ଣ ତାହା ସେ ସୂଚାଇ ଥିଲେ ।

"କମ୍ୟୁନିଷ୍ଟ ପାର୍ଟି ନିବେଦନ କରୁଛି ଏବଂ ସମସ୍ତ ବାମଦଳମାନଙ୍କୁ ନିବେଦନ କରି ଚାଲିଥିବ ଯେ, କୌଣସି ବିଳମ୍ବ ନ କରି ଦେଶକୁ ରକ୍ଷା କରିବା ପାଇଁ ଏକାଠି ହେବା ହେଉଛି ଆମର ବିଶେଷ ଦାୟିତ୍ୱ । ଆଲୋଚନା କରିବାର ସମୟ ଅତିକ୍ରାନ୍ତ । ଲୋକମାନେ ଆଗକୁ ଅଗ୍ରସର ହେବାର ଆଦେଶ ମାଗୁଛନ୍ତି ଏବଂ ସେମାନେ କ'ଣ କରିବେ ଅଧୈର୍ଯ୍ୟ ହୋଇ ପଚାରୁଛନ୍ତି.... । ବର୍ତ୍ତମାନ କାର୍ଯ୍ୟ କରିବାର ସମୟ ଉପସ୍ଥିତ । ଯେକୌଣସି ଲୋକ ସହିତ ସାକ୍ଷାତ କରିବାକୁ ମୋର ଆଦୌ ଦ୍ୱିଧା ନାହିଁ ଏବଂ ମୁଁ ଫରୱାର୍ଡ଼ ବ୍ଲକ୍, ସୋସିଆଲିଷ୍ଟ ଦଳ, ରିଭୋଲ୍ୟୁସନାରି ସୋସିଆଲିଷ୍ଟ ଦଳ ଓ ଅନ୍ୟାନ୍ୟ ନେତାମାନଙ୍କୁ ମଧ୍ୟ ଭେଟିବାକୁ ଚାହେଁ । ଆମକୁ ଆମର ସାଧାରଣ ସୈନିକମାନଙ୍କୁ ସୁସଂହତ କରିବାକୁ ହେବ ଏହି ସର୍ବସାଧାରଣ ବିପଦକୁ ସମ୍ମୁଖୀନ ହେବାପାଇଁ ଯାହା ଆମର ସ୍ୱାଧୀନତା ଉପରେ ବିପଦ । ପ୍ରଥମରେ ଆମକୁ ଏହି ସମସ୍ୟାର ଗଭୀରତାକୁ ବୁଝିବାକୁ ହେବ ।"[୨]

ପି.ସି. ଜୋଷୀ ପ୍ରଥମେ ସାମ୍ପ୍ରଦାୟିକ ଦଙ୍ଗାର ପ୍ରକୃତି ସମ୍ପର୍କରେ ତର୍ଜମା କରିଥିଲେ । ତାଙ୍କ ମତରେ ଏହା ସାମ୍ପ୍ରଦାୟିକ ଭାବାବେଗରୁ ସଂଗଠିତ ହୋଇ ନ ଥିଲା । ସେ ଏକ ନୂତନ ମିଳିତ ଫ୍ରଣ୍ଟ ଗଠନର ଆହ୍ୱାନ ଦେଇଥିଲେ ଯେଉଁଥିରେ ଏକ ପକ୍ଷରେ ଗାନ୍ଧିଜୀ ଓ ନେହେରୁ ଓ ଅନ୍ୟ ପକ୍ଷରେ ସୋସିଆଲିଷ୍ଟ, କମ୍ୟୁନିଷ୍ଟ ଓ ଅନ୍ୟ ବାମ ଗୋଷ୍ଠୀମାନେ ରହିବେ । ସେ ସାମ୍ପ୍ରଦାୟିକ ଶକ୍ତିମାନଙ୍କର ଦୂରଗାମୀ ରାଜନୈତିକ କାର୍ଯ୍ୟସୂଚୀକୁ ଉନ୍ମୁକ୍ତ କରିଦେଇଥିଲେ ଯାହା ଥିଲା ଶାସନ ବ୍ୟବସ୍ଥା ବିରୁଦ୍ଧରେ ଯୋଜନାବଦ୍ଧ ଆକ୍ରମଣ ।

---

୨. ପିପୁଲ୍ସ ଏଜ୍, ଅକ୍ଟୋବର ୧୯, ୧୯୪୭ ।

ବାସ୍ତବରେ, ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ, କଂଗ୍ରେସ, କମ୍ୟୁନିଷ୍ଟ ଓ ଜିଲ୍ଲାରେ ଥିବା ଅନ୍ୟ ବାମପନ୍ଥୀ ଦଳମାନେ ପରସ୍ପର ନିକଟବର୍ତ୍ତୀ ହୋଇଥିଲେ । ଛାତ୍ର କଂଗ୍ରେସ ଓ ଛାତ୍ରସଂଘର ପ୍ରତିନିଧିମାନେ ରାସ୍ତାରେ ଶାନ୍ତି ଶୋଭାଯାତ୍ରା କରିଥିଲେ । ଜୋଷୀ ଅତ୍ୟନ୍ତ ଦୃଢ଼ତାର ସହିତ କହିଥିଲେ ଯେ ବର୍ତ୍ତମାନର ସମସ୍ୟା ହେଉଛି ସଂଖ୍ୟାଲଘୁମାନଙ୍କର ସୁରକ୍ଷା, ଲୋକମାନଙ୍କୁ ଅଦଳବଦଳ କରିବା ନୁହେଁ । ଏହି ନିର୍ଦ୍ଦିଷ୍ଟ ସମୟରେ, କଂଗ୍ରେସ ନେତୃମଣ୍ଡଳୀ ମଧ୍ୟରୁ କେବଳ ଗାନ୍ଧିଜୀ ହିଁ ତାଙ୍କୁ ଅଧିକ ଆକର୍ଷିତ କରିଥିଲେ । ଗାନ୍ଧିଜୀ ସଠିକ୍ ଭାବନା ନେଇ ସଠିକ୍ କଥା କହିଥିଲେ। ସେପ୍ଟେମ୍ବର ୧୫, ୧୯୪୭, ତାଙ୍କର ପ୍ରାର୍ଥନା ସଭାରେ ଗାନ୍ଧିଜୀ କହିଥିଲେ, "ହିନ୍ଦୁ ଓ ମୁସଲମାନମାନେ ସଠିକ୍ ପଦକ୍ଷେପ ଗ୍ରହଣ କରନ୍ତୁ ଏବଂ ମୁସଲମାନମାନଙ୍କୁ ନିମନ୍ତ୍ରିତ କରନ୍ତୁ ନିଜ ନିଜ ବାସସ୍ଥାନକୁ ଫେରି ଆସିବାକୁ ଯେଉଁମାନଙ୍କୁ ସେଠାରୁ ଜୋର ଜବରଦସ୍ତି ନିକାଲି ଦିଆଯାଇଛି । ଯଦି ସେମାନେ ଏହି ସାହସିକ ପଦକ୍ଷେପ ନିଅନ୍ତି, ଯାହା ସବୁ ଦୃଷ୍ଟିରୁ ମୂଲ୍ୟବାନ, ସେମାନେ ଅତି ସହଜ ଭାବରେ ଶରଣାର୍ଥୀ ସମସ୍ୟାକୁ ତତ୍‌କ୍ଷଣାତ୍ ହ୍ରାସ କରିପାରିବେ।" ଜୋଷୀ ସମ୍ପୂର୍ଣ୍ଣ ଭାବରେ ଗାନ୍ଧିଜୀଙ୍କ ସହିତ ସହମତ ହୋଇଥିଲେ ଯେତେବେଳେ ଗାନ୍ଧିଜୀ କହିଥିଲେ, "ନିୟୁତ ନିୟୁତ ହିନ୍ଦୁ, ଶିଖ୍ ଓ ମୁସଲମାନମାନଙ୍କୁ ଅଦଳବଦଳ କରିବା ଅବିଶ୍ୱାସନୀୟ । ଏହା ସମ୍ପୂର୍ଣ୍ଣ ଭ୍ରମାତ୍ମକ । ପାକିସ୍ଥାନ ଗଠନର ତ୍ରୁଟିକୁ ସଂଶୋଧନ କରାଯାଇପାରିବ ଯଦି ଏହି ଲୋକସଂଖ୍ୟାକୁ ଦୃଢ଼ ଭାବରେ ହସ୍ତାନ୍ତର କରାନଯାଏ। ମୋର ବିଶ୍ୱାସ, ମୁଁ ଏହା ପକ୍ଷରେ ଦୃଢ଼ ଭାବରେ ଛିଡ଼ା ହୋଇ ପାରିବି । ହୁଏତ ଏହା ପକ୍ଷରେ ମୋର ସ୍ୱର ଏକମାତ୍ର ହୋଇପାରେ ।" ପ୍ରାର୍ଥନା ସଭାରେ ଗାନ୍ଧିଜୀଙ୍କର ଏହି ଭାଷଣ ଦ୍ୱାରା ଜୋଷୀ ଗଭୀର ପ୍ରଭାବିତ ହୋଇଥିଲେ ଏବଂ ଏହାକୁ ସେ ୨୧ ସେପ୍ଟେମ୍ବର ୧୯୪୭ରେ ପିପୁଲ୍ସ ଏଜ୍‌ରେ ନିଜ ଲେଖାରେ ପ୍ରକାଶ କରିଥିଲେ ।

ସ୍ୱାଧୀନତାର ସୂର୍ଯ୍ୟୋଦୟ କମ୍ୟୁନିଷ୍ଟ ପାର୍ଟି ପାଇଁ ସମ୍ପୂର୍ଣ୍ଣଭାବେ ଏକ ନୂତନ ଅଧ୍ୟାୟ ଉନ୍ମୋଚିତ କଲା । ପାର୍ଟି ନେତୃତ୍ୱରେ ଥିବା ଗୋଟିଏ ଗୋଷ୍ଠୀ ଏହି ସ୍ୱାଧୀନତା ସମ୍ପୂର୍ଣ୍ଣ ଭ୍ରମାତ୍ମକ ବୋଲି ବିଚାର କରୁଥିଲେ, ଏହା ଏକ ଅବାସ୍ତବ ସ୍ୱାଧୀନତା ଥିଲା । ସେମାନଙ୍କ ନିକଟରେ ପ୍ରକୃତ ଶତ୍ରୁ ଥିଲା କଂଗ୍ରେସ ଯାହା ବ୍ରିଟିଶ୍ ସାମ୍ରାଜ୍ୟବାଦର ଯନ୍ତ୍ର ଥିଲା । ନେହେରୁଙ୍କୁ ଚିଆଙ୍ଗ୍-କେଇ-ସେକ୍‌ଙ୍କ ସହିତ ସମାନ କରାଯାଉଥିଲା, ତେଲେଙ୍ଗାନାକୁ ୟେନାନ୍ ସହିତ ତୁଳନା କରାଯାଉଥିଲା । ଯାହା ଜଣାପଡୁଥିଲା ସୋଭିଏତ୍ ନେତା ଦାଦାନୋଭ ପୁଞ୍ଜିବାଦୀ ରାଷ୍ଟ୍ରରେ ଥିବା କମ୍ୟୁନିଷ୍ଟ ପାର୍ଟିକୁ ଆହ୍ୱାନ କରିଥିଲେ ଯେ ସେମାନେ ଶ୍ରମିକ ଶ୍ରେଣୀକୁ ଏକାଠି କରି ସଶକ୍ତ ଆନ୍ଦୋଳନ ସଂଗଠିତ କରନ୍ତୁ, ଏହା ଏହି ଗୋଷ୍ଠୀର ନୈତିକତା ବୃଦ୍ଧିରେ ସାହାଯ୍ୟ କରିଥିଲା । ଏହି ଗୋଷ୍ଠୀର ସବୁଠାରୁ ଅଗ୍ରଣୀ ଥିଲେ ବି.ଟି. ରଣଦିଭେ ଏବଂ ଜୋଷୀଙ୍କର ସବୁଠାରୁ ବେଶି ପ୍ରଶଂସା ପାତ୍ର ଡକ୍ଟର ଜି. ଅଧିକାରୀ ।

ସ୍ୱାଧୀନତାର ଠିକ୍ ପରେ ପରେ ପ୍ରାୟ ୧୯୪୭ର ଶେଷ ସମୟକୁ ଏସ୍.ଏ. ଡାଙ୍ଗେ ବେଲଗ୍ରେଡ୍ ଗଲେ ଏବଂ ସେଠାରେ ଏଡ୍‌ୱାର୍ଡ଼ କାରଡ଼ିଲେଜଙ୍କୁ ସାକ୍ଷାତ କଲେ ଯେ

କି କୋମିନ୍‌ଫର୍ମ (କୋମିନ୍‌ଟର୍ନର ନୂତନ ନାମ)ର ଏକ ମୁଖିଆ ମୁଖପାତ୍ର ଥିଲେ । କାରଡ଼ିଲେଜ୍ ତାଙ୍କୁ କହିଲେ ଯେ ଭାରତୀୟ କମ୍ୟୁନିଷ୍ଟମାନେ କଂଗ୍ରେସ ବିରୁଦ୍ଧରେ ଆକ୍ରମଣାତ୍ମକ ଭୂମିକା ନେବା ଉଚିତ କାରଣ କଂଗ୍ରେସ ହେଉଛି ସାମ୍ରାଜ୍ୟବାଦର ଅନୁକରଣକାରୀ ଚାମଚା । ସେ ତାଙ୍କୁ ଯୋଶୀଙ୍କ ବିରୁଦ୍ଧରେ ସାବଧାନ କରି ଦେଇଥିଲେ ଏବଂ ତାଙ୍କର ବିଶ୍ୱାସନୀୟତା ଉପରେ ପ୍ରଶ୍ନ କରିଥିଲେ କାରଣ ଯୋଶୀଙ୍କର ଗାନ୍ଧି, ନେହେରୁ ଓ ଅନ୍ୟ କଂଗ୍ରେସ ନେତାଙ୍କ ସହିତ ସୁସମ୍ପର୍କ ଥିଲା । ସେଠାରୁ ଫେରିବା ପରେ ଡାଙ୍ଗେ ଏହିକଥା ପାର୍ଟି ପଲିଟିବ୍ୟୁରୋ ସମ୍ମୁଖରେ ପ୍ରକାଶ କରିଥିଲେ । ପଲିଟିବ୍ୟୁରୋର ସଦସ୍ୟ ଥିଲେ ପି.ସି. ଯୋଶୀ, ଜି. ଅଧିକାରୀ, ବି.ଟି. ରଣଦିଭେ, ଅଜୟ ଘୋଷ ଏବଂ ଆର.ଡି. ଭରଦ୍ୱାଜ । ଶେଷ ଦୁଇଜଣ ଥିଲେ ରୋଗଗ୍ରସ୍ତ ଏବଂ ପଲିଟିବ୍ୟୁରୋ ବୈଠକରେ ଉପସ୍ଥିତ ନ ଥିଲେ । ଯୋଶୀଙ୍କ ସମ୍ପର୍କରେ ଆନ୍ତର୍ଜାତୀୟ ସତର୍କବାଣୀ ପାର୍ଟି ନେତୃତ୍ୱ ମଧ୍ୟରେ ଯୋଶୀଙ୍କର ରାଜନୈତିକ ମାର୍ଗ ସଂଯୁକ୍ତ ଫ୍ରଣ୍ଟ ସମ୍ପର୍କରେ ବଢ଼ି ଉଠୁଥିବା ସଂଶୟବାଦୀମାନଙ୍କୁ ଆହୁରି ଶକ୍ତିଶାଳୀ କରିଥିଲା । ସେତେବେଳକୁ ଯୋଶୀଙ୍କର ସଂସ୍କାରବାଦୀ ନେତୃତ୍ୱ ଭାରତରେ ଏକ ନିଶ୍ଚିତ ବିପ୍ଳବରେ ବାଧା ସୃଷ୍ଟି କରୁଛି ଓ ଏହା ବିରୁଦ୍ଧରେ ଗୋଷ୍ଠୀଗତ କାନକୁହା ପ୍ରଚାର ଆରମ୍ଭ ହୋଇଯାଇଥିଲା । ଯୋଶୀଙ୍କ ପ୍ରତି ଆକ୍ଷେପ କରାଗଲା ଯେ ଯୋଶୀ ଏକ ସଶକ୍ତ ବିପ୍ଳବୀ ସଂଗଠନ ଗଠନ କରିବାରେ ଯେପରି ଦୃଷ୍ଟି ଦେବାକଥା ଦେଉ ନାହାନ୍ତି । ତାଙ୍କ ବିରୁଦ୍ଧରେ ଅଭିଯୋଗ କରାଗଲା ଯେ ସେ ଏକ ଭାରତୀୟ ଯୌଥ ପରିବାରକୁ ଲାଳନପାଳନ କରୁଛନ୍ତି ଯାହାର ସେ ହେଉଛନ୍ତି ସମ୍ମାନନୀୟ ବୃଦ୍ଧ ବ୍ୟକ୍ତି । ଆରପିଡ଼ି ପାର୍ଟି ନେତୃତ୍ୱ ଭିତରେ ଯୋଶୀ ବିରୋଧୀ ଭାବନା ପ୍ରବେଶ କରିଥିବାର ଅନୁମାନ କରିଥିଲେ ଏବଂ ଆଗାମୀ ବିପଦ ସମ୍ପର୍କରେ ଯୋଶୀଙ୍କୁ ସତର୍କ କରାଇ ଦେଇଥିଲେ ୧ ୯ ୪ ୬ ମସିହାରେ, ଯେତେବେଳେ ସେ କ୍ୟାବିନେଟ୍ ମିଶନ ସହିତ ଭାରତକୁ ଆସିଥିଲେ । ତାଙ୍କର ସତର୍କତା ଭବିଷ୍ୟତରେ ପ୍ରମାଣିତ ହେଲା ।

ଯୋଶୀ ଦେଖିବାକୁ ପାଇଲେ ଯେ କେନ୍ଦ୍ରୀୟ କମିଟିର ସଂଖ୍ୟାଧିକ ସଦସ୍ୟ ତାଙ୍କର ଜାତୀୟ ଅବସ୍ଥାର ମୂଲ୍ୟାଙ୍କନଠାରୁ ଭିନ୍ନ ମତପୋଷଣ କରୁଛନ୍ତି । ସେ ପାର୍ଟିର ସାଧାରଣ ସମ୍ପାଦକ ପଦରୁ ଇସ୍ତଫା ଦେଲେ, କିନ୍ତୁ ତାଙ୍କର ଇସ୍ତଫାକୁ ପାର୍ଟିର ସାଧାରଣ କର୍ମୀମାନଙ୍କଠାରୁ ଓ ଜନତାଙ୍କଠାରୁ ଗୁପ୍ତରେ ରଖାଗଲା । ଡିସେମ୍ବର ୧ ୯ ୪ ୭ ମସିହାରେ ପାର୍ଟିର ସାମ୍ବିଧାନିକ ଧାରା ବିରୁଦ୍ଧରେ ବି.ଟି. ରଣଦିଭେଙ୍କୁ ପାର୍ଟିର କାର୍ଯ୍ୟତଃ ସାଧାରଣ ସମ୍ପାଦକ କରାଗଲା ।

ଯୋଶୀ କେବଳ ରାଜନୈତିକ ଭାବେ ଏକାକୀ ହେଲେ ନାହିଁ ବରଂ ତାଙ୍କୁ ଭୟଙ୍କର ଅପମାନର ସାମ୍ନା କରିବାକୁ ହେଲା । ତାଙ୍କୁ ଭାରତୀୟ ବିପ୍ଳବକୁ ପ୍ରତିହତ କରିଥିବା କାରଣରୁ ଆତ୍ମ ସମାଲୋଚନା କରିବାକୁ ବାଧ୍ୟ କରାଗଲା । ବହୁଦିନ ପରେ ସେ ଲେଖିଥିଲେ, "ମୁଁ ସ୍ୱେଚ୍ଛାରେ ଅଖାଳୁଗା ଓ ଭସ୍ମ ଆଚ୍ଛାଦିତ ହୋଇ ମୁଖ୍ୟ ଓ ବାସ୍ତବ ଦୋଷୀ ଭାବରେ ଦେଖାଦେଲି । ଯେତେବେଳେ ମୋର ଅଧିକ ଜାଣିବାର ଆବଶ୍ୟକତା ଥିଲା, ମୁଁ ନିଜେ କିନ୍ତୁ

ସେହିପରି ବୋକା ଥିଲି ।"[୩]

ଧୀରେ ଧୀରେ, ସମସ୍ତ ସାଥୀମାନେ, ଯେଉଁମାନେ ଏକ ସମୟରେ ଜୋଷୀଙ୍କୁ ସମ୍ମାନ, ପ୍ରଶଂସା ଓ ଭକ୍ତିର ସହିତ ଦେଖୁଥିଲେ ନେତୃତ୍ୱ ତାଙ୍କ ବିରୁଦ୍ଧରେ ଯିବାରୁ ସେମାନେ ମଧ୍ୟ ଆଡ଼େଇ ଗଲେ । ତାଙ୍କର ସମସ୍ତ ବୁଦ୍ଧିଜୀବୀ, କେମ୍ବ୍ରିଜ-ଅକ୍ସଫୋର୍ଡ଼ର ଅତି ତେଜିୟାନ ସାଥୀମାନେ ଯଥା- ମୋହନ କୁମାର ମଙ୍ଗଳମ୍, ଅରୁଣ ବୋଷ, ଏନ୍.କେ. କ୍ରିଷନ ଜଣକ ପରେ ଜଣେ ଜୋଷୀଙ୍କୁ ଛାଡ଼ି ଚାଲିଗଲେ ଏବଂ ନୂତନ ନେତୃତ୍ୱ ସହିତ ରହିଲେ ଏହି ଦୃଢ଼ ବିଶ୍ୱାସରେ ଯେ ଏକ ବିପ୍ଳବ ଅବସମ୍ଭାବୀ । ଏହା ଘଟିଲା କାରଣ କୌଣସି ଜାତୀୟ କିମ୍ବା ଗଣ ସଂଗଠନର ପୃଷ୍ଠଭୂମି ନ ଥିବା ଏହି ବୁଦ୍ଧିଜୀବୀମାନଙ୍କୁ ଜୋଷୀ ଅତ୍ୟନ୍ତ ଗୁରୁତ୍ୱ ଦେଉଥିଲେ ଏବଂ ସେମାନଙ୍କୁ ପାର୍ଟିର କର୍ଣ୍ଣଧାର କରିଥିଲେ । ବାସ୍ତବ ଟ୍ରେଡ୍ ୟୁନିୟନ ଓ କୃଷକ ନେତାଙ୍କ ଉପରେ ନିର୍ଭର କରି ଏହି ଗୋଷ୍ଠୀ ଉପରେ ନିର୍ଭର କରିଥିବା ହେତୁ ଜୋଷୀଙ୍କୁ ବହୁମୂଲ୍ୟ ଦେବାକୁ ପଡ଼ିଥିଲା । ଅପରପକ୍ଷରେ ପାର୍ଟିରୁ ପ୍ରାଥମିକ ସ୍ତରରେ ତାଙ୍କୁ ନିଃସଙ୍ଗ କରିବା ସମୟରେ ଆନ୍ଧ୍ର ପ୍ରଦେଶର ସ୍ୱନାମଧନ୍ୟ କୃଷକ ନେତା ପି. ସୁନ୍ଦରାୟା ଜୋଷୀଙ୍କ ସହିତ ରହିଥିଲେ । ନୂତନ ରାଜନୈତିକ ମାର୍ଗ ସମ୍ପର୍କରେ କୁହାଯାଇପାରେ ଯେ, ହୁଏତ କେତେକ ଏ ସମ୍ପର୍କରେ ପ୍ରଶ୍ନ କରିଥିଲେ, କିନ୍ତୁ ସଂଖ୍ୟାଧିକ ପାର୍ଟି ସାଥୀଙ୍କର ଅନୁଭବର ସହିତ ବିଶ୍ୱାସ ହୋଇଥିଲା ଯେ ଭାରତକୁ ଯେଉଁ ସ୍ୱାଧୀନତା ମିଳିଲା ତାହା ଭ୍ରମାତ୍ମକ ।

ଫେବୃୟାରୀ ୧୯୪୮ ମସିହାରେ କଲିକତାର ମହମ୍ମଦ ଅଲ୍ଲୀ ପାର୍କରେ କମ୍ୟୁନିଷ୍ଟ ପାର୍ଟିର ଦ୍ୱିତୀୟ କଂଗ୍ରେସ ଅନୁଷ୍ଠିତ ହେଲା । ନୂତନ ନେତୃତ୍ୱ ସଶସ୍ତ୍ର ସଂଗ୍ରାମର ଆହ୍ୱାନ ଦେଲେ, ସ୍ଲୋଗାନ ଥିଲା "ତେଲେଙ୍ଗାନା ମାର୍ଗ ଆମର ମାର୍ଗ", "ଏହି ସ୍ୱାଧୀନତା ଭୁଲ୍ ।" ରଣଦିଭେ ଅନୁଭବ କରିଥିଲେ ଯେ କୋମିନ୍‌ଟର୍ନର ସପ୍ତମ କଂଗ୍ରେସରେ ଯେଉଁ ଜାତୀୟ ଫ୍ରଣ୍ଟର ମାର୍ଗ ଗ୍ରହଣ କରାଯାଇଥିଲା, ତାହା ଯୁଦ୍ଧ ଶେଷ ହୋଇଥିବାରୁ ଓ ଫାସିବାଦ ପରାସ୍ତ ହେତୁ ବର୍ତ୍ତମାନ ମୂଲ୍ୟହୀନ । ତଥାପି, ଜାତୀୟ ସ୍ୱାଧୀନତା ପାଇଁ ସଂଗ୍ରାମ ଜାରୀ ରହିଛି କାରଣ କଂଗ୍ରେସର ଜାତୀୟ ବୁର୍ଜୁଆ ନେତୃତ୍ୱ ଲୋକମାନଙ୍କ ପ୍ରତି ବିଶ୍ୱାସଘାତ କରିଛି ଏବଂ ବ୍ରିଟିଶ୍ ସାମ୍ରାଜ୍ୟବାଦ ସହିତ ସମଝୋତା କରିଛି । ତେଣୁ ସେ ଯୁକ୍ତି କରିଥିଲେ ଯେ ପାର୍ଟି କୋମିନ୍‌ଟର୍ନର ଷଷ୍ଠ କଂଗ୍ରେସର ନିଷ୍ପତ୍ତି ମୁତାବକ ବୈପ୍ଳବିକ ସଂଗ୍ରାମର ମାର୍ଗ ଗ୍ରହଣ କରିବା ଆବଶ୍ୟକ ଅର୍ଥାତ୍ ସଂଗ୍ରାମ କରିବ, କିନ୍ତୁ ଜାତୀୟ ବୁର୍ଜୁଆ ସହିତ ଏକାଠି ହେବନାହିଁ ।

କିନ୍ତୁ ଜୋଷୀଙ୍କୁ ଯାହା ଗଭୀର ଦୁଃଖ ଦେଇଥିଲା ତାହା ଥିଲା ଷଡ଼ଯନ୍ତ୍ରମୂଳକ ଓ ଗୋଷ୍ଠୀଗତ ପ୍ରକ୍ରିୟାରେ ଏହି ମାର୍ଗର ସମର୍ଥନ ପାଇଁ ପ୍ରଚେଷ୍ଟା । ତାଙ୍କର ବନ୍ଧୁ ସହଯୋଗୀ ମଧ୍ୟ ସେହିପରି ଅନୁଭବ କରିଥିଲେ ଏବଂ ସେମାନେ ସେମାନଙ୍କର ସ୍ମୃତିଚାରଣରେ ଏହା ଉଲ୍ଲେଖ କରିଥିଲେ ।

---

୩. ପି.ସି. ଜୋଷୀ, ରଜନୀ ପାମେ ଦତ୍ତ ଆଣ୍ଡ ଇଣ୍ଡିଆନ୍ କମ୍ୟୁନିଷ୍ଟ ।

ପି.ସି. ଜୋଷୀ ନୂତନ ନେତୃତ୍ୱର ଜାତୀୟ ବୁର୍ଜୁଆ ସମ୍ପର୍କରେ ଏହି ଆକଳନ ସହିତ ସହମତ ହୋଇପାରିଲେ ନାହିଁ । ସେ ରାଜିହୋଇ ନ ଥିଲେ ଯେ ସମ୍ପୂର୍ଣ୍ଣ ବୁର୍ଜୁଆ ଗୋଷ୍ଠୀ ସାମ୍ରାଜ୍ୟବାଦ ଆଡ଼କୁ ଯାଇଛନ୍ତି । ସେ କହିଥିଲେ :

> "ଏହି ଭ୍ରାନ୍ତ ବିଚାର ଆମର ତତ୍ତ୍ୱଗତ ପଛୁଆପଣ ଓ ବ୍ୟକ୍ତିବାଦର ପ୍ରମାଣ ଦିଏ । କମ୍ୟୁନିଷ୍ଟମାନଙ୍କ ପ୍ରତି ଏହା ବାଧ୍ୟତାମୂଳକ ଯେ ସେମାନେ ପୁଞ୍ଜିବାଦର ଘଟଣାବହୁଳ ସମୟରେ ଦେଖାଦେଇଥିବା ସାଧାରଣ ସମସ୍ୟା ପ୍ରତି ବୁର୍ଜୁଆ ଗୋଟିଏ ଶ୍ରେଣୀ ଭାବରେ ତା'ର ପ୍ରଗତିଶୀଳ ବୈପ୍ଲବିକ ଭୂମିକା ସମ୍ପର୍କରେ କୌଣସି ଭ୍ରାନ୍ତି ରଖିବ ନାହିଁ । ବିଶେଷକରି, ଉପନିବେଶ ରାଷ୍ଟ୍ରରେ କୌଣସି କମ୍ୟୁନିଷ୍ଟ ପାଇଁ ସେ ଯେତେ ଅଜ୍ଞ ହୁଅନ୍ତୁ ପଛକେ  ବୁର୍ଜୁଆକୁ ଗୋଟିଏ ଗୋଷ୍ଠୀ ଭାବରେ ବ୍ୟବହାର ପ୍ରଦର୍ଶନ କରିବା, ବିଶେଷକରି ସେହି ସମୟରେ ଏହାର ଅଗ୍ରଣୀ ଗୋଷ୍ଠୀ ସହମତି ପାଇଁ ଯାଏ ଏବଂ ସର୍ବହରା ଏତେ ଦୁର୍ବଳ ଯେ ସେହି ସହମତିକୁ ରୋକିପାରେ ନାହିଁ, ଏହା ଆଦୌ ସମ୍ଭବ ନୁହେଁ ।"[୪]

ଜାନୁୟାରୀ ୨୭, ୧୯୪୯ରେ ଜୋଷୀଙ୍କୁ ପାର୍ଟିରୁ ନିଲମ୍ବନ କରାଗଲା । ପାର୍ଟି ପାଇଁ ସେ ଏକ ବିପଦ ବୋଲି ବିଚାର କରାଗଲା । ସେ ରାଜନୈତିକ ସଂସ୍କାରବାଦ ଉପରେ ଗୁରୁତ୍ୱ ଦେବା ଦୋଷରେ ଦୋଷୀ ହେଲେ ଏବଂ ସେହି ବିଶ୍ୱାସଘାତ ମାର୍ଗ ଉପରେ ଯାହା ଶ୍ରମିକ ଶ୍ରେଣୀକୁ ଧୋକାଦେଇ ବୁର୍ଜୁଆ ଆଡ଼କୁ ନେଇଯାଇଛି ତାହା ଉପରେ ଜୋର ଦେଉଛନ୍ତି । ୧୯୪୮ ପାର୍ଟି କଂଗ୍ରେସ ପରବର୍ତ୍ତୀ ସମୟଠାରୁ ସେ ଏପରି କିଛି କରିନାହାନ୍ତି ଯେ ଯାହା ଫଳରେ ସେ ନିଷ୍ପାପର ଭାବରେ ଏହାକୁ ଅତିକ୍ରମ କରିପାରିବାର ପ୍ରମାଣ ଦେଇପାରିବେ କିମ୍ବା ସେ ଅନ୍ୟମାନଙ୍କଠାରୁ ଶିଖିବା ପାଇଁ ଯେଉଁ ନମ୍ରତା ଆବଶ୍ୟକ ତାହା ମଧ୍ୟ ପ୍ରଦର୍ଶନ କରିନାହାନ୍ତି ।" ଏହି ପ୍ରସ୍ତାବରେ, ପାର୍ଟି ପଲିଟବ୍ୟୁରୋ ଭାରତର ସମସ୍ତ ପାର୍ଟି ସଭ୍ୟମାନଙ୍କୁ ଆହ୍ୱାନ କରି କହିଥିଲେ, "ଜୋଷୀଙ୍କର ପତନ ହେବା ଭିତରୁ ଶିକ୍ଷାଲାଭ କରିବା ଆବଶ୍ୟକ ଏବଂ ପାର୍ଟି ପତାକା ତଳେ ଏକାଠି ହେବା ଦରକାର ଯାହା ପ୍ରତ୍ୟେକ ଫ୍ରଣ୍ଟରେ ମାର୍କ୍ସବାଦ-ଲେଲିନ୍‌ବାଦ ନୀତିକୁ ଧରି ରଖିବା ପାଇଁ ବଦ୍ଧ ପରିକର, ଯାହା ସର୍ବାଧୀନ ଭାବେ ଆତ୍ମ ସମର୍ପଣକାରୀ, ଦୋଦୋ-ପାଞ୍ଚକାରୀ କିମ୍ବା କୁଷାରଟନାକାରୀଙ୍କ ସହିତ ତୋଷଣ କରିବାକୁ ମନା କରେ ଏବଂ ଏହାର ଅଗ୍ରଗାମୀ ବିପ୍ଳବ ପାଇଁ ଯେକୌଣସି ବାଧାବିଘ୍ନକୁ ସମ୍ମୁଖୀନ ହୋଇ ଆଗେଇବାକୁ ବଦ୍ଧପରିକର ।"[୫]

---

୪. ଭିଉଜ୍ ନଂ ୧ :ଟୁ କମ୍ରେଡ଼ସ୍ ଏବ୍ରଡ଼ ଆଣ୍ଡ ବି.ଟି. ରଣଦିଭେ-ଅଣ୍ଡର ଦି ରେଡ୍ ବ୍ୟାନର ପି.ସି. ଜୋଷୀ, ଶିବପୁର, ହାଓଡ଼ା, ମେ, ୧୯୫୦, ପୃଷ୍ଠା ୩୯-୪୦ ।

୫. ସମାରି ଅଫ୍ ଦି ପଲିଟବ୍ୟୁରୋ ରିଜୋଲ୍ୟୁସନ ଅନ୍ ପି.ସି. ଜୋଷୀ ସସ୍‌ପେନ୍‌ସନ୍, ଜାନୁଆରୀ ୨୭,୧୯୪୯, ଫାଇଲ ନଂ ସିପିଆଇ ୧୯୫୧/୪୯, ଆରକାଇଭିସ୍ ଅଫ୍ କଣ୍ଟେପରାରୀ ଇଣ୍ଡିଆନ୍ ହିଷ୍ଟ୍ରି, ଜେଏନ୍‌ୟୁ ।

ଯଦିଓ ଜୋଷୀଙ୍କୁ ଏହିସବୁ ଦୋଷରେ ଦୋଷୀ କରାଯାଇଥିଲା, ଏହି ସମୟ ମଧ୍ୟରେ ଜୋଷୀ ନିଜର ଗୋଟିଏ ଗୋଷ୍ଠୀ ଗଠନ କରିବା କିମ୍ବା ଏକ ପୃଥକ୍ ଦଳଗଠନ କରିବା ପାଇଁ ଆଦୌ ଚେଷ୍ଟା କରିନଥିଲେ । ସେ ପଶ୍ଚିମବଙ୍ଗର ପାର୍ଟି ସମ୍ପାଦନ ମଣ୍ଡଳୀକୁ ଅଗଷ୍ଟ ୪, ୧୯୪୯ରେ ଏକ ଚିଠି ଲେଖି ଏକ ପ୍ରତିଦ୍ୱନ୍ଦ୍ୱୀ ଦଳ ଗଠନ କରିବାର ଅଭିଯୋଗକୁ ଅସ୍ୱୀକାର କରିଥିଲେ ।

> "କ୍ଷୁଦ୍ର କୁଷାରଟନାକାରୀମାନେ ଜାଣନ୍ତି ଯେ ପ୍ରତ୍ୟେକ ସଚ୍ଚା କମ୍ୟୁନିଷ୍ଟ ପାର୍ଟି ପ୍ରତି ବିଶ୍ୱସ୍ତ ରହନ୍ତି, ଜୀବନଠାରୁ ଅଧିକ ମୂଲ୍ୟବାନ ବୋଲି ଗ୍ରହଣ କରନ୍ତି । ଆମ ପାର୍ଟିର ଶତ୍ରୁମାନଙ୍କୁ ଆହୁରି ଶିଖିବାକୁ ଅଛି ଯେ ସେମାନେ ଯାହାକିଛି କରିବେ, ତାହା ଆମ ପାର୍ଟିର ଏକତାକୁ କେବେହେଲେ ଭାଙ୍ଗିପାରିବ ନାହିଁ ଏବଂ ପରିଶେଷରେ ଏହି କୁଷାରଟନାକାରୀ ଓ ନିର୍ଯ୍ୟାତନାକାରୀମାନଙ୍କୁ ଟିକିଟିକି କରି ପବନରେ ଫିଙ୍ଗିଦେଇ ବିଜୟ ପ୍ରାପ୍ତ ହେବ ଏବଂ ଏହା ସମ୍ଭବ ହେବ ବାସ୍ତବ ସ୍ୱାଧୀନତା ପାଇଁ ଓ ଗଣତନ୍ତ୍ର ପାଇଁ, ଲୋକମାନଙ୍କର ସାଙ୍ଗଠନିକ ସଂଗ୍ରାମର ସଫଳତା ମାଧ୍ୟମରେ ଯାହାକି କେବଳ ଏକ ପରିଚ୍ଛନ୍ନ, ସୁସ୍ଥ, ସୁଖୀ ଓ ପ୍ରଗତି ଜାତୀୟ ଜୀବନର ଆଧାର ହୋଇ ଧରି ରଖି ପାରିବ।"[୬]

୧୯୪୯ ଡିସେମ୍ବର ମାସରେ ପରିଶେଷରେ ଯେତେବେଳେ ଜୋଷୀଙ୍କୁ କମ୍ୟୁନିଷ୍ଟ ପାର୍ଟିରୁ ସମ୍ପୂର୍ଣ୍ଣ ବହିଷ୍କାର କରାଗଲା, ସେ ଖବରକାଗଜରୁ ଏହା ପଢ଼ି ଗଭୀର ମର୍ମାହତ ହେଲେ। ସେ ତାଙ୍କର ଖବରକାଗଜକୁ ବିବୃତିରେ ଲେଖିଥିଲେ, "ଭୁଲ୍ ନୀତି ଯୋଗୁଁ ପ୍ରୟୋଗରେ ଯେଉଁ ବିଫଳତା ଦେଖାଦେଉଛି, ତା'ର ପରିଣତି ହେଉଛି ପାର୍ଟିର ବିଶ୍ୱସ୍ତ ଓ ନିଷ୍ଠାବାନ ସାଥୀମାନଙ୍କ ଉପରେ ଅତ୍ୟନ୍ତ ନୀତିହୀନ ଓ କଠୋର ଦଣ୍ଡ ଆରୋପଣ ଏବଂ ମୁଁ ଦାବି କରିପାରେ ଯେ ମୁଁ ସେଥି ମଧ୍ୟରୁ ଅନ୍ୟତମ ।" ଫେବୃୟାରୀ ୧୮, ୧୯୫୦ରେ ସେ କେନ୍ଦ୍ରୀୟ ସମ୍ପାଦକମଣ୍ଡଳୀକୁ ତାଙ୍କର ବହିଷ୍କାର ବିରୁଦ୍ଧରେ ନିବେଦନ କରିଥିଲେ ।

> "ତୁମେ ଜାଣ ଓ ମୁଁ ମଧ୍ୟ ଜାଣେ ଯେ ପାର୍ଟି ସମ୍ବିଧାନ ଅନୁସାରେ ମୋର ପାର୍ଟି ଅଧିକାରର ଗ୍ୟାରେଣ୍ଟି ରହିଛି ଯେ କେନ୍ଦ୍ରୀୟ କମିଟିର ନିଷ୍ପତ୍ତି ବିରୁଦ୍ଧରେ କଣ୍ଟ୍ରୋଲ କମିଶନଙ୍କୁ ନିବେଦନ କରାଯାଇ ପାରିବ, ଯାହାକୁ ତୁମେମାନେ ବର୍ଷେକାଳ କୌଶଳପୂର୍ଣ୍ଣ ଭାବେ ପରିଚାଳନା କରି ତୁମର ହୃଦୟର ସବୁଠାରୁ ଶ୍ରେଷ୍ଠ, କିନ୍ତୁ କଳୁଷିତ ଇଚ୍ଛାକୁ ପୂରଣ କଲ।
>
> କିନ୍ତୁ ଯେତେ ଚେଷ୍ଟା କଲେ ମଧ୍ୟ, ତୁମେ ମୋତେ ଉତ୍ତେଜିତ କରିବାକୁ ଆଦୌ ସଫଳ ହୋଇପାରିବ ନାହିଁ । ତୁମେ ତୁମର ଯୁବାବସ୍ଥାରେ ଯେଉଁ ଭୁଲ୍

---

୬. ଭିଉଜ୍ ନଂ ୧, ପୃଷ୍ଠା-୫୮।

କରିଛ, ତାହା ହେଉଛି ପାର୍ଟିରେ ବିଭାଜନ କରିବା ଏବଂ ଏକ ପ୍ରତିଦ୍ୱନ୍ଦ୍ୱୀ ଗୋଷ୍ଠୀ ଗଠନ କରିବା । ମୁଁ ମୋର ପାର୍ଟି ଶିକ୍ଷା ଅତ୍ୟନ୍ତ ଉନ୍ନତ ଭାବେ ପାଇଛି । ମୋର ପାର୍ଟି ପ୍ରତି ବିଶ୍ୱସ୍ତତା ସବୁଠାରୁ ବେଶି, ଏପରିକି ମୋର ପବିତ୍ର ପାର୍ଟି ବିରୁଦ୍ଧରେ ତୁମମାନଙ୍କର କ୍ରୋଧ ଓ ତୁମ୍ଭେମାନେ ପାର୍ଟି ପ୍ରତି ଯାହା କରିଛ, ତା ଠାରୁ ବେଶି ।

ମୋର ଆଦୌ ସନ୍ଦେହ ନାହିଁ ଯେ ଏପରି ଏକ ସୁଦିନ ଆସିବ ଯେଉଁଦିନ ତୁମମାନଙ୍କର ଅନ୍ୟ ଅପରାଧଗୁଡ଼ିକ ପାଇଁ, ତୁମମାନଙ୍କୁ ପାର୍ଟି ସମ୍ମୁଖରେ ଉତ୍ତର ଦେବାକୁ ହେବ । କାହିଁକି ଓ କେଉଁଥିପାଇଁ ତୁମେ ପାର୍ଟି ସଙ୍ଗଠନର ସମସ୍ତ ନୀତିଗୁଡ଼ିକୁ ଅବମାନନା କରିଛ ଏବଂ ମୋତେ ମୋର ଜନ୍ମଗତ ପାର୍ଟି ଅଧିକାରରୁ ବଞ୍ଚିତ କରିଛ ଅତ୍ୟନ୍ତ ନୀତିହୀନ ବ୍ୟୁରୋକ୍ରାଟଙ୍କ ପରି କାର୍ଯ୍ୟ କରି, ପାର୍ଟି କ୍ଷମତାକୁ ଦୁରୁପଯୋଗ କରିଛ, ପାର୍ଟି ସମ୍ବିଧାନକୁ ଅବମାନନା କରିଛ, ମୋ ପରି ଏକ ପୁରୁଣା ପାର୍ଟି ସଭ୍ୟଙ୍କୁ ଜାଣିଶୁଣି ଉପେକ୍ଷା କରିଛ, ଯାହାକି ଆମର ପାର୍ଟି ଜୀବନରେ ଯାହା କେବେ ହୋଇ ନ ଥିଲା, ତାହାଠାରୁ ଅତ୍ୟନ୍ତ ନିକୃଷ୍ଟ କାର୍ଯ୍ୟ କରିଛ । ଏହା ମୁଁ ଅତ୍ୟନ୍ତ ଧୀରସ୍ଥିର ଭାବରେ ଏବଂ ବହୁ ସମୟ ଚିନ୍ତାକରି ସମ୍ପୂର୍ଣ୍ଣ ଦାୟିତ୍ୱପୂର୍ଣ୍ଣ ଭାବରେ ଏକଥା କହୁଛି ।"[୬]

ଏହି ଚିଠି ଯୋଷୀଙ୍କର ପାର୍ଟି ପ୍ରତି କେତେ ଶ୍ରଦ୍ଧା ତାହା ପ୍ରମାଣ କରେ । ପାର୍ଟି ଥିଲା ତାଙ୍କର ଜୀବନ, ସେ ନିଷ୍ଠାର ସହିତ ପାର୍ଟିକୁ ଭଲ ପାଉଥିଲେ ଏବଂ ଚାହୁଁଥିଲେ ଯେ ଏହା ବର୍ଦ୍ଧିତ ହୋଇ ଏକ ନୂତନ ଭାରତ ଗଠନ ପାଇଁ ଜାତୀୟ ରାଜନୀତିରେ ସ୍ଥାନ ସୃଷ୍ଟି କରୁ । ସେ ତାଙ୍କ ଜୀବନର ଶେଷ ସମୟରେ ଯୁବସାଥୀମାନଙ୍କୁ କହୁଥିଲେ, "ତୁମେ ପାର୍ଟି ଛାଡ଼ିପାରିବ ନାହିଁ, ଯେପରି ଜଣେ ନିଜର ମା'କୁ ଛାଡ଼ି ନପାରିବା ପରି, ହୁଏତ ମା' ଭୁଲ୍ କରି ଥାଇପାରେ ।" ଯଦିଓ ବହିଷ୍କାର ହେତୁ ସେ ଭଗ୍ନପ୍ରାୟ ହୋଇଯାଇଥିଲେ, ସେ ପାର୍ଟି ପ୍ରତି ଥିଲେ ଅନୁରକ୍ତ ଏବଂ ଏକ ବିପକ୍ଷ ଗୋଷ୍ଠୀ ଗଠନ କିମ୍ବା ପାର୍ଟିକୁ ବିଭାଜନ କରିବାକୁ ଚାହିଁ ନ ଥିଲେ । ଜୀବନତମାମ, ସେ ଥିଲେ ଏକାକୀ, ନିଜ ଭିତରେ ସଂଗ୍ରାମ କରୁଥିଲେ ଏବଂ ନିଜର ବିଚାରର ମାର୍ଗ ଓ କୌଶଳ ସମ୍ପର୍କରେ ଯୁକ୍ତି କରୁଥିଲେ, କିନ୍ତୁ କେବେହେଲେ ପାର୍ଟିରୁ ଅଲଗା ହୋଇ ଯାଉନଥିଲେ ଯାହାକୁ ସେ ନିଜେ ଗଢ଼ିଥିଲେ ଏବଂ ଲାଳନପାଳନ କରିଥିଲେ ଯାହା ଫଳରେ ତାହା ବିକଶିତ ହୋଇପାରିବ ।

୧୯୪୮ ସମୟ ତାଙ୍କୁ ସମ୍ପୂର୍ଣ୍ଣଭାବେ ଭାଙ୍ଗିପକାଇଥିଲା । ଯନ୍ତ୍ରଣା ଥିଲା ଅତ୍ୟନ୍ତ ଗଭୀର । ଏହାର ବହୁ ପରେ ୧୯୬୮ ମସିହାରେ ସେ ସେହି ବର୍ଷଗୁଡ଼ିକ ସମ୍ପର୍କରେ ଲେଖିଥିଲେ:

"୧୯୪୮-୫୦ ମୋ ଜୀବନର ସବୁଠାରୁ ଉପାଦେୟ ବର୍ଷ ଏହି ଦୃଷ୍ଟିରୁ ଯେ କେତେକ ନକରାତ୍ମକ ଅନୁଭବ ଆହରଣ କରିଥିଲି ଯଦିଓ ୧୯୩୬-୪୮ ଥିଲା

---

୬. ଭିତର୍ ନଂ ୧, ପୃଷ୍ଠା-୪୮ ।

ସକାରାତ୍ମକ ଅନୁଭବର ସମୟ । ବହୁ ସମୟ ଧରି ସମଗ୍ର ପାର୍ଟି ଦ୍ୱାରା ଶ୍ରେଷ୍ଠ ବ୍ୟକ୍ତି ଭାବରେ ଗଣା ହୋଇଥିବା ବେଳେ, ସେହି ସର୍ବସମ୍ମତ ଭାବରେ ଗୋଇଠା ଓ ନିନ୍ଦା ପାଇବାର ଆବଶ୍ୟକ ଥିଲା । ପାର୍ଟିର ଆଦର୍ଶଗତ ଅପରିପକ୍ୱତା ଏବଂ ମୋର ମଧ୍ୟ ଏପରି ଥିଲା ଯେ 'ଶିଖିବା ପାଇଁ' କୌଣସି ବାଟ ନ ଥିଲା ଏବଂ ପାର୍ଟି ଗଠନ କରି ସମସ୍ୟାକୁ ସମାଧାନ କରିବାପାଇଁ, ଯାହା ଫଳରେ ପାର୍ଟି ଅନ୍ୟ ଅଗ୍ରଗାମୀ ଗଣତାନ୍ତ୍ରିକ ଶକ୍ତିମାନଙ୍କ ସହିତ ମିଶି ନିଜର ଅଗ୍ରଗାମୀ ଭୂମିକା ନିଭାଇ ପାରିବ।"

ପାର୍ଟିର କର୍ମୀମାନଙ୍କ ମଧ୍ୟରେ ପୁନଃ ବିଚାରର ପ୍ରକ୍ରିୟା ବହୁ ପରେ ଆରମ୍ଭ ହେଲା। ଯେଉଁ ସାଥୀମାନେ ବି.ଟି. ରଣଦିଭେଙ୍କ ଆଡ଼କୁ ଢଳିଥିଲେ ସେମାନେ ଏହି ଭୁଲ୍ ମାର୍ଗ ସମ୍ପର୍କରେ ସ୍ମୃତିଚାରଣ କରିଥିଲେ । ସେମାନଙ୍କ ମଧ୍ୟରୁ କେତେକ ପରବର୍ତ୍ତୀ ସମୟରେ ସେମାନଙ୍କର ସନ୍ଦେହ ବ୍ୟକ୍ତ କରିଥିଲେ ଏବଂ କହିଥିଲେ, "ନୂତନ ନୀତି ସଦ୍ୟ ସ୍ୱାଧୀନତାପ୍ରାପ୍ତ ଗୋଟିଏ ରାଷ୍ଟ୍ର ପାଇଁ ଆବଶ୍ୟକ ଥିଲା କି ନାହିଁ ତାହା ଗୁରୁତ୍ୱପୂର୍ଣ୍ଣ ଭାବରେ ବିଚାର କରିବାର ଆବଶ୍ୟକତା ଥିଲା।"[୮] ସତ୍ୟପାଲ ଡାଙ୍ଗ ଯେ ନୂତନ ନେତୃତ୍ୱ ସହିତ ୧୯୪୮ ମସିହାରେ ସମ୍ପୂର୍ଣ୍ଣ ଭାବରେ ଥିଲେ, ପରବର୍ତ୍ତୀ ସମୟରେ ସିଂହାବଲୋକନ କରି ଅନୁଭବ କରିଥିଲେ, "ଜୋଷୀଙ୍କର ସେହି ଐତିହାସିକ ଦିବସ (ଅଗଷ୍ଟ ୧୫, ୧୯୪୭)ର ମୂଲ୍ୟାୟନ ସତ୍ୟର ଅଧିକ ନିକଟବର୍ତ୍ତୀ ଥିଲା। ଯଦି ଏହା ପ୍ରଭାବିତ କରିଥାନ୍ତା, ତେବେ ନେହେରୁଙ୍କ ନେତୃତ୍ୱରେ ସ୍ୱାଧୀନ ଭାରତର ପ୍ରଥମ ସରକାର ପ୍ରତି ସିପିଆଇର ଦୃଷ୍ଟିଭଙ୍ଗୀ ସମ୍ପୂର୍ଣ୍ଣ ଭାବେ ନକରାତ୍ମକ ହୋଇନଥାନ୍ତା। ସମ୍ଭବତଃ ଏହା ହୋଇଥାନ୍ତା ସକାରାତ୍ମକ ସମାଲୋଚନାମୂଳକ।"[୯]

ପ୍ରାୟ ସମସ୍ତ ସାଥୀମାନେ ମାର୍ଗ ପରିବର୍ତ୍ତନ ପରେ ପାର୍ଟି ସହିତ ରହିଥିଲେ ଏବଂ ପି.ସି. ଜୋଷୀଙ୍କୁ ସମର୍ଥନ କରିନଥିଲେ, କିନ୍ତୁ ଏହା ପାର୍ଟି ଭିତରେ ଆଲୋଡ଼ିତ ହେଉଥିଲା। "ଜୋଷୀଙ୍କର ମାନବବାଦୀ ବ୍ୟକ୍ତିତ୍ୱର ଚୁମ୍ବକୀୟ ଶକ୍ତିର ଆକର୍ଷଣରେ ପ୍ରାୟ ସମସ୍ତେ ତାଙ୍କ ଦ୍ୱାରା ପାର୍ଟି ଭିତରକୁ ଆସିଥିଲେ । ସୁବିଧାବାଦୀ ରଣଦିଭେଙ୍କ ସହିତ ତାଙ୍କର ଯୋଡ଼ି ଜୋଷୀଙ୍କୁ ସମ୍ପୂର୍ଣ୍ଣ ଭାବେ ବହିଷ୍କାର କରିବାର ପ୍ରଚେଷ୍ଟା ଦ୍ୱାରା ସେମାନେ ବାସ୍ତବରେ ବିଚଳିତ ଥିଲେ।"[୧୦] ଯେତେବେଳେ ନିଖିଳ ଚକ୍ରବର୍ତ୍ତୀ ଭୁପେଶ ଗୁପ୍ତଙ୍କୁ ଜୋଷୀଙ୍କ ବହିଷ୍କାର ଦ୍ୱାରା ପାର୍ଟିର କ'ଣ ଲାଭ ହେବ ବୋଲି ପଚାରିଲେ, ଭୁପେଶ ଯେଉଁ ଉତ୍ତର ଦେଲେ, ତାହା ପରିଷ୍କାର ଭାବେ ବହୁ ସାଥୀମାନଙ୍କ ମଧ୍ୟରେ ଥିବା ଦ୍ୱନ୍ଦ୍ୱକୁ ଉନ୍ମୋଚିତ କରେ ଯାହା ସେ ଓ ନିଖିଳ ସମ୍ମୁଖୀନ ହୋଇଥିଲେ । ଭୁପେଶ ଉତ୍ତର ଦେଇଥିଲେ :

---

୮. ମଣିକୁନ୍ତଳା ସେନ୍, ପୃଷ୍ଠା-୧୮୪।

୯. ସତ୍ୟପାଲ ଡାଙ୍ଗ - ଅନ୍ ପବ୍ଲିସ୍ଡ୍ ଆର୍ଟିକିଲ୍ ଅନ୍ ପି.ସି. ଜୋଷୀ, ରିଟିନ୍ ଅନ୍ ଏପ୍ରିଲ ୩, ୨୦୦୧।

୧୦. ନିଖିଳ ଚକ୍ରବର୍ତ୍ତୀ'ଙ୍କ ରି କଲେକ୍ସନ, ମେନ୍‌ଷ୍ଟ୍ରିମ୍, ଅଗଷ୍ଟ ୬, ୧୯୮୧।

"ଯୋଶୀଙ୍କର ବହିଷ୍କାର ବାସ୍ତବରେ ଆମମାନଙ୍କ ପରି କେତେକଙ୍କୁ ବ୍ୟକ୍ତିଗତ ଭାବେ ଶକ୍ତ ଧକ୍କା କିନ୍ତୁ ଯଦି ପାର୍ଟିର ସଂଖ୍ୟାଧିକ ସାଥୀ ବିଚାର କରୁଥାନ୍ତି ଯେ ଯୋଷୀଙ୍କର ମାର୍ଗ ଭୁଲ, ତେବେ ଯୋଷୀଙ୍କ ପାଇଁ ଛିଡ଼ା ହେବା ଅର୍ଥ ଭୁଲବୁଝାମଣା ସୃଷ୍ଟି କରିବ ଯେ ଆମେ ଯୋଷୀଙ୍କ ମାର୍ଗ ସମର୍ଥନ କରୁଛୁ । ମୁଁ ମୋର ଅନୁଭବରୁ ଜାଣେ ରାଜନୈତିକ ନେତାମାନେ କେତେ ନିଷ୍ଠୁର, କିନ୍ତୁ ତୁମେ ଓ ମୁଁ ଯେଉଁ ଶ୍ରେଣୀରୁ ଆସିଛନ୍ତି, ଆମ୍ଭେମାନେ ସର୍ବହରା ନୁହଁନ୍ତି । ତେଣୁ ଯୋଷୀଙ୍କ ସହିତ ଆମର ସମ୍ପର୍କକୁ ଆମ ଶ୍ରେଣୀ ଆଦର୍ଶର ବ୍ୟକ୍ତିନିଷ୍ଠ ଫଳାଫଳ ଭାବରେ ବିବେଚନା କରାଯିବ ।"[୧୧]

କମ୍ୟୁନିଷ୍ଟ ପାର୍ଟିକୁ ବେଆଇନ୍ କରାଗଲା । ବହୁ ସାଥୀ ଜେଲ୍ ଗଲେ ଏବଂ ଅନେକ ଆତ୍ମଗୋପନ କଲେ । ଦୁଇବର୍ଷର ବାମମାର୍ଗୀ ଦୁଃସାହସିକତା ପାର୍ଟିକୁ ସମ୍ପୂର୍ଣ୍ଣ ଭାବରେ ନଷ୍ଟ କରିଦେଲା । ବଙ୍ଗଳା ପାର୍ଟିର ପ୍ରସିଦ୍ଧ ମହିଳା ନେତ୍ରୀ ମଣିକୁନ୍ତଳା ସେନ୍ ତାଙ୍କର ସ୍ମୃତିଚାରଣରେ ଲେଖିଥିଲେ,

"୨୯ ଜୁଲାଇ ୧୯୪୬ ମସିହାରେ ଯେଉଁ ସଫଳ ଧର୍ମଘଟ ହୋଇଥିଲା, ତାହା ପ୍ରମାଣ କରିଦେଇଥିଲା ଯେ ଶ୍ରମିକମାନଙ୍କର ଧର୍ମଘଟ ଏକ ଶକ୍ତିଶାଳୀ ଅସ୍ତ୍ର, କିନ୍ତୁ ଏହି ଅସ୍ତ୍ର କେମିତି ଦନ୍ତରା ହୋଇଯାଏ ଯେତେବେଳେ ଅନାବଶ୍ୟକ ଧର୍ମଘଟର ଡାକରା ଦିଆଯାଏ ଏବଂ ମାର୍ଚ୍ଚ ୧୯୪୯ରେ ଟ୍ରେଡ୍ ୟୁନିୟନ କଂଗ୍ରେସ ଦ୍ୱାରା ଡକାଯାଇଥିବା ଦେଶବ୍ୟାପୀ ରେଳ ଧର୍ମଘଟକୁ କୌଣସି ସମର୍ଥନ ମିଳିନଥିବାରୁ ଏହା ପରିଷ୍କାର ଭାବରେ ଜଣାପଡ଼ିଥିଲା ।"[୧୨]

ଯୋଷୀଙ୍କ ସମୟରେ କଲିକତାର ଟ୍ରକ୍ ଓ ବସ୍ ଶ୍ରମିକମାନଙ୍କ ମଧ୍ୟରେ କମ୍ୟୁନିଷ୍ଟମାନେ ଶକ୍ତିଶାଳୀ ଶକ୍ତି ଥିଲେ । ଯେତେବେଳେ କୌଣସି ଧର୍ମଘଟର ଡାକରା ଦିଆଯାଉଥିଲା, ସେମାନଙ୍କର ସମର୍ଥନ ଥିଲା ସ୍ୱତଃସ୍ଫୂର୍ତ୍ତ, କିନ୍ତୁ ଏହି ସମୟରେ ଶ୍ରମିକମାନେ ଧର୍ମଘଟରେ ଯୋଗଦେବାକୁ କୁଣ୍ଠାବୋଧ କରିଥିଲେ । ଅନେକ ଅନୁଭବ କରିଥିଲେ ଯେ ସେହି ସମୟର ଆହ୍ୱାନରେ କୃଷକମାନେ ଭୁଲ୍ ବାଟରେ ପରିଚାଳିତ ହୋଇଥିଲେ ଏବଂ କେବଳ ତେଲେଙ୍ଗାନାକୁ ଛାଡ଼ି ଅନ୍ୟ ସବୁଠାରେ କୃଷକ ଆନ୍ଦୋଳନ ସମ୍ପୂର୍ଣ୍ଣ ମୂଳପୋଛ ହୋଇଗଲା । ବମ୍ବେର କାମଗାର ପଡ଼ିଆରେ ସର୍ବଭାରତୀୟ ସମ୍ମିଳନୀ ପାଇଁ ଜମା ହୋଇଥିବା ଛାତ୍ରମାନଙ୍କୁ ପୋଲିସ୍ ଘେରାବନ୍ଦି ଭାଙ୍ଗିବାକୁ କୁହାଗଲା । ପୁଲିସ୍ ଗୁଳି ଚଳାଇଲେ ଏବଂ ବହୁତ ଆହତ ହେଲେ । ସେହିପରି ଭାବରେ କଲିକତାରେ, ଏପ୍ରିଲ ୨୭, ୧୯୪୯ ଦିନ ପୁଲିସ ମହିଳା ଶୋଭାଯାତ୍ରା ଉପରକୁ

୧୧. ତତ୍ରୈବ ।

୧୨. ମଣିକୁନ୍ତଳା ସେନ, ପୃଷ୍ଠା-୧୮୬ ।

ଗୁଳି ଚଳାଇଲେ, ଯାହାର ପରିଣତି ହେଲା ୪ଜଣ ମହିଳା ସାଥୀ – ଲତିକା, ପ୍ରତିଭା, ଗୀତା ଓ ଅମିୟାଙ୍କର ମୃତ୍ୟୁ – ଯେଉଁମାନେ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିବାକୁ ଦାବି କରୁଥିଲେ। ଏପ୍ରିଲ ୨୮ ତାରିଖଠାରୁ କଲିକତା ଜେଲରେ ଥିବା ବନ୍ଦୀମାନେ ସେହି ହତ୍ୟା ବିରୁଦ୍ଧରେ ଅନଶନ ଧର୍ମଘଟ କଲେ ।

ଯେଉଁମାନେ ଆତ୍ମଗୋପନରେ ରହିଥିଲେ ସେମାନଙ୍କ ପାଇଁ ଏହି ଦୁଇବର୍ଷ ଥିଲା ଅତ୍ୟନ୍ତ ଯନ୍ତ୍ରଣାଦାୟକ । ଏହାର ଅର୍ଥ ଥିଲା ରୋଷେଇ କରିବା, ଖାଇବା, ଶୋଇବା, ଚିଠି ନବା ଆଣିବା କରିବା, ଗପ କରିବା ଏବଂ ସାଥୀମାନଙ୍କର ବହିଷ୍କାର ସମ୍ପର୍କରେ ପ୍ରସ୍ତାବ ପାସ୍ କରିବା ଏବଂ ଏହା ବ୍ୟତୀତ ଅନ୍ୟ କିଛି ନୁହେଁ । ଯେଉଁମାନେ ଜୋଷୀଙ୍କର ନିକଟତମ ସେମାନଙ୍କ ବିରୁଦ୍ଧରେ ଅଭିଯାନ ସମଗ୍ର ପରିବେଶକୁ କଳୁଷିତ କରିଥିଲା । ୧୯୫୦ ମସିହା ପ୍ରାରମ୍ଭକୁ, ପାର୍ଟି ସାଥୀମାନେ ବାମଗୋଷ୍ଠୀଗତ ନୀତିର ମୂଲ୍ୟହୀନତା ସମ୍ପର୍କରେ ଅନୁଭବ କରିବାକୁ ଆରମ୍ଭ କଲେ। ଦୁଇବର୍ଷର ବାମ ଦୁଃସାହସିକତା ପରେ ଆନ୍ତର୍ଜାତୀୟ କମ୍ୟୁନିଷ୍ଟ ଆନ୍ଦୋଳନ ପାର୍ଟିକୁ ରକ୍ଷା କରିବାକୁ ଆଗେଇ ଆସିଲେ ଏବଂ ଏହି ପତମାନ ଅବସ୍ଥାରୁ ବାହାରିବାରେ ସାହାଯ୍ୟ କଲେ। ଏଥିରେ ପି.ସି. ଜୋଷୀ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଥିଲେ। ସେ ଆର.ପି. ଦତ୍ତଙ୍କ ନିକଟକୁ ଜାନୁୟାରୀ ୧୩, ୧୯୫୦ରେ କଲିକତାରେ ଅନୁଷ୍ଠିତ ଭାରତୀୟ ବିଜ୍ଞାନ କଂଗ୍ରେସରେ ଯୋଗ ଦେବାକୁ ଆସିଥିବା ପ୍ରଫେସର ଜେ.ବି. ବରନାଲଙ୍କ ମାଧ୍ୟମରେ ରଣଦିଭେଙ୍କର ବିପଦଜନକ ମାର୍ଗ ସମ୍ପର୍କରେ ତାଙ୍କର ମତ ଲେଖି ଜଣାଇଥିଲେ । ବିଦେଶୀ ସାଥୀମାନଙ୍କୁ ଜାନୁଆରୀ ୧୩, ୧୯୫୦ରେ ଲେଖିଥିବା ପତ୍ରରେ ଜୋଷୀ ଗୋଟିଏ ସ୍ଥାନରେ ଲେଖିଥିଲେ, "ଦୟାକରି ଦେଖିବ ଯେ ଆମର କେନ୍ଦ୍ରୀୟ ନେତୃତ୍ୱ କେତେ ବେଶି ବିପ୍ଲବ କଥା କହିଛନ୍ତି କିନ୍ତୁ ଯେତେଗୁଡ଼ିଏ ପ୍ରଧାନ ଧର୍ମଘଟ ହୋଇଛି, ତାହାର ଗୁରୁତ୍ୱପୂର୍ଣ୍ଣ ଆତ୍ମ ସମାଲୋଚନାମୂଳକ ପର୍ଯ୍ୟାଲୋଚନା କରାଯାଉ ନାହିଁ, ଏପରିକି ଏକ ଉନ୍ନତ ବର୍ଣ୍ଣନା ମଧ୍ୟ ନାହିଁ।"

କୋମିନଟର୍ନର ପରିବର୍ତ୍ତିତ ନାମ କୋମିନଫର୍ମ, ୧୯୫୦ ପ୍ରାରମ୍ଭରେ ଏହାର ପତ୍ରିକାରେ ଗୋଟିଏ ସମ୍ପାଦକୀୟ ପ୍ରକାଶ କରିଥିଲା । ଏହି ଲେଖାର ନାମକରଣ ଥିଲା, ଚିରନ୍ତନ ଶାନ୍ତି ଓ ଜନଗଣଙ୍କର ଗଣତନ୍ତ୍ର ପାଇଁ (ଏଲପିପିଡ଼ି) । ଏଥିରେ ଦର୍ଶାଯାଇଥିଲା ଯେ ସିପିଆଇ ବର୍ତ୍ତମାନ ସମୟରେ ଯେଉଁ ରାଜନୈତିକ ମାର୍ଗ ଗ୍ରହଣ କରିଛି, ତାହା ଭୁଲ୍ । ଏଥିରେ କୁହାଯାଇଥିଲା ଯେ ଭାରତର ଗଣତାନ୍ତ୍ରିକ ଶକ୍ତି ଜାତୀୟ ବୁର୍ଜୁଆ ସହିତ ମିଳିତ ଫ୍ରଣ୍ଟ ଗଠନ କରିବାର ଆବଶ୍ୟକତା ରହିଛି । ଶ୍ରମିକ ଶ୍ରେଣୀ ଓ ଉଭୟ ଧନୀ ଓ ଗରିବ କୃଷକ ଗଣତାନ୍ତ୍ରିକ ବିପ୍ଳବର ଧାରାକୁ ସମ୍ପୂର୍ଣ୍ଣ କରିବା ଦରକାର । ସମ୍ପାଦକୀୟ ବାସ୍ତବ ଭାବରେ ଜୋଷୀଙ୍କର ମତାମତର ପ୍ରତିଛବି ଥିଲା । ୧୯୫୦ରେ ଏକ ବିଶେଷ ସାଧାରଣ ଅଧିବେଶନରେ ରଣଦିଭେଙ୍କୁ ନେତୃତ୍ୱରୁ ହଟାଇ ଦିଆଯାଇଥିଲା ଏବଂ ସି. ରାଜେଶ୍ୱର ରାଓ ଯେ କି ତେଲେଙ୍ଗାନା ଆନ୍ଦୋଳନ ପ୍ରସିଦ୍ଧ ତାଙ୍କୁ ପାର୍ଟିର ନୂତନ ସାଧାରଣ ସମ୍ପାଦକ କରାଯାଇଥିଲା ଏବଂ ନୂତନ ଆହ୍ୱାନ ଥିଲା,

"ଚୀନ୍‌ର ମାର୍ଗ ଆମର ମାର୍ଗ"- ଏହାର କାରଣ ଥିଲା ଅକ୍ଟୋବର ୧୯୪୯ ବିପ୍ଳବ ପରେ ଚୀନ୍‌ର ସମ୍ମାନରେ ବୃଦ୍ଧି ଘଟୁଥିଲା । ତଥାପି ଯେଉଁ କ୍ଷତି ଘଟିଥିଲା ତାହା ଥିଲା ସଂଶୋଧନାତୀତ। ଏହି ଦୁଇବର୍ଷ ମଧ୍ୟରେ ପାର୍ଟିର ସଭ୍ୟ ସଂଖ୍ୟାରେ ଦ୍ରୁତ ଅବନତି ଘଟି ୯୦ହଜାରରୁ ୯ହଜାରରେ ପହଞ୍ଚିଥିଲା। ଭାରତୀୟ ଗଣନାଟ୍ୟ ସଂଘ ଓ ପ୍ରଗତିଶୀଳ ଲେଖକ ସଂଘ ମାଧ୍ୟମରେ ଯେଉଁ କଳାକାର, ଲେଖକ, ବୁଦ୍ଧିଜୀବୀମାନଙ୍କୁ ପାର୍ଟି ମଧ୍ୟକୁ ଆକର୍ଷିତ କରି ଅଣାଯାଇଥିଲା, ସେମାନେ ଅଲଗା ହୋଇଯାଇଥିଲେ ।

ପାର୍ଟି ନେତୃତ୍ୱର ପରିବର୍ତ୍ତନ ସତ୍ତ୍ୱେ, ପାର୍ଟିର ରାଜନୈତିକ ମାର୍ଗରେ ସେପରି କିଛି ଆଖିଦୃଶିଆ ପରିବର୍ତ୍ତନ ହେଲାନାହିଁ । ଭାରତକୁ ସାମ୍ରାଜ୍ୟବାଦର ଗୋଡ଼ାଣିଆ ଭାବରେ, ଅର୍ଦ୍ଧ ଉପନିବେଶବାଦ ରାଷ୍ଟ୍ର ଭାବରେ ବିଚାର କରାଗଲା ଏବଂ ନେହେରୁଙ୍କୁ ସାମ୍ରାଜ୍ୟବାଦର 'ଦୌଡ଼ୁଥିବା କୁକୁର' ଭାବରେ ବର୍ଣ୍ଣନା କରାଯାଇ ବେଜିଂଠାରେ ଅନୁଷ୍ଠିତ ଏସିଆନ୍ ଟ୍ରେଡ୍ ୟୁନିୟନ ସମ୍ମିଳନୀରେ ଗ୍ରହଣ ହୋଇଥିବା ଚିଠାରେ କୁହାଗଲା । ପାର୍ଟିର କେନ୍ଦ୍ରୀୟ ନେତୃତ୍ୱରେ ତେଲେଙ୍ଗାନା ନେତୃତ୍ୱର ଅଭ୍ୟୁଦୟ ହୋଇଥିଲେ ମଧ୍ୟ ନୂତନ ପୋଷାକରେ ସେହି ବିପଜ୍ଜନକ ଗୋଷ୍ଠୀଗତ ନୀତି ଚାଲୁ ରହିଲା। 'ଚୀନ୍ ମଡ଼େଲ' ରଷ ମାର୍ଗ ବଦଳରେ ଗ୍ରହଣ କରାଯାଇ କୃଷକମାନଙ୍କୁ ବିଶେଷ ପ୍ରାଧାନ୍ୟ ଦିଆଗଲା। ରଣଦିଭେଙ୍କ ସମୟରେ ଶ୍ରମିକ ଶ୍ରେଣୀକୁ ଗୁରୁତ୍ୱ ଦିଆଯାଇଥିଲା। ଶାସକ ବୁର୍ଜୁଆମାନଙ୍କୁ, ଅତୀତ ପରି ସାମ୍ରାଜ୍ୟବାଦୀମାନଙ୍କର ବିଶେଷକରି ବ୍ରିଟିଶ ସାମ୍ରାଜ୍ୟବାଦର ସ୍ୱାର୍ଥ ପାଇଁ କାର୍ଯ୍ୟ କରୁଥିବାର ଗ୍ରହଣ କରାଗଲା ।

ଯୋଷୀ ସଦାସର୍ବଦା ସର୍ଦ୍ଦାର ପଟେଲ ଓ ନେହେରୁଙ୍କ ମଧ୍ୟରେ ପାର୍ଥକ୍ୟ ରଖୁଥିଲେ। ସେ ବୁର୍ଜୁଆକୁ ଆଦୌ ଦୃଢ଼ ଶକ୍ତି ଭାବରେ ବିଚାର କରୁନଥିଲେ । ତେଣୁ ବହୁତ ତାଙ୍କୁ ନେହେରୁଙ୍କ ପ୍ରଭାବରେ ଥିବା ହେତୁ କ୍ଷୁଦ୍ର ବୁର୍ଜୁଆ ଭାବରେ ଭୁଲ ବୁଝୁଥିଲେ । ତଥାପି ଯୋଷୀ ନେହେରୁଙ୍କର ସମାଲୋଚନାହୀନ ସପକ୍ଷ ପ୍ରଶଂସକ ନଥିଲେ । ବାସ୍ତବ ପକ୍ଷେ, ସେ ରଣଦିଭେ ନେତୃତ୍ୱକୁ ୧୯୪୯ ଅକ୍ଟୋବର ମାସରେ ନେହେରୁଙ୍କର ଆମେରିକା ପରିଦର୍ଶନ ସମ୍ପର୍କରେ କାହିଁକି ଦେଶବ୍ୟାପୀ ପ୍ରଚାର ଅଭିଯାନ କରାନଯାଇ ପରିଦର୍ଶନର ଉଦ୍ଦେଶ୍ୟ କ'ଣ ଖୋଲି ଦିଆନଗଲା, ତାହାକୁ ପ୍ରଶ୍ନ କରିଥିଲେ ? ସେହି ସମୟରେ, ସେ ଅନୁଭବ କରିଥିଲେ ଯେ ଭାରତୀୟ କମ୍ୟୁନିଷ୍ଟମାନଙ୍କର ନିଜ ସିଦ୍ଧାନ୍ତରେ ଦୃଢ଼ ଦୃଷ୍ଟିଭଙ୍ଗୀ ହେତୁ ଜାତୀୟ ରାଷ୍ଟ୍ର ନିର୍ମାଣରେ ଯେଉଁ ସକାରାତ୍ମକ ଭୂମିକା ଗ୍ରହଣ କରାଯିବା କଥା, ତାହା ବ୍ୟାହତ ହେଲା[୧୩] ଏବଂ ଏହା ଫଳରେ କଂଗ୍ରେସ ଭିତରେ କମ୍ୟୁନିଷ୍ଟ ବିରୋଧୀ ବଞ୍ଚି ରହିଲା । କମ୍ୟୁନିଷ୍ଟମାନେ ଅଣ-ଉଲ୍ଲେଖଯୋଗ୍ୟ ଶକ୍ତି ନ ଥିଲେ, କିନ୍ତୁ ସେମାନଙ୍କର ବିରୋଧିତା ଫଳରେ ନେହେରୁ ଓ ଅନ୍ୟ ହିଡ଼ ଉପରେ ଚାଲୁଥିବା କଂଗ୍ରେସୀମାନେ କଂଗ୍ରେସ ମଧ୍ୟରେ ଥିବା ଦକ୍ଷିଣପନ୍ଥୀମାନଙ୍କର କୌଶଳପୂର୍ଣ୍ଣ ପରିଚାଳନାକୁ ଆଖି ବୁଜିଦେଲେ ଏବଂ ପାରମ୍ପରିକ କଂଗ୍ରେସବିରୋଧୀ ପ୍ରତିକ୍ରିୟାଶୀଳ ସାମନ୍ତବାଦୀ

---

୧୩. ପି.ସି. ଯୋଷୀ, "ଏ ସେଲଫ୍ କ୍ରିଟିକାଲ କମ୍ୟୁନିଷ୍ଟ ଇଭାଲୁଏସନ୍", ମେନ୍‌ଷ୍ଟ୍ରିମ୍, ମେ ୨୯, ୧୯୬୫।

ଗୋଷ୍ଠୀମାନଙ୍କୁ କଂଗ୍ରେସ ଶାସକ ଦଳ ମଧ୍ୟରେ ସାମିଲ ହେବାକୁ ଦେଲେ, କାରଣ ଏକ ଶୈଶବ ସ୍ୱାଧୀନ ରାଷ୍ଟ୍ରର ସ୍ଥାୟିତ୍ୱ ପ୍ରଦାନ ପାଇଁ ।[14] ସେ ଆହୁରି ମଧ୍ୟ ଉଲ୍ଲେଖ କଲେ ଯେ, "ଏକ ନୂତନ ଭାବରେ ପ୍ରତିଷ୍ଠିତ ସ୍ୱାଧୀନ ରାଷ୍ଟ୍ର ଯଦି ସମସ୍ତ ଜାତୀୟ ଉପାଦାନର ସକ୍ରିୟ ସହଯୋଗ ଉପରେ ନିର୍ଭର ନ କରେ, ବିଶେଷକରି ପାରମ୍ପରିକ ବାମପନ୍ଥୀ, ଯେଉଁମାନେ ସ୍ୱାଧୀନତା ସଂଗ୍ରାମରେ ସଂଗ୍ରାମ କରିଥିଲେ, କିନ୍ତୁ ସାମନ୍ତବାଦୀ ଓ ଅନ୍ୟାନ୍ୟ ପ୍ରତିକ୍ରିୟାଶୀଳ ଗୋଷ୍ଠୀର ସ୍ୱାର୍ଥକୁ ସୁରକ୍ଷା କରେ, ତେବେ ଯେଉଁ ନୂତନ ନେତୃତ୍ୱ ରାଷ୍ଟ୍ରରେ ଜନ୍ମଲାଭ କରିବ ତାହା ନୀତିହୀନ ଭାବରେ ସମ୍ପୂର୍ଣ୍ଣ କ୍ଷମତା ଲୋଭୀ ହେବ ଏବଂ ସେମାନେ ଅପର୍ଯ୍ୟାପ୍ତ ସୁବିଧା ପାଇଁ ନିଜେ ଦୁର୍ନୀତିଗ୍ରସ୍ତ ହେବାର ଶିକାର ହେବେ ଏବଂ ଅନ୍ୟକୁ ଦୁର୍ନୀତିଗ୍ରସ୍ତ କରାଇବେ।"[15] ବାସ୍ତବରେ, ସେ ରଣଦିଭେ ସମୟର ନେତୃତ୍ୱକୁ କାହିଁକି ସେମାନେ ୧୯୪୯ ଅକ୍ଟୋବର ୧ ତାରିଖ ଜନଗଣଙ୍କର ବିପ୍ଳବ ପରେ ମାଓ-ସେ-ତୁଙ୍ଗଙ୍କର ସରକାରକୁ ସ୍ୱୀକୃତି ଦାବି କଲେ ନାହିଁ ତାହାକୁ ସମାଲୋଚନା କରିଥିଲେ ଏବଂ ନେହେରୁ, ଯେ କି 'ସାମ୍ରାଜ୍ୟବାଦର ଦୌଡୁଥିବା କୁକୁର' କିପରି ସାମ୍ରାଜ୍ୟବାଦୀମାନଙ୍କର ନିର୍ଦ୍ଦେଶକୁ ଅମାନ୍ୟ କରି ଚୀନ୍‌କୁ ନିଜର ସହଯୋଗୀ ଭାବରେ ଆଲିଙ୍ଗନ କରିଥିଲେ, ସେହି ବିଡ଼ମ୍ବନାକୁ ଉଲ୍ଲେଖ କରିଥିଲେ ।

ପାର୍ଟି ନେତୃତ୍ୱରେ ଥିବା ଏକ ବୃହତ ଗୋଷ୍ଠୀ ଅଜୟ ଘୋଷ, ଏସ୍.ଏ.ଡାଙ୍ଗେ ଓ ଏସ୍.ଭି. ଘାଟେଙ୍କ ନେତୃତ୍ୱରେ ତେଲେଙ୍ଗାନା ମାର୍ଗକୁ ସେ ଚାଲେଞ୍ଜ କଲେ । ସେମାନେ ସେମାନଙ୍କର ସ୍ଥିତିକୁ ଏକ ମିଳିତ ଦଲିଲ, ଯାହା 'ତିନି ପି ଇସ୍ତାହାର' ନାମରେ ଜଣାଶୁଣା (ଏହି ତିନିଜଣଙ୍କର ଆତ୍ମଗୋପନ ସମୟରେ ନାମର ମୂଳ ଅକ୍ଷର ପି') ପ୍ରଚାରିତ କଲେ। ଏହି ଦଲିଲ ଭାରତର ସ୍ୱାଧୀନତାକୁ ମଧ୍ୟ ଅବାସ୍ତବ ଭାବେ ଏବଂ ନେହେରୁ ସରକାର ବୁର୍ଜୁଆ ଓ ଜମିମାଲିକ ସାମ୍ରାଜ୍ୟବାଦଙ୍କ ମିଳିତ ସ୍ୱାର୍ଥକୁ ଧରି ରଖିଥିଲା ବୋଲି ବିଚାର କରିଥିଲା । ଏହା ମଧ୍ୟ ସଶସ୍ତ୍ର ସଂଗ୍ରାମର ମାର୍ଗକୁ ଅନୁମୋଦନ କରିଥିଲା, କିନ୍ତୁ ପାର୍ଥକ୍ୟ ଏତିକି ଯେ ଏହା ପ୍ରସ୍ତାବ କରିଥିଲା ଯେ ଭାରତ ନିଜର ଭାରତୀୟ ମାର୍ଗ ଗ୍ରହଣ କରୁ । ଋଷିଆ କିମ୍ବା ଚୀନ୍ ମାର୍ଗ ନୁହେଁ ।

ପି.ସି. ଜୋଷୀ ଉଭୟ ମାର୍ଗକୁ ବିରୋଧ କରୁଥିଲେ । ତାଙ୍କର ମତ ଥିଲା ଯେ ଭାରତର ସ୍ୱାଧୀନତା ମିଥ୍ୟା ନୁହେଁ ବରଂ ଏହା ଜୀବନ୍ତ ବାସ୍ତବତା । ସେ ଏକ ଜାତୀୟ ଫ୍ରଣ୍ଟ ଗଠନ ପାଇଁ ନିଜର ଯୁକ୍ତି ଉପସ୍ଥାପିତ କରିଥିଲେ ଯେଉଁଥିରେ କଂଗ୍ରେସ, କମ୍ୟୁନିଷ୍ଟ ଓ ଅନ୍ୟାନ୍ୟ ଗଣତାନ୍ତ୍ରିକ ଶକ୍ତିମାନେ ରହି ଜାତୀୟ ସ୍ୱାଧୀନତାକୁ ସୁରକ୍ଷା କରିବେ, ଦେଶର ସଂହତିର ରକ୍ଷା କରିବେ ଏବଂ ଖଟିଖିଆ ମେହନତି ମଣିଷମାନଙ୍କର ସ୍ୱାର୍ଥକୁ ସୁରକ୍ଷା କରିବା ସହିତ ଆଗେଇ ନେବେ । ଜୋଷୀଙ୍କର ଏହି ମାର୍ଗକୁ ୧୯୫୧ରେ କଲିକତାଠାରେ ହୋଇଥିବା ବିଶେଷ

---

୧୪. ତତ୍ରୈବ।

୧୫. ତତ୍ରୈବ।

ଅଧିବେଶନରେ ପାର୍ଟି ଗ୍ରହଣ କଲା ନାହିଁ ବରଂ ଏହି ତିନି ପି ଦଲିଲ ନୀତି ନିର୍ଦ୍ଧାରଣ ଇସ୍ତାହାର ଭାବରେ ଗ୍ରହଣ କରାଗଲା । ରାଜେଶ୍ୱର ରାଓଙ୍କୁ ସର୍ବୋଚ୍ଚ ପାର୍ଟି ପଦବୀରୁ ଅନ୍ତର କରାଗଲା ଏବଂ ଅଜୟ ଘୋଷ ନୂତନ ସାଧାରଣ ସମ୍ପାଦକ ଭାବରେ ନିର୍ବାଚିତ ହେଲେ । ଯଦିଓ ୧୯୫୧ ଜୁନ୍ ୧ ତାରିଖରେ ଜୋଷୀଙ୍କୁ ପାର୍ଟି ଭିତରେ ପୁନଶ୍ଚ ଗ୍ରହଣ କରାଗଲା ଏହି ବକ୍ତବ୍ୟରେ ଯେ କଃ. ପି.ସି. ଜୋଷୀଙ୍କୁ ପାର୍ଟିରୁ ବହିଷ୍କାର କରିବା ଭୁଲ୍ ଓ ଅନ୍ୟାୟ ଥିଲା । ସେ ରଣଦିଭେ ପରବର୍ତ୍ତୀ ପାର୍ଟି ନେତୃତ୍ୱରେ ରହିବାକୁ ମନା କରିଦେଲେ କାରଣ ସେ ଅନୁଭବ କରିଥିଲେ ଯେ "ଅଜୟ ଘୋଷ ଏବଂ ଏସ୍.ଏ. ଡାଙ୍ଗେ ରଣଦିଭେ ଏବଂ ତାଙ୍କ ଅନୁଗତମାନଙ୍କ ପ୍ରତି ଓ ତାଙ୍କ ମାର୍ଗ ପ୍ରତି ଯାହା କରିବାକୁ ଯାଉଛନ୍ତି ଯାହା ରଣଦିଭେ ତାଙ୍କ ପ୍ରତି ଓ ଅନ୍ୟମାନଙ୍କ ପ୍ରତି କରିଥିଲେ ।"

ଯଦିଓ ରଣଦିଭେଙ୍କ ଦ୍ୱାରା କରାଯାଇଥିବା ଅପମାନ, ଖରାପ ବ୍ୟବହାର ଓ କୁସାରଟନା ତାଙ୍କ ମନ ଉପରେ ଏକ ଗଭୀର କ୍ଷତ ସୃଷ୍ଟି କରିଥିଲା, କିନ୍ତୁ ସେ ବି.ଟି. ରଣଦିଭେ ଓ ତାଙ୍କର ସହଯୋଗୀମାନଙ୍କ ପ୍ରତି ସେମାନଙ୍କୁ ପାର୍ଟିରୁ ବହିଷ୍କାର କରିବା ପରେ ପାର୍ଟି ଦ୍ୱାରା ହେଉଥିବା ବ୍ୟବହାର ପ୍ରତି ଖୁବ୍ ତୀବ୍ର ଭାବରେ ପ୍ରତିକ୍ରିୟା ପ୍ରକାଶ କଲେ । ସେ ପାର୍ଟି ମଧ୍ୟରେ ଚାଲିଥିବା ଗୋଷ୍ଠୀଗତ ବିଷୟକୁ ପାର୍ଟି ଏକତା ନାମରେ ଚାଳି ପକାଯାଉଥିଲା, ତାହାକୁ ଅନୁମୋଦନ କରି ନ ଥିଲେ ।

ନେତୃତ୍ୱ ପାଇଁ କ୍ଷମତା ସଂଘର୍ଷରେ ଜୋଷୀ ନିଜକୁ ମୁକ୍ତ କରିଥିଲେ, କିନ୍ତୁ ନିଜ ଢଙ୍ଗରେ ଆଦର୍ଶଗତ ଯୁଦ୍ଧ ଜାରୀ ରଖିଥିଲେ । ସେ ୧୯୫୧ର ଶେଷ ବେଳକୁ ତାଙ୍କ ଯୁବ ସମୟର ସ୍ଥାନ ଏଲାହାବାଦକୁ ଫେରି ଆସିଥିଲେ ଏବଂ ଇଣ୍ଡିଆ ଟୁଡ଼େ ନାମରେ ଗୋଟିଏ ମାସିକ ପତ୍ରିକା ଓ.ପି. ସାନଗଲଙ୍କ ସମ୍ପାଦକତ୍ୱରେ ଆରମ୍ଭରେ କଲେ । ସେ ଏହି ପତ୍ରିକା କାହିଁକି ପ୍ରକାଶ କରୁଛନ୍ତି, ତାହାର କାରଣ ମଧ୍ୟ ବୁଝାଇ କହିଲେ । ସେ ଅଭିଯୋଗ କରିଥିଲେ ଯେ ପାର୍ଟି ନେତୃତ୍ୱ ତାଙ୍କର ଦଲିଲକୁ ପ୍ରଚାରିତ କଲେ ନାହିଁ । ୧୯୫୧ରେ ପାର୍ଟି ମୁଖ୍ୟ କାର୍ଯ୍ୟାଳୟରେ ସେ ଏକ ସାକ୍ଷାତକାରରେ କହିଥିଲେ, "ମୁଁ ଲୋକମାନଙ୍କ ସମସ୍ୟା ସମ୍ପର୍କିତ ମୋର ଉପଦେଶାତ୍ମକ ମତ ଦେବାକୁ ଚାହେଁ । ସେମାନେ ଯେତେବେଳେ ଶୃଙ୍ଖଳା କଥା ଉଲ୍ଲେଖ କରନ୍ତି, ମୋର ରକ୍ତ ତାତି ଉଠେ । ମୁଁ ଏହା ସେ ପର୍ଯ୍ୟନ୍ତ କରି ଚାଲିବି ଯେ ପର୍ଯ୍ୟନ୍ତ ଏକ ଆଇନସମ୍ମତ ପାର୍ଟି ପତ୍ରିକା ପ୍ରକାଶିତ ହୋଇନାହିଁ । ଯଦି କେନ୍ଦ୍ର କହେ ଯେ ସେମାନେ ଛପା କାଗଜରେ ଏହାକୁ ପ୍ରକାଶ କରି ପାରିବେ ନାହିଁ, ମୁଁ ଏହାକୁ ସମସ୍ତ ମୁଖ୍ୟ ଭାଷାରେ ପ୍ରକାଶ କରିବାକୁ ପ୍ରସ୍ତୁତ, ଯଦି ସେମାନେ ମୋତେ ଏହା ପଚାରନ୍ତି । ଏବଂ ନିଜେ ବଞ୍ଚିବା ପାଇଁ, ମୁଁ ହୁଏତ ଜଣେ ସାମ୍ବାଦିକ ହୋଇପାରେ କିମ୍ବା ବିଶ୍ୱବିଦ୍ୟାଳୟକୁ ଯାଇପାରେ ଏବଂ ମୁଁ ପ୍ରଥମଟିକୁ ହିଁ ବାଛିବି ।" ସିଧା ସିଧା ଭାବରେ ପାର୍ଟିର ପ୍ରାମାଣିକ ମାର୍ଗକୁ ସମାଲୋଚନା ନ କରି, ସେ ଅତ୍ୟନ୍ତ ସାବଲୀଳ ଭାଷାରେ ସାଧାରଣ ପାର୍ଟି ସଭ୍ୟ ଓ ସମର୍ଥକମାନଙ୍କ ପାଇଁ ନିଜର ମତ ଉପସ୍ଥାପିତ କଲେ ଏବଂ ସେମାନଙ୍କୁ ଚିନ୍ତା କରିବା ପାଇଁ ଅତ୍ୟନ୍ତ ସମୃଦ୍ଧ ଖାଦ୍ୟ ଦେଲେ ।

୧୯୫୧ ନଭେମ୍ବର ସଂଖ୍ୟାରେ ସେ "ଭାରତ-ଚୀନ୍-ସୋଭିଏତ୍ ସହଯୋଗର ଗୁରୁତ୍ୱ ସମ୍ପର୍କରେ ଏକ ଲେଖା ଲେଖିଥିଲେ । ସେଥିରେ ସେ ଯୁକ୍ତି କରିଥିଲେ,

"ପରସ୍ପରର ସୁବିଧା ପାଇଁ ଭାରତ-ଚୀନ୍-ସୋଭିଏତ୍ ଆର୍ଥିକ ସହଯୋଗ ଆମର ଖାଦ୍ୟ ସମସ୍ୟା ସମାଧାନରେ ସାହାଯ୍ୟ କରିବ ଏବଂ ଆମ ଦେଶକୁ ଔଦ୍ୟୋଗୀକରଣ କରିବାରେ ସଂସାଧନ ଯୋଗାଇବ । ଭାରତର ବିକାଶ, ଏସିଆର ସ୍ୱାଧୀନତା ଏବଂ ବିଶ୍ୱଶାନ୍ତି ଭାରତ-ଚୀନ୍-ସୋଭିଏତ ସହଯୋଗ ଉପରେ ପ୍ରତିଷ୍ଠିତ । ଋଷ ବିପ୍ଳବର ୩୪ତମ ବାର୍ଷିକୀରେ ଚୀନ୍ ମୁକ୍ତି ସଂଗ୍ରାମର ୨ୟ ବାର୍ଷିକୀର ଏକମାସ ପରେ ଏବଂ ଆମର ମାଉଣ୍ଟବେଟେନ୍ ଖସଡ଼ାର ଚାରିବର୍ଷର ଅଭିଜ୍ଞତା ପରେ ଏହି ମାର୍ଗ ପାରମ୍ପରିକ ସାମ୍ରାଜ୍ୟବାଦୀ ବୁଦ୍ଧିଆଣୀ ଜାଲକୁ ଛିଣ୍ଡାଇ ଏକମାତ୍ର ବିକଳ୍ପ ଭାବେ ଛିଡ଼ା ହେବ ।"[୧୬]

ସର୍ବଭାରତୀୟ ସ୍ତରରେ କଂଗ୍ରେସର ନିଷ୍ପତ୍ତିମୂଳକ ନିର୍ବାଚନ ବିଜୟ ପରେ, ଜୋଷୀ କଂଗ୍ରେସ ଶାସନ ଓ ଏହାର ପ୍ରଭାବର ଅତ୍ୟନ୍ତ ଜଟିଳ ବିଶ୍ଳେଷଣ କରି ବାମ ଶକ୍ତିମାନଙ୍କୁ କଂଗ୍ରେସ ବିଜୟକୁ ନ୍ୟୂନ କରି ଦେଖିବା ଉଚିତ ନୁହେଁ ବୋଲି କହିଥିଲେ । ସେ ଇଣ୍ଡିଆ ଟୁଡ଼େ ଫେବୃୟାରୀ-ମାର୍ଚ୍ଚ ସଂଖ୍ୟାରେ ଲେଖିଥିଲେ,

"ପ୍ରତିପକ୍ଷକୁ ଦୁର୍ବଳ ଭାବରେ କଳ୍ପନା କରିବା ପ୍ରମାଣିତ ତଥ୍ୟ ଉପରେ ନିର୍ଭର କରେ ଏବଂ ଜଣାଶୁଣା ପାରିପାର୍ଶ୍ୱିକ ଅବସ୍ଥା କେବେହେଲେ ସଠିକ୍ ଆହ୍ୱାନ ଏବଂ ସଂଗ୍ରାମର ପ୍ରଣାଳୀ ଦେବାକୁ ସକ୍ଷମ ହୋଇପାରେନା । ଏହା ସ୍ୱୀକୃତି ଆବଶ୍ୟକ କରେ ଯେ ଏ ପର୍ଯ୍ୟନ୍ତ କଂଗ୍ରେସର ଲୋକମାନଙ୍କ ମଧ୍ୟରେ ଉତ୍ତମ ସ୍ଥିତି ରହିଛି । ତେବେ ଯାଇ ବାମ ଶକ୍ତି ଯେଉଁମାନେ କଂଗ୍ରେସଠାରୁ ମୁହଁ ଫେରାଉଛନ୍ତି ସେହି ଜନଗଣଙ୍କୁ ନିଜ ଆଡ଼କୁ ଆଣିବାକୁ ଯେଉଁ କାର୍ଯ୍ୟ କରିବା କଥା କରି ପାରିବେ । ଏହାକୁ ମଧ ସ୍ୱୀକୃତି ଦେବାକୁ ହେବ ଯେ ବ୍ରିଟିଶ୍ ଶାସକ ଶ୍ରେଣୀ ସେମାନଙ୍କର ଦୀର୍ଘ ଅନୁଭୂତି ଫଳରେ ପୁଞ୍ଜିବାଦ-ସାମ୍ରାଜ୍ୟବାଦ ମଧ୍ୟରେ ସବୁଠାରୁ ଅଧିକ ଅନୁଭୂତି ସମ୍ପନ୍ନ ପରିପକ୍ୱ ଓ ଧୂର୍ତ୍ତ ନେତୃତ୍ୱ ଥିଲେ । ଠିକ୍ ସେହିପରି କଂଗ୍ରେସ ନେତୃତ୍ୱ ସବୁଠାରୁ ଅଧିକ ଅନୁଭୂତି ସମ୍ପନ୍ନ ରାଜନୈତିକ ନେତୃତ୍ୱ ଯାହାକୁ ଉପନିବେଶବାଦୀ ବୁର୍ଜୁଆ ପ୍ରାଚ୍ୟ ଜରିଆରେ ସ୍ଥାପନ କରିଛି । ଏହି ନିର୍ବାଚନ ସମୟରେ, ଏହା ଦେଖାଯାଇଛି ଯେ ଏହା ବୁର୍ଜୁଆ ଜାତୀୟତାବାଦର ଆଦର୍ଶକୁ ବ୍ୟବହାର କରି, ସଫଳ ଭାବରେ ସ୍ୱାଧୀନତା ପ୍ରାପ୍ତିର ବକ୍ରାଗିରି କରି ସାମ୍ରାଜ୍ୟବାଦ ସହିତ ମୈତ୍ରୀ ବନ୍ଧନକୁ ବିଦେଶୀ ପୁଞ୍ଜି ନିକଟରେ ଘୋଡ଼ାଇ ପକାଇଛି ଓ ଏହାର ଜନବିରୋଧୀ ନୀତିକୁ ବିକ୍ରି କରିଛି । ଏହା ମଧ ଜାଣିବା ଆବଶ୍ୟକ ଯେ ଆମ ଦେଶ ଭିତରେ କଂଗ୍ରେସ ସବୁଠାରୁ

୧୬. ସିପିଆଇ ଫାଇଲ ନଂ ୧୯୫୧/୪୭, ଆର୍‌କାଇଭିସ୍ ଅଫ୍ କଣ୍ଟେମ୍ପରାରୀ ଇଣ୍ଡିଆନ୍ ହିଷ୍ଟ୍ରି, ଜେଏନ୍‌ୟୁ ।

ବ୍ୟାପକ ସଂଗଠିତ ରାଜନୈତିକ ଯନ୍ତ୍ର ଏବଂ ଲୋକମାନଙ୍କୁ ନିର୍ବାଚନ ବୁଥ୍‌କୁ ଟାଣିଆଣି ପାରେ । ଏହି ବାସ୍ତବ ଓ ଅପ୍ରୀତିକର କାରଣଗୁଡ଼ିକୁ ଜାଣିବାର ଆବଶ୍ୟକତା ରହିଛି ଯାହାକି ଶାସକ ଶ୍ରେଣୀର ଶକ୍ତିକୁ ଗଠନ କରିଛି ଯାହା ଫଳରେ ସଫଳତାର ସହିତ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ଜୟଲାଭ କରୁଛି ।"

ସେହି ଲେଖାରେ ସେ ଲେଖିଥିଲେ, "ନିର୍ବାଚନ ଅନୁଭୂତି ପ୍ରମାଣ କରିଛି ଯେ ଯେତେବେଳେ ଏକ ବ୍ୟାପକ ମିଳିତ ଫ୍ରଣ୍ଟ ଗଠିତ ହୋଇଛି ସେତେବେଳେ ପାର୍ଟି ବାହାରର ପ୍ରଗତିଶୀଳ ସ୍ୱନାମଧନ୍ୟ ବ୍ୟକ୍ତି ବିଶେଷଙ୍କୁ ସେଥିରେ ସାମିଲ କରଯାଇପାରିଛି ଏବଂ ଏହାପ୍ରତି ସମ୍ମାନ ଆଣିଛି । ତେଣୁ କ'ଣ ପ୍ରତିକ୍ରିୟାଶୀଳ ବ୍ୟକ୍ତିଗତ ସାଫଲ୍ୟ ସକାଶେ ଉଦ୍ୟମୀ ବ୍ୟକ୍ତିମାନଙ୍କୁ ଅଲଗା ରଖିବା ଦରକାର ଏବଂ କଂଗ୍ରେସ ବିରୋଧୀ ଜନ ଅସନ୍ତୋଷକୁ ନିଜ କାର୍ଯ୍ୟ ପାଇଁ ଅନ୍ୟକୁ ବ୍ୟବହାର କରିବାକୁ ଅନୁମତି ଦେବା ନାହିଁ ?"

ଗଣତାନ୍ତ୍ରିକ ଶକ୍ତିମାନଙ୍କର ମିଳିତ ଫ୍ରଣ୍ଟ ଗଠନ କରିବାର ଆବଶ୍ୟକତା ସମ୍ପର୍କରେ ଯୋଷୀଙ୍କର ରାଜନୈତିକ ଅବଧାରଣା ଥିଲା ଏବଂ ସେହି ଦୃଷ୍ଟିରୁ ସେ ସବୁବେଳେ ପାର୍ଟି ବାହାରେ ଥିବା ବାମ ଦୃଷ୍ଟି ସମ୍ପନ୍ନ ଲୋକମାନଙ୍କ ଉପରେ ଗୁରୁତ୍ୱଆରୋପ କରୁଥିଲେ । ସେହି ଲେଖାରେ ସେ କହିଥିଲେ, "ପାର୍ଟି ବାହାରେ ଥିବା ବାମ ମାର୍ଗର ଲୋକମାନେ ଆମ ଜାତୀୟ ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଉପାଦାନର ଅଂଶ ଏବଂ ସେମାନଙ୍କର ଉତ୍ସାହପୂର୍ଣ୍ଣ ସମର୍ଥନ ବନ୍ଧୁ ଭାବରେ ଗଣତାନ୍ତ୍ରିକ ଫ୍ରଣ୍ଟର ବିକାଶକୁ ଶକ୍ତିଶାଳୀ କରେ ।"

ଯୋଷୀ ଏହି ପତ୍ରିକାକୁ ବାମ ଗଣତାନ୍ତ୍ରିକ ଏକତାର ଅଭିବୃଦ୍ଧି ପାଇଁ ପ୍ରକାଶ କରିଥିଲେ ଏବଂ ସେ ଅନୁଭବ କରିଥିଲେ ଯେ କୌଣସି ପାର୍ଟି ଶୃଙ୍ଖଳାକୁ ଭଙ୍ଗ ନ କରି ସେ ଏହା କରୁଛନ୍ତି । କିନ୍ତୁ ଏଗାର ମାସ ପରେ ପାର୍ଟି ନେତୃତ୍ୱ ଏହି କାଗଜଟିକୁ ବନ୍ଦ କରିଦେବାକୁ କହିଲେ । ତତ୍‌ପଶ୍ଚାତ୍ ସେ କାନପୁର ଚାଲିଯାଇ ସେଠାରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଭାବରେ ଟ୍ରେଡ୍ ୟୁନିୟନ କାର୍ଯ୍ୟ କରିବାକୁ ଆରମ୍ଭ କଲେ । ସେଠାରେ ସେ ପାର୍ଟି ଶାଖାର ଜିଲ୍ଲା ସମ୍ପାଦକ ହେଲେ, ବିଭିନ୍ନ କାର୍ଯ୍ୟ ସଂଯୋଜନା କରିବାରେ ବ୍ୟସ୍ତ ରହିଲେ । ସେ କମ୍ୟୁନିଷ୍ଟ, ସୋସିଆଲିଷ୍ଟ ଅର୍ଜ୍ଜୁନ ଅରୋରାଙ୍କ ନେତୃତ୍ୱାଧୀନ ଅନେକ ଅଣ-କମ୍ୟୁନିଷ୍ଟଙ୍କୁ ନେଇ ସଂଯୁକ୍ତ ଟ୍ରେଡ୍ ୟୁନିୟନ ଗଠନ କଲେ । ପରବର୍ତ୍ତୀ ସମୟରେ ୮୪ ଦିନର ବୟନ ଶିଳ୍ପ ଶ୍ରମିକମାନଙ୍କର ଧର୍ମଘଟ ସଂଗଠିତ କରିବା ପାଇଁ ସେ ଭୂମିତଳ ହୋଇ ଧର୍ମଘଟ କମିଟିର କେନ୍ଦ୍ରମାନ ଗଠନ କଲେ ଯେଉଁ ଆନ୍ଦୋଳନର ପୁରୋଭାଗରେ ଅର୍ଜ୍ଜୁନ ଅରୋରା, ଏସ୍.ଏମ୍. ବାନାର୍ଜୀ ଓ ଅନ୍ୟମାନେ ରହିଥିଲେ । ଧର୍ମଘଟକୁ ସଫଳ କରିବା ପାଇଁ ଦୁଇଟି ସ୍ୱତନ୍ତ୍ର କ୍ରିୟାଶୀଳ ସଂଗଠନ-ଭୂମିତଳ ଓ ମୁକ୍ତ ଅତି ସୁସଂହତ ଭାବରେ କାମ କଲା ।

୧୯୫୨ ଡିସେମ୍ବର ମାସରେ ଯୋଷୀ ଭିଏନାରେ ଅନୁଷ୍ଠିତ ହେଉଥିବା ବିଶ୍ୱ ଶାନ୍ତି କଂଗ୍ରେସକୁ ଭାରତୀୟ ପ୍ରତିନିଧି ମଣ୍ଡଳୀର ସଭ୍ୟ ଭାବେ ପ୍ରଥମ ଥର ପାଇଁ ବିଦେଶ ଗଲେ ।

ସେଠାରୁ ଫେରିବା ବାଟରେ, ସେ ଲଣ୍ଡନ ଯାଇ ବ୍ରାଡ଼େଲ ଓ ଅନ୍ୟମାନଙ୍କୁ ବିଶେଷ କରି ଆର.ପି. ଦତ୍ତଙ୍କୁ ଭେଟିଲେ । ଆର.ପି.ଡି. ମନଯୋଗ ସହକାରେ ଜୋଷୀଙ୍କୁ ଶୁଣିଲେ ଏବଂ ତାଙ୍କୁ କହିଲେ,

> "ଆଦର୍ଶଗତ ଦୁର୍ବଳତା ସିପିଆଇର ସାମୂହିକ ସମସ୍ୟା । ଅଜୟର ହୁଏତ କିଛି ତ୍ରୁଟି ଥାଇପାରେ – କିନ୍ତୁ ସେ ବାସ୍ତବବାଦୀ, ସେ ପରିବର୍ତ୍ତନ ହେବେ ଓ ଅନ୍ୟମାନେ ମଧ୍ୟ ପରିବର୍ତ୍ତନ ହେବେ । ତୁମେ ଏଯାବତ୍ ମୁଣ୍ଡ ଉଠାଇ ଛିଡ଼ା ହୋଇଛ, ଆଉ ଟିକିଏ ଧୈର୍ଯ୍ୟ ରଖ ଏବଂ ତୁମର ମସ୍ତିଷ୍କକୁ ଆହୁରି ଉତ୍ତମଭାବେ ପ୍ରୟୋଗ କରିବାକୁ ଚେଷ୍ଟା କର । ଲେନିନ୍‌ଙ୍କର 'ଅନ୍ କମ୍ପରମାଇଜ' ପୁସ୍ତକଟି ପଢ଼ । ତୁମର ସାଥୀ କମ୍ରେଡ୍‌ମାନଙ୍କୁ ପରିଚାଳିତ କରିବା ପାଇଁ ଲେନିନ୍‌ଙ୍କର ବିଜ୍ଞତାରୁ ଶିଖ ।"[୧୭]

୧୯୫୫ରେ କମ୍ୟୁନିଷ୍ଟମାନେ ଆନ୍ଧ୍ରରେ ପରାସ୍ତ ହେଲେ ଏବଂ କଂଗ୍ରେସର ଆଭାଡ଼ି ଅଧିବେଶନରେ ଏହା 'ସମାଜବାଦୀ ଢାଞ୍ଚାରେ ସମାଜ' ଗ୍ରହଣ କଲା । ଏହା ଗୋଟିକ ପରେ ଗୋଟିଏ ଆସିଲା । କୃଷ୍ଚେଭ ଯୁଗ ମଧ୍ୟ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନରେ ପରିବର୍ତ୍ତନ ଆଣିଲା । ଏହିସବୁ ପ୍ରକ୍ରିୟା କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ପୁନଃ ଚିନ୍ତା କରିବାରେ ସାହାଯ୍ୟ କଲା । ଜଣେ ସଚ୍ଚା କମ୍ୟୁନିଷ୍ଟ ଭାବରେ ଜୋଷୀ ନିରବଦ୍ରଷ୍ଟା ହୋଇ ରହିଲେ ନାହିଁ । ସେ ଭାରତୀୟ କମ୍ୟୁନିଷ୍ଟମାନେ କି ପ୍ରକାର କୌଶଳ ରଣନୀତି କରିବେ ସେ ସମ୍ପର୍କରେ ଆଲୋଚନା ମଞ୍ଚ ପାଇଁ ପଦକ୍ଷେପ ନେଲେ । ଅଜୟ-ଡାଙ୍ଗେଙ୍କର ରାଜନୈତିକ ମାର୍ଗ ପ୍ରତି ସନ୍ତୁଷ୍ଟ ନ ଥିଲେ ଯାହାକୁ ସେ ରଣଦିଭେଙ୍କର ମାର୍ଗ ବୋଲି ଅନୁଭବ କରୁଥିଲେ – ଏତିକି ପାର୍ଥକ୍ୟ ଯେ ହିଂସାତ୍ମକ ଦୁଃସାହସିକ ପଦକ୍ଷେପ ନେବାକୁ ପରିତ୍ୟାଗ କରିଥିଲେ । ସେହି ପୁରୁଣା ନୀତି କଂଗ୍ରେସ ବିରୋଧୀ ବାମପନ୍ଥୀ ସଂସଦୀୟ ବିକଳ୍ପ ଭାବେ ଗ୍ରହଣ କରାଯାଇଥିଲା । ସେ ଅନୁଭବ କରିଥିଲେ ଯେ ତାହା ଅବ୍ୟବସ୍ଥିତ ଏବଂ ବାସ୍ତବତାକୁ ବୁଝିବାକୁ ଅକ୍ଷମ – ବିଶେଷକରି ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା, ବାନ୍ଦୁଂ ସମ୍ମିଳନୀ, ଚୀନ୍ ଓ ସୋଭିଏତ୍ ୟୁନିୟନ ସହିତ ବନ୍ଧୁତ୍ୱ ସ୍ଥାପନ ପାଇଁ ନେହେରୁଙ୍କର ଆଗ୍ରହ ଏବଂ ସେହି ଦେଶମାନଙ୍କରେ ଥିବା କମ୍ୟୁନିଷ୍ଟ ନେତୃତ୍ୱ ନେହେରୁଙ୍କ ନେତୃତ୍ୱରେ ଥିବା ଭାରତ ସହିତ ସମ୍ପର୍କ ପାଇଁ ଆଗ୍ରହ ।

ଜାତୀୟ ଦୃଶ୍ୟପଟ୍ଟ ଜୋଷୀଙ୍କ ମାର୍ଗର ଯଥାର୍ଥତା ପ୍ରମାଣ କରୁଥିବାବେଳେ ପାର୍ଟି ଔପଚାରିକ ଭାବରେ ଏହାକୁ ସ୍ୱୀକାର କଲାନାହିଁ । ଭାରତ କୋରିଆ ଓ ଭାରତ-ଚୀନ ଚୁକ୍ତିରେ ସକାରାତ୍ମକ ଭୂମିକା ପାଳନ କଲା । ପଞ୍ଚଶୀଳ ଚୁକ୍ତି ସ୍ୱାକ୍ଷର, ଯାହାକି ଗୋଷ୍ଠୀ ନିରପେକ୍ଷ ଆନ୍ଦୋଳନର ମୂଳଭିତ୍ତି ଏବଂ ନେହେରୁଙ୍କର ସୋଭିଏତ ଗସ୍ତ ଓ ବୁଲଗାନିନ୍-କୃଷ୍ଚେଭଙ୍କର ୧୯୫୫ରେ ଭାରତ ଆଗମନ ଶାନ୍ତି ଓ ପ୍ରଗତିର ନୂତନ ଯୁଗ ଆରମ୍ଭ ହେଲା ।

---

୧୭. ପି.ସି. ଜୋଷୀ, "ରଜନୀ ପାମେ ଦତ୍ତ ଆଣ୍ଡ୍ ଇଣ୍ଡିଆନ କମ୍ୟୁନିଷ୍ଟସ୍" ।

୧୯୫୬ ମସିହାରେ ପାଲଘାଟଠାରେ ପାର୍ଟି କଂଗ୍ରେସ ସିପିଆଇ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା । ନେହେରୁ ସରକାରର ପ୍ରଗତିଶୀଳ ବୈଦେଶିକ ନୀତି ଏବଂ ପି.ସି. ମହାନୋବିଶଙ୍କ ଦ୍ୱାରା ସାମ୍ରାଜ୍ୟବାଦ ବିରୋଧୀ ଓ ସାମନ୍ତବାଦ ବିରୋଧୀ ଭାରତୀୟ ଯୋଜନା ହେତୁ ଏହା ଭାରତୀୟ ସ୍ୱାଧୀନତାର ଗୁରୁତ୍ୱକୁ ବୁଝି ପାରିଲା । ଭାରତର ସ୍ୱାଧୀନତାକୁ ସ୍ୱୀକୃତି ଦେଇ ଏକ ବିକଳ୍ପ ମାର୍ଗ ପାଇଁ ପି.ସି. ଜୋଷୀଙ୍କ ଦ୍ୱାରା ଗୋଟିଏ ପ୍ରସ୍ତାବ ଆଗତ କରାଗଲା ଯାହାର ନୀତି ସାମ୍ରାଜ୍ୟବାଦୀ ବିରୋଧୀ ଜାତୀୟ ବୁର୍ଜୁଆ ସହିତ ଏକତା ଓ ସଂଗ୍ରାମ କରିବା । ପାର୍ଟି ଭିତରେ ଏହି ରାଜନୈତିକ ଗୋଷ୍ଠୀଭୁକ୍ତ ହେବାକୁ ଗ୍ରହଣ କରିବା ଥିଲା ମୁଖ୍ୟ ପରିବର୍ତ୍ତନ । ଜୋଷୀ ସେହି ଦିନମାନଙ୍କୁ ମନେ ପକାଇ ବ୍ୟଙ୍ଗୋକ୍ତି କରିଥିଲେ, "ସେ (ଅଜୟ ଘୋଷ) ସାଧାରଣ ସମ୍ପାଦକ ଶକ୍ତବନ୍ଧା ଦଉଡ଼ି ଉପରେ ଚାଲିବାରେ ପ୍ରାଧାନ୍ୟ ପାଇଥିଲେ ଯାହାର ଗୋଟିଏ ଖୁଣ୍ଟ ଧରିଥିଲେ ବି.ଟି. ରଣଦିଭେ ଓ ଅନ୍ୟ ଖୁଣ୍ଟଟି ମୋ ହାତରେ ଥିଲା ।" ଜୋଷୀଙ୍କ ମତରେ ପାଲଘାଟ କଂଗ୍ରେସ, ଔପଚାରିକ ଭାବରେ ପାର୍ଟିକୁ ସଠିକ୍ ଦିଗରେ ନେବାରେ ସୁସ୍ପଷ୍ଟ ହୋଇଥିଲା । କିନ୍ତୁ ଗୋଡ଼ ଦୁଇଟିକୁ ବାମ ସମ୍ପ୍ରଦାୟ ଜଞ୍ଜିରରେ ବାନ୍ଧି ଦେଇଥିଲା ।

ଜୋଷୀ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଥିବା ମତାଗ୍ରହୀମାନଙ୍କ ସହିତ ମିଳାମିଶା କରିପାରିଲେ ନାହିଁ । କାରଣ ସେ ଅନୁଭବ କରିଥିଲେ ଯେ ରାଷ୍ଟ୍ରଗଠନ ଦିଗରେ ଯେଉଁ ସକାରାତ୍ମକ ଗଠନମୂଳକ ଭୂମିକା ତୁଲାଇବା କଥା ଏଥିରେ ସେମାନେ ବାଧା ଦେଉଛନ୍ତି । ସରକାରଙ୍କର ଦୋଷ ଦୁର୍ବଳତାକୁ କେବଳ ସମାଲୋଚନା କରିବା ହେଉଛି ନିଷ୍କ୍ରିୟ ଭୂମିକା, ଗଠନମୂଳକ ନୁହେଁ । ସେ ଆହୁରି ମଧ୍ୟ ଅନୁଭବ କଲେ ଯେ ଏହି ଦୃଷ୍ଟିଭଙ୍ଗୀ କଂଗ୍ରେସ ମଧ୍ୟରେ କମ୍ୟୁନିଷ୍ଟ ବିରୋଧୀ ମନୋଭାବକୁ ବଞ୍ଚାଇ ରଖୁଛି ।

ପାଲଘାଟ କଂଗ୍ରେସ ଅଧିବେଶନ ପରେ ସର୍ବବୃହତ ଜାତୀୟ ଘଟଣା ଥିଲା ୧୯୫୭ ମସିହାର ସାଧାରଣ ନିର୍ବାଚନ ଏବଂ କେରଳରେ ପ୍ରଥମ କମ୍ୟୁନିଷ୍ଟ ସରକାର ଗଠନ । ଏହି ଘଟଣାକୁ ସ୍ୱାଗତ କରି, ଜୋଷୀ ଉନ୍ମୋଚିତ ହେଉଥିବା ରାଜନୈତିକ ବିକାଶର ଆତ୍ମ-ସମାଲୋଚନାମୂଳକ ବାସ୍ତବବାଦୀ ମୂଲ୍ୟାୟନ ଆଶା କରୁଥିଲେ । ତାହା ଘଟିଲା ନାହିଁ । ସରକାରଙ୍କୁ ଭାଙ୍ଗି ଦେବାପରେ ସେ ୧୯୬୮ରେ ଅନୁଶୋଚନା କରି ଲେଖିଥିଲେ, "ଆମର ସମ୍ପ୍ରଦାୟଭିତ୍ତିକ ବିଚାର ପ୍ରତିକ୍ରିୟାଶୀଳ ଆକ୍ରମଣରୁ କେରଳ ସରକାରଙ୍କୁ ରକ୍ଷାକରି ପାରିଲା ନାହିଁ ।"

ଦକ୍ଷିଣପନ୍ଥୀ ଶକ୍ତିମାନଙ୍କର ଉତ୍ଥାନ ରାଷ୍ଟ୍ରଗଠନରେ କମ୍ୟୁନିଷ୍ଟମାନଙ୍କର ନକରାତ୍ମକ ଦୃଷ୍ଟିଭଙ୍ଗୀର ପରୋକ୍ଷ ଫଳାଫଳ । ଅଳ୍ପ କେତେଜଣ କମ୍ୟୁନିଷ୍ଟଙ୍କ ମଧ୍ୟରୁ ସେ ଜଣେ ଥିଲେ ଯେ କି ପଚାଶ ଦଶକର ପ୍ରାରମ୍ଭରେ ଦକ୍ଷିଣପନ୍ଥୀ ପ୍ରତିକ୍ରିୟାର ବିପଦକୁ ଦୂରଦୃଷ୍ଟିରେ ଦେଖିଥିଲେ । ନେହେରୁଙ୍କ ମୃତ୍ୟୁ ପରେ ଜୋଷୀ ଲେଖିଥିଲେ,

"ପଛକୁ ଚାହିଁଲେ ମୋତେ ଜଣାପଡ଼େ ଯେ ଆମର ଥିଲା ହତାଶାଜନିତ ଆତ୍ମଗର୍ବୀ ମନୋଭାବ, ଏକ ରାଜନୈତିକ ଭ୍ରାନ୍ତି ଯାହା ଦକ୍ଷିଣପନ୍ଥୀଙ୍କ ପାଇଁ ଈଶ୍ୱରଦତ୍ତ ଏବଂ

ସ୍ୱାଧୀନ ଭାରତରେ ଜାତୀୟ ଗଣତାନ୍ତ୍ରିକ ଶକ୍ତିକୁ ଭାଗ ଭାଗ କରିବାର ମାର୍ଗ ସୁଗମ ହେଲା।"[୧୮]

ଜୋଷୀ କେନ୍ଦ୍ରୀୟ କମିଟିକୁ ନିର୍ବାଚିତ ହେଲେ ଏବଂ ୧୯୫୮ ମସିହାରେ ପାର୍ଟିର କେନ୍ଦ୍ରୀୟ ମୁଖ୍ୟ କାର୍ଯ୍ୟାଳୟରେ କାର୍ଯ୍ୟ କରିବାକୁ ଦିଲ୍ଲୀ ଆସିଲେ । ନିଜର ବ୍ୟକ୍ତିଗତ ଟିପାଖାତାରେ ସେ ପରବର୍ତ୍ତୀ ସମୟରେ ଲେଖିଥିଲେ, "ମୋ ଜୀବନର ସବୁଠାରୁ ବଡ଼ ଭୁଲ୍ ମୁଁ କଲି ମୋର କେନ୍ଦ୍ରୀୟ କମିଟିକୁ ନିର୍ବାଚନ ହେବାପରେ, ମୁଁ ପାର୍ଟିର କେନ୍ଦ୍ରୀୟ କାର୍ଯ୍ୟାଳୟରେ ଉତ୍ତର ପ୍ରଦେଶରୁ ଆସି ରହି କାର୍ଯ୍ୟ କରିବାକୁ ରାଜି ହେଲି । ଉତ୍ତର ପ୍ରଦେଶରେ ମୁଁ ଗଣ ସଂଗଠନ ଗଢ଼ିବାରେ ସାହାଯ୍ୟ କରୁଥିଲି ଏବଂ ଜିଲ୍ଲା ଓ ଅଞ୍ଚଳର ନେତାମାନଙ୍କୁ ଶିକ୍ଷା ଦେଉଥିଲି ।" ସେ ପାର୍ଟି ପତ୍ରିକା 'ନିଉ ଏଜ୍' ସମ୍ପାଦନା କରିବାକୁ ଲାଗିଲେ ଯାହା ସେ ୧୯୬୨ ମସିହା ପର୍ଯ୍ୟନ୍ତ କରିଥିଲେ। ସେ ଦିଲ୍ଲୀରେ ଖୁସିରେ ନ ଥିଲେ । ଏକ ରାଜନୈତିକ ବନ୍ଦୀ ଭାବେ ନିଜକୁ ବିଚାର କରୁଥିଲେ ଏବଂ ବହୁ ସମୟରେ ଏପରି କଥା ଲେଖୁଥିଲେ ଯେଉଁଥିରେ ତାଙ୍କର ବିଶ୍ୱାସ ନ ଥିଲା । ସେ ପାର୍ଟି ଭିତରେ ଗୋଷ୍ଠୀ ଗଠନ ଓ ଅମଲାତନ୍ତ୍ରୀୟ ପଦ୍ଧତିର ସମାଲୋଚକ ଥିଲେ ।

ପି.ସି. ଜୋଷୀ ଥିଲେ ଅତ୍ୟନ୍ତ ଉନ୍ନତମାନର ସାମ୍ବାଦିକ । ସେ ନିଜର ରାଜନୈତିକ ଜୀବନ ଆନ୍ତର୍ଜାତୀୟ ଓ ଆଞ୍ଚଳିକ ଘଟଣା ସମ୍ପର୍କରେ ଲେଖିବାରୁ ଆରମ୍ଭ କରିଥିଲେ ଏବଂ ଏପରିକି ପାର୍ଟି ଅବୈଧ ଥିବାବେଳେ ବହୁଗୁଡ଼ିଏ ପତ୍ରିକା ପ୍ରକାଶ କରିଥିଲେ । ଏହା ମାଧ୍ୟମରେ ସେ ଲୋକମାନଙ୍କ ନିକଟରେ ପହଞ୍ଚି ପାରିଥିଲେ । 'ନିଉ ଏଜ୍'ର ସମ୍ପାଦକ ଥିବା ସମୟରେ, ସେ ବହୁସ୍ଥାନ ଭ୍ରମଣ କରି ତଥ୍ୟ ସଂଗ୍ରହ କରୁଥିଲେ ଏବଂ ଦେଶର ଚାରିଆଡ଼େ କ'ଣ ଘଟୁଛି, ତାହା ନିଜ ଆଖିରେ ଦେଖୁଥିଲେ । ଜବଲପୁର ଦଙ୍ଗା ସମ୍ପର୍କରେ ତାଙ୍କର ରିପୋର୍ଟ ନିଉ ଏଜ୍‌ର ମାର୍ଚ୍ଚ ୧୨, ୧୯୬୧ ସଂଖ୍ୟାରେ ମୁଖ୍ୟ ଲେଖା ଭାବରେ ପ୍ରକାଶିତ ହୋଇଥିଲା । ସେ ସେଥିରେ ଜନସଂଘୀ ବିପଦ ସମ୍ପର୍କରେ ଭବିଷ୍ୟତ ବାଣୀ ବ୍ୟକ୍ତ କରିଥିଲେ ଯାହା ଉପରେ ବାମଶକ୍ତିମାନେ କଂଗ୍ରେସ ବିରୋଧୀ ଯୁଗରେ ଆଦୌ ଗୁରୁତ୍ୱ ଆରୋପ କରିନଥିଲେ । ଜୋଷୀ ବ୍ୟକ୍ତିଗତ ଭାବରେ ସେହି ସ୍ଥାନକୁ ଯାଇ ପରିସ୍ଥିତିର ଅନୁଧ୍ୟାନ କରିଥିଲେ, ବିଭିନ୍ନ ବର୍ଗର ଲୋକମାନଙ୍କୁ ସାକ୍ଷାତ କରିଥିଲେ ଓ ବିଭିନ୍ନ ରାଜନୈତିକ ମତ ସଂଗ୍ରହ କରିଥିଲେ । ସେ ଦେଖିବାକୁ ପାଇଥିଲେ ଯେ ଏହି ଦଙ୍ଗାର ମୁଖ୍ୟ ସଂଗଠକ ଓ ଷଡ଼ଯନ୍ତକାରୀ ହେଉଛନ୍ତି ସାମ୍ପ୍ରଦାୟିକ ଶକ୍ତି, ବିଶେଷକରି ଜନସଂଘ, ଯେଉଁମାନେ ମୁସଲମାନମାନଙ୍କୁ ଅସହାୟ ଭାବରେ ଆଘାତ କରିଛନ୍ତି ଓ ପୁଲିସ ନିରବଦ୍ରଷ୍ଟା ହୋଇଛି । ସେ ଦେଖିବାକୁ ପାଇଥିଲେ ଯେ ଜନସଂଘର ହିନ୍ଦୀ ଦୈନିକ ଓ ଗୁଜବ

---

୧୮. ପି.ସି. ଜୋଷୀ, "ଦି ନେହେରୁ ଲେଗାସୀ, ଏ ସେଲ୍‌ଫ କ୍ରିଟିକାଲ କମ୍ୟୁନିଷ୍ଟ ଇଭାଲୁଏସନ୍", ମେନ୍‌ଷ୍ଟ୍ରିମ୍ ୨୯ ମେ, ୧୯୬୫।

ରଚନାକାରୀମାନେ ପ୍ରେସ୍ ଟ୍ରଷ୍ଟ ଅଫ୍ ଇଣ୍ଡିଆକୁ ଏତେ ମାତ୍ରାରେ ପ୍ରଭାବିତ କରିଛନ୍ତି ଯେ ପିଟିଆଇ ଏହି ଦଙ୍ଗା ସମ୍ପର୍କରେ ସମ୍ପୂର୍ଣ୍ଣ ମିଥ୍ୟା ତଥ୍ୟ ପରିବେଷଣ କରିଛି । ସେ ଏହି ଦଙ୍ଗାରୁ ଧର୍ମ ନିରପେକ୍ଷ ଶକ୍ତିମାନେ ଶିଖିବା ଉଚିତ ବୋଲି ଚାହିଁଛନ୍ତି । ସେ ଲେଖିଥିଲେ,

"ଏହିସବୁ ଘଟଣା ବୃଥାରେ ଯାଇ ନ ଥାନ୍ତା ଯଦି ଆମ ରାଷ୍ଟ୍ରଜୀବନର ସମସ୍ତ ଦେଶପ୍ରେମୀ ଓ ଧର୍ମ ନିରପେକ୍ଷ ଶକ୍ତି ଏହି ସତ୍ୟ ସିଦ୍ଧାନ୍ତରେ ପହଞ୍ଚିଥାନ୍ତେ ଯେ ମଧ୍ୟ ପ୍ରଦେଶର ଏହି ଦଙ୍ଗା ଜନସଂଘ ଆଗାମୀ ସାଧାରଣ ନିର୍ବାଚନକୁ ଆଖିରେ ରଖି ରାଜନୈତିକ ପୂର୍ବାଭ୍ୟାସ କରିଥିଲା ଏବଂ ଲୋକପ୍ରିୟତା ହାସଲ କରିବା ପାଇଁ ସଂଖ୍ୟାଧିକ ହିନ୍ଦୁମାନଙ୍କର ସୁରକ୍ଷାକାରୀ ଭାବରେ ଏବଂ ଅଳ୍ପ ସଂଖ୍ୟକ ମୁସଲମାନମାନେ ପାକିସ୍ତାନର ପଞ୍ଚମସ୍ତମ୍ଭ ଭାବରେ ବଦନାମ କରିବା ଉଦ୍ଦେଶ୍ୟରେ ଏହା ଥିଲା ସେମାନଙ୍କର ରାଜନୈତିକ କୌଶଳ ।"[୧୯]

ଚୀନ୍ ଭାରତ ଆକ୍ରମଣ କରିବା ପରେ ପାର୍ଟି ସାଙ୍ଘାତିକ ଆହ୍ୱାନର ସମ୍ମୁଖୀନ ହୋଇଥିଲା ଏବଂ ଚୀନ୍‌ର ସୈନ୍ୟମାନେ ବୋମଡ଼ିଲାଠାରେ ପହଞ୍ଚିଥିଲେ । ଏହା ନେହେରୁ ସରକାର ଉପରେ ଥିଲା ଶୋଚନୀୟ ଆଘାତ ଯେ କି ଚୀନ୍‌କୁ ସବୁଠାରୁ ନିକଟତମ ସହଯୋଗୀ ଭାବରେ ଗ୍ରହଣ କରିଥିଲା । ସେ ସମୟର ପ୍ରତିରକ୍ଷା ମନ୍ତ୍ରୀ କ୍ରିଷ୍ଣମେନନଙ୍କୁ ବାଧ୍ୟହୋଇ ଇସ୍ତଫା ଦେବାକୁ ହୋଇଥିଲା । ଚୀନ୍ ଆକ୍ରମଣକୁ ଗୋଟିଏ ଗୋଷ୍ଠୀ ଗ୍ରହଣ ନ କରିବା ଫଳରେ ପାର୍ଟି ଭିତରେ ମତ ପାର୍ଥକ୍ୟ ବହୁ ଉପରକୁ ଚାଲି ଯାଇଥିଲା । ଏହି ଆକ୍ରମଣ ପରେ ଚୀନ୍-ସୋଭିଏତ୍ ଦ୍ୱନ୍ଦ୍ୱ ପାର୍ଟିରେ ପ୍ରତିଫଳିତ ହେଲା ଏବଂ ପାର୍ଟି ଭିତରେ ଉତ୍ତେଜନା ବୃଦ୍ଧି ପାଇଲା ଯେତେବେଳେ ଚୀନ୍-ସମର୍ଥକମାନଙ୍କୁ ବନ୍ଦୀ କରାଗଲା । ଆଦର୍ଶଗତ ଦ୍ୱନ୍ଦ୍ୱ ପାର୍ଟି ଭିତରେ ସଦାସର୍ବଦା ଥିଲା । କିନ୍ତୁ ଚୀନ୍‌ର ଆକ୍ରମଣ ଆଭ୍ୟନ୍ତରୀଣ ପାର୍ଟି ଅବସ୍ଥାକୁ ଆହୁରି ଖରାପ ଆଡ଼କୁ ନେଇଗଲା ଏବଂ ଏକ ସମସ୍ୟା ସୃଷ୍ଟିକଲା । ଏହି ଘଟଣାରେ ବିବ୍ରତ ହୋଇ ଜୋଷୀ ନିରୀକ୍ଷଣ କରିଥିଲେ,

"ଏହି ଆକ୍ରମଣ ସ୍ପଷ୍ଟ ସୂଚାଇ ଦେଉଥିଲା ଯେ ବାମପନ୍ଥୀମାନେ ଚୀନ୍ ମତାଗ୍ରହୀତାମାନଙ୍କର ଆଦର୍ଶଗତ ଭାବେ ଅନୁରକ୍ତ ଏବଂ ରାଜନୈତିକ ଶିଷ୍ୟ ଯଦିଓ ପାର୍ଟିର ସଂଖ୍ୟାଧିକ ମିଳିତ ସଭ୍ୟମାନଙ୍କର ନିଜସ୍ୱ ମାର୍ଗ ଥିଲା, ଯଦିଓ ନିଜ ଦେଶରେ ଥିବା ସଂଖ୍ୟାଧିକ ଦେଶପ୍ରେମୀଙ୍କର ମତ ଭିନ୍ନ, ଯଦିଓ ସିପିଏସ୍‌ୟୁ (କମ୍ୟୁନିଷ୍ଟ ପାର୍ଟି ଅଫ୍ ସୋଭିଏତ୍ ୟୁନିୟନ) ନେତୃତ୍ୱରେ ପରିଚାଳିତ ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ମତ ଭିନ୍ନ ଏବଂ ଏହିପରି ଏକ ବାମଗୋଷ୍ଠୀ ପାର୍ଟିକୁ ଭିତରୁ ଭାଙ୍ଗିବା ବ୍ୟତୀତ ଅନ୍ୟ କିଛି କରିବେ ନାହିଁ ।"

---

୧୯. ନିଉ ଏଜ୍, ମାର୍ଚ୍ଚ ୧୨, ୧୯୬୧ ।

ସେ ଦେଖିଥିଲେ ଯେ "ଚୀନ୍ ଆକ୍ରମଣ ପ୍ରମାଣ କରିଦେଲା ଯେ ପାର୍ଟି ମଧ୍ୟରେ ଥିବା ସଂଖ୍ୟାଧିକ ନିଷ୍ପତ୍ତିମୂଳକ ବାମପନ୍ଥୀ ବିରୋଧୀ ନେତୃତ୍ୱ ବାସ୍ତବତା ଦୃଷ୍ଟିରୁ ଘଟଣାକୁ ବିଚାର କରୁଛନ୍ତି ଓ ବିଶୃଙ୍ଖଳ, ବିପଥଗାମୀ ଏବଂ ପ୍ରଭାବ ଶୂନ୍ୟ ।"[୧୦]

ପାର୍ଟି ମଧ୍ୟରେ ଥିବା ଉଗ୍ରପନ୍ଥୀ ଅଲଗା ହୋଇଯିବାର ଆଶଙ୍କା କରି 'ଡାଙ୍ଗେ ଚିଠି' ପ୍ରକାଶ କଲେ ଏହି ଆଶାରେ ଯେ ଡାଙ୍ଗେଙ୍କ ବିରୁଦ୍ଧରେ ଅଭିଯୋଗ ଯେ ସେ ହେଉଛନ୍ତି ବ୍ରିଟିଶ୍‌ମାନଙ୍କର ଦଲାଲ (ଏଜେଣ୍ଟ) ଏବଂ ଏହା ନେତୃତ୍ୱକୁ ହତୋତ୍ସାହିତ କରିଦେବ ଏବଂ ପାର୍ଟି ଭିତରେ ସେମାନେ ସେମାନଙ୍କର ପ୍ରଭାବ ବିସ୍ତାର କରିବାକୁ ସକ୍ଷମ ହେବେ । ଜୋଷୀଙ୍କ ମତରେ ଡାଙ୍ଗେ ସ୍ୱଇଚ୍ଛାରେ ଚେୟାରମ୍ୟାନ ପଦବୀରୁ ଓହ୍ଲାଇଯିବା ଦରକାର ଏବଂ ଏହା ବାମପନ୍ଥୀମାନଙ୍କୁ ନିରସ୍ତ କରିଦେବ । ଯାହାଫଳରେ ବାସ୍ତବ ଆଦର୍ଶଗତ ଯୁଦ୍ଧ ପାଇଁ ପଥ ପରିଷ୍କାର ହେବ । ଜୋଷୀଙ୍କ ଉପଦେଶକୁ କର୍ଣ୍ଣପାତ କରାଗଲା ନାହିଁ କାରଣ ବହୁସଂଖ୍ୟକ ନେତା ଗୋଷ୍ଠୀଗତ ଓ ଅମଲାତାନ୍ତ୍ରିକ ବିଚାର ରଖୁଥିଲେ । ସେମାନେ ଭାବୁଥିଲେ ଯେ ଏହାଦ୍ୱାରା ପାର୍ଟିରେ ବିଭାଜନ ହୋଇ ଯେଉଁ ଅନାବଶ୍ୟକ କ୍ଷୁଦ୍ର ଗୋଷ୍ଠୀ ସଂଗଠନ ଭିତରେ ଅଛନ୍ତି ସେମାନଙ୍କୁ ଦୂର କରାଯାଇପାରିବ । ଜୋଷୀ ଏ ପ୍ରକାର କାର୍ଯ୍ୟକୁ କେବଳ ନୈତିକ ଦୃଷ୍ଟିରୁ ନୁହେଁ ବରଂ ରାଜନୈତିକ କାରଣ ଯୋଗୁଁ ଅତ୍ୟନ୍ତ ଦୃଢ଼ଭାବେ ଓ ଉଚ୍ଚସ୍ୱରରେ ବିରୋଧ କଲେ । ସେ ଜାଣିଥିଲେ ଯେ ପାର୍ଟି ନେତୃତ୍ୱ ସଂଖ୍ୟାଧିକ ଥାଇପାରନ୍ତି, କିନ୍ତୁ ଚଳୁଥିବା ପାର୍ଟି କର୍ମୀମାନେ ୧୯୫୦ ମସିହାଠାରୁ ରାଜନୈତିକ ଭାବେ ଅପରିପକ୍ୱ ଏବଂ ସହଜାତ ଭାବେ କଂଗ୍ରେସ ବିରୋଧୀ । କାରଣ କଂଗ୍ରେସ ବିରୋଧୀ ମତାଦର୍ଶ ହେଉଛି କଂଗ୍ରେସ ସମସ୍ତ ସମସ୍ୟା ମୂଳରେ ରହିଥିବାରୁ ପାର୍ଟି ପତାକା ତଳେ ଲୋକମାନଙ୍କୁ ଏକାଠି କରିବା ସହଜ ଉପାୟ ହେବ । କିନ୍ତୁ ଯେତେବେଳେ ବହୁ ସଂଖ୍ୟାରେ ନେତା ପାର୍ଟି ପରିତ୍ୟାଗ କରିଗଲେ ସେମାନେ ରାଜନୈତିକ ଭାବେ ବାମଗୋଷ୍ଠୀ ନ ଥିଲେ ବରଂ ମୌଳିକ ଭାବେ ଥିଲେ ଡାଙ୍ଗେ ବିରୋଧୀ ।

ଏପ୍ରିଲ ୧୯୬୪ରେ ନୂଆ ଦିଲ୍ଲୀଠାରେ ସିପିଆଇର ଜାତୀୟ ପରିଷଦର ବୈଠକରୁ ଏକ କ୍ଷୁଦ୍ର ଗୋଷ୍ଠୀ ଉଠି ଚାଲିଯିବାରୁ ପାର୍ଟିରେ ବିଭାଜନ ଆସନ୍ନ ହୋଇଗଲା । ଏହି ଗୋଷ୍ଠୀ ଦ୍ୱାରା ଏହା ଔପଚାରିକତା ଲାଭ କଲା ଯେତେବେଳେ ସେମାନେ ସେହି ବର୍ଷ ଅକ୍ଟୋବର ମାସରେ କଲିକତାଠାରେ ଏକ ସମାନ୍ତରାଳ ପାର୍ଟି ଅଧିବେଶନ କଲେ । ଜାତୀୟ ପରିଷଦର ଅଧ୍ୟକ୍ଷ ଭାବେ ଡାଙ୍ଗେଙ୍କୁ ଜୋଷୀ ବିରୋଧ କଲେ କିନ୍ତୁ ଡିସେମ୍ବର ୧୯୬୪ ରେ ସିପିଆଇର ବମ୍ବେ ଅଧିବେଶନରେ ସେ ଏହି ଘଟଣାରେ ନିରପେକ୍ଷ ରହିଲେ । ଅଧିବେଶନରେ ଡାଙ୍ଗେଙ୍କର ସେହି ପଦବୀକୁ ପୁନଃନିର୍ବାଚନ ହେବାକୁ ବିରୋଧ କରି, ସେ ତାଙ୍କର ନାମକୁ ପାର୍ଟିର କାର୍ଯ୍ୟକାରୀ କମିଟି ଓ କେନ୍ଦ୍ରୀୟ ସମ୍ପାଦକ ମଣ୍ଡଳୀରୁ ପ୍ରତ୍ୟାହାର କରିନେଲେ ।

---

୧୦. ପି.ସି. ଜୋଷୀ, "ପ୍ଲି ଫର ଏ ପାର୍ଟି କଂଗ୍ରେସ ଉଇଥ୍ ପ୍ରପର ପ୍ରିପାରେସନ୍" - ନେସନାଲ୍ କାଉନସିଲ ମିଟିଂ ଅଫ୍ ଦି ସିପିଆଇ, ଜୁନ୍ ୨୬-ଜୁଲାଇ ୨, ୧୯୬୩।

ପାର୍ଟି ବିଭାଜନ ତାଙ୍କପାଇଁ ଅତ୍ୟନ୍ତ ଦୁଃଖଦାୟକ ଥିଲା । ସେ ତାଙ୍କର ବ୍ୟକ୍ତିଗତ ଟିପ୍ପଣୀରେ ଲେଖିଥିଲେ, "ଏହି ଅନୁଭୂତି ହୃଦୟବିଦାରକ, କାରଣ ମୁଁ ଅନୁଭବ କରିଥିଲି ଯେ ଆମେ ଅଚେତନ ଭାବରେ ଆମର ଚାଳିଶ ବର୍ଷର ମିଳିତ କାର୍ଯ୍ୟକୁ ଧ୍ୱଂସ କରୁଛୁ, ଯାହାକୁ ଆମେ ଜୀବନତମାମ ନିର୍ମାଣ କରିଥିଲୁ । ମୋର ହୃଦୟ ପୂର୍ବଠାରୁ ଅଧିକ କ୍ଷତାକ୍ତ ହୋଇଗଲା ।" ବମ୍ବେ କଂଗ୍ରେସ ପରେ, ତାଙ୍କୁ ସିପିଆଇ ନେତୃତ୍ୱ ପକ୍ଷରୁ ଯେତେ ପ୍ରରୋଚନା ଓ ଚାପ ଦିଆଗଲେ ମଧ୍ୟ ସେ ପାର୍ଟି ମୁଖ୍ୟ କାର୍ଯ୍ୟାଳୟରେ ରହି କାର୍ଯ୍ୟ କରିବାକୁ ମନା କରିଦେଲେ । ସେ ତାଙ୍କର ସଭ୍ୟପଦକୁ ଉତ୍ତର ପ୍ରଦେଶକୁ ବଦଳି କରିନେଲେ । ସେ ଖୁବ୍ ଗୁରୁତ୍ୱର ସହିତ ବିଚାର କଲେ ଯେ, ସେ କେଉଁଠାରେ ରହି କାର୍ଯ୍ୟ କରିବେ, ତାହା ତାଙ୍କର ପାର୍ଟି ଅଧିକାର । କିନ୍ତୁ ସେ ଉତ୍ତର ପ୍ରଦେଶ ପାର୍ଟି ନିମିତ୍ତ ଖୁବ୍ କମ୍ କାର୍ଯ୍ୟ କରିପାରିଲେ, କାରଣ ସେ ଘରେ ବିଛଣାରେ କିମ୍ବା ସ୍ୱାସ୍ଥ୍ୟ ନିବାସରେ ଥିଲେ । ଏହି ସମୟରେ ସେ ବହୁ କିଛି ପଢ଼ିଲେ ଏବଂ ବହୁ କଥା ଚିନ୍ତା କଲେ ଯାହା ସମୟାତୀତ ହୋଇଯାଇଥିଲା । ଏହି ସମୟରେ ସେ କମ୍ୟୁନିଷ୍ଟ ପାର୍ଟିର ଇତିହାସ ସମ୍ପର୍କରେ ଗବେଷଣା କରିବାକୁ ସ୍ଥିର କଲେ ।

ଯୋଶୀ ତାଙ୍କର ପାର୍ଟି ଜୀବନ ପ୍ରାରମ୍ଭରୁ ଅପରିଣତ ବାମପନ୍ଥୀ ବିରୁଦ୍ଧରେ ସଂଗ୍ରାମ କରିଥିଲେ । କିନ୍ତୁ ଚୀନ୍ ଆକ୍ରମଣ ପରେ ବହୁ ସଂଖ୍ୟକ କମ୍ୟୁନିଷ୍ଟ ସାଥୀମାନଙ୍କୁ ଡିଫେନ୍ସ ଅଫ୍ ଇଣ୍ଡିଆ ରୁଲ୍‌ରେ ଜେଲ୍‌ରେ ଅଟକ ରଖିବାକୁ ସେ ବିରୋଧ କରୁଥିଲେ ଏବଂ ସେମାନଙ୍କୁ ମୁକୁଳାଇବା ପାଇଁ ଚେଷ୍ଟା କରିଥିଲେ । କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଗୁଲଜାରିଲାଲ ନନ୍ଦା ଚୀନ୍ ଆକ୍ରମଣ ହେତୁ ଦେଶବ୍ୟାପୀ ବହୁ ସଂଖ୍ୟକ କମ୍ୟୁନିଷ୍ଟ ନେତା ଓ କର୍ମୀମାନଙ୍କୁ ବନ୍ଦୀ କରିଥିଲେ । ଯୋଶୀ ବିଚାର କରୁଥିଲେ ଯେ ସେମାନଙ୍କୁ ଅଟକ ରଖିବା ସଂସଦୀୟ ଗଣତନ୍ତ୍ରର ନୀତି ବିରୋଧୀ ଏବଂ ଭାରତୀୟ ସମ୍ବିଧାନର ବିରୁଦ୍ଧାଚରଣ କରୁଛି । ସେ ଯୁକ୍ତି କରିଥିଲେ,

> "ରାଜନୈତିକ ଔଚିତ୍ୟ ଓ ସର୍ବସାଧାରଣ ନୈତିକତା ଦୃଷ୍ଟିରୁ ଏହା କ'ଣ ଜଣେ ଗୃହମନ୍ତ୍ରୀଙ୍କ ନିକଟରେ ଅନ୍ୟ ରାଜନୈତିକ ଦଳର ସଭ୍ୟମାନଙ୍କୁ, ଯାହା ଏଯାବତ୍ ଅବୈଧ ଘୋଷଣା କରାଯାଇ ନାହିଁ, ଦେଶଦ୍ରୋହୀ କହିବା ଠିକ୍ କି ? ତଥାପି, ଯଦି ସେ ଅତ୍ୟନ୍ତ ରାଗ ଅବସ୍ଥାରେ ଏକଥା କହିଛନ୍ତି, ତେବେ ତାଙ୍କର ଅଭିଯୋଗ ନିର୍ବାଚନ ରାୟ ଦ୍ୱାରା ଖାରଜ ହୋଇଯିବା ପରେ ମଧ୍ୟ ଜଣେ ନୀତିନିଷ୍ଠ ରାଷ୍ଟ୍ରନାୟକ ଭାବରେ ସେ ନିଜ ମତରେ ଦୃଢ଼ ରହିବା ଉଚିତ ଥିଲା, କାରଣ ବାମ କମ୍ୟୁନିଷ୍ଟମାନଙ୍କର ଦେଶପ୍ରେମର ପ୍ରମାଣ ସିଦ୍ଧ ହୋଇଗଲା । ସେମାନେ କେବଳ ନିର୍ବାଚନରେ ସଫଳ ଭାବରେ ନିର୍ବାଚିତ ହେଲେନାହିଁ ବରଂ କେରଳ ବିଧାନସଭାରେ କଂଗ୍ରେସଠାରୁ ଅଧିକ ସଂଖ୍ୟାରେ ହୋଇ ସବୁଠାରୁ ଏକ ବୃହତ୍ତମ ଦଳ ହେଲେ ।"[୨୧]

---

୨୧. ପି.ସି. ଯୋଶୀ, "ଡେଞ୍ଜର ସିଗ୍ନାଲ ଫର ଡେମୋକ୍ରାସି", ମେନଷ୍ଟ୍ରିମ, ଅଗଷ୍ଟ ୧୫, ୧୯୬୫ ।

ଜୋଷୀଙ୍କର ରାଜନୀତି ପାର୍ଟି ପରିସୀମା ବାହାରକୁ ଚାଲିଯାଇଥିଲା । ସେ ଏକ ଦୁଷ୍ପ୍ରାପ୍ୟ ପ୍ରକୃତିର ଦେଶପ୍ରେମୀ ଥିଲେ ଯାହାଙ୍କର ବାସ୍ତବ ସ୍ଥିତି ସମ୍ପର୍କରେ ବ୍ୟାପକ ଦୃଷ୍ଟି ଥିଲା । ସେ ତାଙ୍କ ବିଚାରରେ ପ୍ରକୃତ ଶତ୍ରୁ ଚିହ୍ନିବାରେ ପରିଚ୍ଛନ୍ନ ଥିଲେ ଏବଂ ତାଙ୍କ ନିଜ ଭାଷାରେ "ରାଷ୍ଟ୍ରର ଅଭିଶାପ ।" ତାଙ୍କ ନିକଟରେ, ଦକ୍ଷିଣପନ୍ଥୀମାନଙ୍କର ପ୍ରସ୍ତୁତି ହେଉଛି ମୁଖ୍ୟ ଶତ୍ରୁ ଏବଂ ଏ ଦୃଷ୍ଟିରୁ ସେ କୌଣସି ବାଛବିଚାର ନ କରି ସିପିଆଇ (ଏମ୍)କୁ ସମାଲୋଚନା କରୁଥିଲେ କାରଣ ସେମାନେ ବିପଦକୁ ଅନୁଭବ କରୁନଥିଲେ । ସେ ଉଲ୍ଲେଖ କରିଥିଲେ,

> "ସିପିଆଇ(ଏମ୍)ର ନେତୃତ୍ୱ, ବିଚାର ଅନୁସାରେ, ମୋତେ ସବୁଠାରୁ ଅଧିକ ଦକ୍ଷିଣ ବାମପନ୍ଥୀ ଯାହା ସେମାନେ କହୁଛନ୍ତି ଦକ୍ଷିଣ କମ୍ୟୁନିଷ୍ଟ ପାର୍ଟି ଏବଂ ଅତି ଦୟାର୍ଦ୍ର ଭାବରେ ମୋତେ ସର୍ବଠାରୁ ସଚ୍ଚୋଟ ଏବଂ ଦକ୍ଷିଣପନ୍ଥୀ ଭାବରେ ସ୍ଥିର ରହିଛନ୍ତି ବୋଲି ମଧ୍ୟ କହୁଛନ୍ତି । ମୁଁ ଅତ୍ୟନ୍ତ ବିନମ୍ରର ସହ ସେମାନଙ୍କୁ ପ୍ରତିଶ୍ରୁତି ଦେବାକୁ ଚାହେଁ ଯେ ଯଦି ଭାରତରେ ବାସ୍ତବରେ ବିପ୍ଳବର ପରିସ୍ଥିତି ଥା'ନ୍ତା ଓ ଯେଉଁ ବିପ୍ଳବ ହେଉର ନେତୃତ୍ୱରେ ସିପିଆଇ(ଏମ୍) ଥାଆନ୍ତା, ମୁଁ ଅନୁତାପ ନକରି ସେମାନଙ୍କର ଶିବିରାର୍ଥୀ ହୋଇଥାନ୍ତି । ମୁଁ ଭାରତର ବିପ୍ଳବ ପାଇଁ ହାତରେ ଲାଲ ପତାକା ଧରି ସଂଗ୍ରାମ କରି ମରିବାକୁ ପସନ୍ଦ କରିଥାନ୍ତି ଯଦିଓ ଆମର ସଂଯୁକ୍ତ ପାର୍ଟି ଜୀବନର ଉତ୍ଥାନ ଓ ପତନ ମଧ୍ୟରେ ଭଗ୍ନ ହୃଦୟରେ ଧୀରେ ଧୀରେ ମରୁଛି । ଏହାକୁ ବୁଝିବାକୁ ମୋର ବିଜ୍ଞତା ନାହିଁ । ଧୂଳିପୂର୍ଣ୍ଣ ଜାତୀୟ ଅଭିଲେଖାଗାରରେ ବସି ମୋର ସମୟ ଅତିବାହିତ କରିବା ସୁଖପ୍ରଦ କାର୍ଯ୍ୟ ନୁହେଁ ଏବଂ ପୁରୁଣା ପାର୍ଟି ଦସ୍ତାବିଜ ଖେଳେଇ କେଉଁଠାରେ ଆମେ ଭୁଲ୍ କଲୁ ଏବଂ କାହିଁକି ପାର୍ଟିକୁ ବିଭାଜନ କଲୁ ଯାହାକୁ ଆମେ ଆମର ଜୀବନର ରକ୍ତଦେଇ ଓ ସମସ୍ତ ତ୍ୟାଗକରି ଗଢ଼ିବାକୁ ସକ୍ଷମ ହୋଇଥିଲୁ, ତାହାକୁ ଆବିଷ୍କାର କରିବାକୁ ଚେଷ୍ଟା କରୁଛି ଏବଂ ଅନ୍ୟ କେହି ପାର୍ଟି ନାହିଁ ଯାହାର ଏତେ ଅଧିକ ନିଃସ୍ୱାର୍ଥ କର୍ମର ଉନ୍ନତ ପରମ୍ପରା ରହିଛି ।"[22]

ସେ ଉନ୍ମୋଚିତ ହେଉଥିବା ରାଜନୈତିକ ସମୀକରଣ ସମ୍ପର୍କରେ ବର୍ଣ୍ଣନା କରିଥିଲେ,

> "ବାମପନ୍ଥୀମାନେ ବିଭିନ୍ନ ରାଜନୈତିକ ଦଳମାନଙ୍କୁ ସେମାନଙ୍କର ମତ ପାର୍ଥକ୍ୟ ଥିବା ସତ୍ତ୍ୱେ ସେମାନଙ୍କୁ ଦୁଇଟି ଗୋଷ୍ଠୀରେ ବିଭକ୍ତ ହେବାକୁ ବାଧ କରିଥିଲେ । କାରଣ ଭାରତର ଭବିଷ୍ୟତ ବିକାଶ ପାଇଁ ବୁଝାମଣା ଭିତ୍ତିରେ ମୌଳିକଭାବେ ଆବଶ୍ୟକ ଓ ଅନାବଶ୍ୟକ ଏହି ଦୁଇଟି ମାର୍ଗ ଦରକାର । ବର୍ତ୍ତମାନ ପ୍ରଶ୍ନ ହେଉଛି ଅଗ୍ରଗାମୀ ମାର୍ଗ କ'ଣ, ସ୍ଥିତାବସ୍ଥା କିମ୍ବା ସାମାଜିକ ପରିବର୍ତ୍ତନ । ତାହାହିଁ ବର୍ତ୍ତମାନର ବିଷୟ ।"[23]

---

୨୨. ପି.ସି. ଜୋଷୀ, "ଇଣ୍ଡିଆନ୍ କନଷ୍ଟିଚ୍ୟୁସନ ଆଣ୍ଡ ସୋସିଆଲ ଚେଞ୍ଜ", ନିଉ ଥିଙ୍କ୍ କମ୍ୟୁନିଷ୍ଟ, ଫେବୃୟାରୀ , ୧୫, ୨୦୦୧ ।

୨୩. ତତ୍ରୈବ ।

"ଭାରତୀୟ କମ୍ୟୁନିଷ୍ଟମାନେ ଦକ୍ଷିଣପନ୍ଥୀ ଶକ୍ତିମାନଙ୍କର ପ୍ରକୃତ ସମାଲୋଚନାକୁ ଠିକ୍ ଭାବରେ ବୁଝିପାରିନଥିଲେ । ସେମାନେ ସମାଲୋଚନା କରିଥିଲେ ଯେ ଇନ୍ଦିରା ଗାନ୍ଧି ସମସ୍ତ କମ୍ୟୁନିଷ୍ଟମାନଙ୍କ ପ୍ରତି ଅତ୍ୟନ୍ତ ନିର୍ଭରଶୀଳ ଓ କୋହଳ, ଯାହା ଫଳରେ ଭାରତକୁ ସୋଭିଏତ୍ ୟୁନିୟନର ଉପଗ୍ରହ କରୁଛନ୍ତି । ରାଜନୈତିକ ଯୁଦ୍ଧ କ୍ଷେତ୍ରରେ ପ୍ରକୃତ ଶତ୍ରୁ କିଏ ତାହା ନିରୂପଣ କରିବା ଏବଂ ତା'ପରେ ସମ୍ଭାବିତ ସହଯୋଗୀ ମିତ୍ରମାନଙ୍କ ସହିତ ମିଳିତ ହେବା ପାଇଁ ରାଜନୈତିକ ବିଚକ୍ଷଣତା ଆବଶ୍ୟକ କରେ । ଇନ୍ଦିରା ଗାନ୍ଧି ସରକାରର ଚରିତ୍ର ଚିତ୍ରଣ ବାମପନ୍ଥୀମାନଙ୍କ ମଧ୍ୟରେ ମତପାର୍ଥକ୍ୟର କାରଣ ହୋଇଗଲା । ଯୋଶୀ ଯୁକ୍ତି କରିଥିଲେ,

> "ଇନ୍ଦିରା ଗାନ୍ଧି ସରକାରର ବୈଦେଶିକ ନୀତି ଯଥେଷ୍ଟ ପ୍ରମାଣ କରୁଥିଲା ଯେ, ଜାତୀୟ ବୁର୍ଜୁଆର ସାମ୍ରାଜ୍ୟବାଦୀ ବିରୋଧୀ ନୀତି ଥିଲା ଏବଂ ଯେଉଁ ନୀତିକୁ କର୍ମଠ ଭାବରେ ସେ ପ୍ରତିନିଧିତ୍ୱ ଏବଂ ସେ ଦେଖିଥିଲେ ଓ ସ୍ୱୀକାର କରିଥିଲେ ଯେ ନବ୍ୟ ଉପନିବେଶର ବିପଦ ଏକ ଉଗ୍ର ଧମକ ଭାବରେ ଆମ ଦେଶ ଉପରେ ରହିବ ଯଦି ଦକ୍ଷିଣପନ୍ଥୀ ନେତୃତ୍ୱ ମଧ୍ୟଦେଇ ଦେଶ ଚାଲିବ ।"[୨୪]

ସିପିଆଇକୁ କଂଗ୍ରେସର ସୂକ୍ଷ୍ମ ଆବରଣ ଦ୍ୱାରା ଆଚ୍ଛାଦିତ ଏଜେଣ୍ଟ ଭାବରେ ବିଚାର କରାଯାଉଥିଲା । ବମ୍ବେ ଅଧିବେଶନର ନିଷ୍ପତ୍ତି ଅନୁସାରେ, ସିପିଆଇ ମୁସ୍‌ଲିମ ଲିଗ୍ ସହିତ କୌଣସି ପ୍ରକାର ସହଯୋଗକୁ ତ୍ୟାଗ କରିଥିଲା, କିନ୍ତୁ ଅନ୍ୟ ବିରୋଧୀ ଦଳମାନେ, ବିଶେଷ କରି ସିପିଏମ୍ କଂଗ୍ରେସ ବିରୋଧୀ ମେଣ୍ଟ ଗଠନର ଆବଶ୍ୟକତାକୁ ସମର୍ଥନ କରୁଥିଲେ । ୧୯୬୫ରେ କେରଳ ବିଧାନସଭା ନିର୍ବାଚନରେ ସିପିଏମ୍ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ଲାଭ କଲା ଯେତେବେଳେ କି ସିପିଆଇ ଏକ କ୍ଷୁଦ୍ର ଶକ୍ତିକୁ ହ୍ରାସ ପାଇଲା । ଏହି ଫଳାଫଳ ସିପିଆଇକୁ ଦୋହଲାଇ ଦେଇଥିଲା ଏବଂ ଏପରି ଏକ ସ୍ଥାନକୁ ଠେଲି ଦେଇଥିଲା ଯାହା ଫଳରେ ନିଜକୁ କଂଗ୍ରେସ ବିରୋଧୀ ଘୋଷଣା କରିଥିଲା । ଏଇଥିପାଇଁ ନିଜର କଂଗ୍ରେସ ବିରୋଧୀ ପରିଚୟ ପାଇଁ ଏହା ସଂଯୁକ୍ତ ବିଧାୟକ ଦଳ ସରକାର ଯେଉଁଥିରେ ଜନସଂଘ ଥିଲା ସେଥିରେ ରହିବାକୁ ନିଷ୍ପତ୍ତି ନେଇଥିଲା ।

ଯୋଶୀ ସ୍ୱଳ୍ପ ସମୟ ରାଜନୈତିକ ଲାଭ ପାଇଁ କୌଣସି ଅଣଧର୍ମ ନିରପେକ୍ଷ ଦଳ ସହିତ ବନ୍ଧୁତ୍ୱକୁ ବିରୋଧ କରୁଥିଲେ । ସେଥିପାଇଁ ସେ ସିପିଆଇ ପସନ୍ଦ ଜନସଂଘ ସମର୍ଥକ କାକା ସୁବାରାଓଙ୍କୁ ୧୯୬୭ ରାଷ୍ଟ୍ରପତି ନିର୍ବାଚନରେ ଗାନ୍ଧିବାଦୀ ଧର୍ମ ନିରପେକ୍ଷ ଜାକୀର ହୁସେନ୍‌ଙ୍କ ସ୍ଥାନରେ ସମର୍ଥନ କରିବାକୁ ରାଜି ହୋଇନଥିଲେ । କୌଣସି କଂଗ୍ରେସ ବିରୋଧୀ ଦଳ ସହିତ ହାତ ମିଳାଇବା ସମ୍ପର୍କରେ ଓ ଏପରିକି ୧୯୬୭ ନିର୍ବାଚନ ପରେ ବିଭିନ୍ନ ରାଜ୍ୟରେ ଜନସଂଘ ଥିବା ସଂଯୁକ୍ତ ବିଧାୟକ ଦଳ ମନ୍ତ୍ରୀମଣ୍ଡଳରେ ଯୋଗ ଦେବାରେ ସେ ଥିଲେ କଠୋର ସମାଲୋଚକ ।

---

୨୪. ତତ୍ରୈବ ।

ପାର୍ଟିର ରାଜନୈତିକ ମାର୍ଗ ଜାତୀୟ ଗଣତାନ୍ତ୍ରିକ ଫ୍ରଣ୍ଟରୁ ବିଚ୍ୟୁତି ହେବା କାରଣ ନେଇ ଜୋଷୀ ଥିଲେ ଚିନ୍ତିତ । ସେ ଦେଖିଥିଲେ ଯେ ସିପିଆଇ ଓ ସିପିଏମ୍ ଦ୍ୱାରା ନିଆଯାଇଥିବା ବାମପନ୍ଥୀ ପଦକ୍ଷେପ ସ୍ୱଳ୍ପ ସମୟର ରାଜନୈତିକ ଲାଭ ପାଇବା ପାଇଁ ଅତ୍ୟଧିକ ସୁବିଧାବାଦୀ ଓ ଲୋକପ୍ରିୟ । ଅପର ପକ୍ଷରେ ଜୋଷୀଙ୍କର ଥିଲା ବ୍ୟାପକ ସମୟର ଦୃଷ୍ଟିଭଙ୍ଗୀ । ତାଙ୍କ ନିକଟରେ ଦକ୍ଷିଣପନ୍ଥୀ ପ୍ରତିକ୍ରିୟା ବାସ୍ତବ ବିପଦ ସୃଷ୍ଟି କରେ କାରଣ ତାହା ତାଙ୍କ ବିଚାରରେ ଥିଲା ପ୍ରଥମ ଓ ପ୍ରଧାନ ଶତ୍ରୁ ଏବଂ ସେମାନଙ୍କ ସହିତ କୌଣସି ପ୍ରକାର ସମଝୋତା ହେଉଛି ରାଜନୈତିକ ସୁବିଧାବାଦ ।

କିନ୍ତୁ ପାର୍ଟିରେ ସେ ହୋଇଯାଇଥିଲେ ଏକଘରିଆ। ୧୯୬୮ ରେ ପାର୍ଟିର ପାଟନା କଂଗ୍ରେସରେ ସେ ନିଜକୁ ଏକୁଟିଆ ଅନୁଭବ କଲେ । ତାଙ୍କର ଅସୁସ୍ଥତା ସତ୍ତ୍ୱେ ସେ ଉତ୍ତର ପ୍ରଦେଶରୁ ପ୍ରତିନିଧି ଭାବରେ ନିର୍ବାଚିତ ହୋଇ ଏହି ଅଧିବେଶନରେ ଯୋଗ ଦେଇଥିଲେ। ତାଙ୍କର ଦକ୍ଷିଣପନ୍ଥୀ ଫ୍ରଣ୍ଟ ବିରୋଧୀ ଯୁକ୍ତିର ୧୫ମିନିଟ୍ ଭାଷଣ ବହୁ ପ୍ରତିନିଧି ସାଥୀମାନଙ୍କୁ ପ୍ରଭାବିତ କରିଥିଲା । ଜାତୀୟ ପରିସ୍ଥିତି ସମ୍ପର୍କରେ ତାଙ୍କର ଅତ୍ୟନ୍ତ ସମାଲୋଚନାମୂଳକ ନିର୍ଦ୍ଧାରଣ ସାମ୍ପ୍ରଦାୟିକ ଶକ୍ତିମାନଙ୍କ ବିରୋଧରେ ସମସ୍ତ ପ୍ରକାର ଆକ୍ରମଣାତ୍ମକ କାର୍ଯ୍ୟ ଜରୁରୀ ଭାବରେ ଆରମ୍ଭ କରିବା ଉପରେ ଗୁରୁତ୍ୱ ଥିଲା ଏବଂ ମିଳିତ ମନ୍ତ୍ରୀମଣ୍ଡଳରେ ଥିବା ଜନସଂଘ ସହିତ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କକୁ ଛିନ୍ନ କରିବାର ଆହ୍ୱାନ ଥିଲା। ତାଙ୍କର ସଂଶୋଧନ ପ୍ରସ୍ତାବ ଉପରେ ୩୩ ପ୍ରତିଶତ ଭୋଟ ମିଳିଲା। ସେ କର୍କଶ ଟିପ୍ପଣୀ ଦେଇ ନିଜକୁ ନେତୃତ୍ୱଠାରୁ ଦୂରେଇ ଗଲେ । ତାଙ୍କୁ ପାର୍ଟିର ଜାତୀୟ ପରିଷଦରୁ ବାହାର କରିଦିଆଗଲା।

ପାଟନା କଂଗ୍ରେସ ପରେ ଆଉ ଏକ ଘଟଣା ଯାହା ଜୋଷୀଙ୍କୁ ଦୋହଲାଇ ଦେଇଥିଲା, ତାହା ଥିଲା ଚେକୋସ୍ଲୋଭାକିଆ ସମସ୍ୟା । ଚେକୋସ୍ଲୋଭାକିଆ କମ୍ୟୁନିଷ୍ଟ ପାର୍ଟିର ମୁଖ୍ୟ ଡବସେକ୍ ଏକ କାର୍ଯ୍ୟକ୍ରମ ସ୍ଥିର କଲେ ଯାହାର ଉଦ୍ଦେଶ୍ୟ ହେଲା ସମାଜବାଦ ବ୍ୟବସ୍ଥାର ଗଣତାନ୍ତ୍ରିକ ମୂଲ୍ୟବୋଧକୁ ଶକ୍ତିଶାଳୀ କରିବା ଏବଂ ଚେକୋସ୍ଲୋଭାକିଆ ଲୋକମାନଙ୍କ ଜୀବନରେ ମାର୍କ୍ସ ଓ ଲେନିନ୍‌ଙ୍କର ମାନବିକ ପ୍ରତିମୂର୍ତ୍ତି ଉପସ୍ଥାପିତ କରିବା ଯାହାଫଳରେ ଷ୍ଟାଲିନ ଉତ୍ତରାଧିକାରର ପରିସମାପ୍ତି ଘଟିବ । ଡବସେକ୍‌କୁ ବନ୍ଦୀ କରାଗଲା ଏବଂ ତାଙ୍କୁ ପ୍ରତିବିପ୍ଳବୀ ଭାବରେ ଚିତ୍ରଣ କରାଗଲା । ଏବଂ ସେହି ରାଷ୍ଟ୍ରକୁ ସୋଭିଏତ୍ ସୈନ୍ୟ ପ୍ରେରଣ କରାଗଲା। ଚେକୋସ୍ଲୋଭାକିଆରେ ସୋଭିଏତ୍ ହସ୍ତକ୍ଷେପକୁ ଜୋଷୀ ଅନୁମୋଦନ କରିପାରିଲେ ନାହିଁ ଏବଂ ଏହାକୁ "ବିଂଶ କଂଗ୍ରେସ (ସିପିଏସ୍‌ୟୁ) ସବୁଠାରୁ ବଡ଼ ଭୁଲ ବୋଲି ପରେ ବର୍ଣ୍ଣନା କଲେ।" ସେ ଅନୁଭବ କଲେ,

> "କମ୍ୟୁନିଷ୍ଟବାଦର ପ୍ରତିଷ୍ଠା ଓ ପାର୍ଥକ୍ୟ ଯାହା ବିନା କୌଣସି ପ୍ରଶ୍ନରେ ଏବଂ ପ୍ରମାଣିକ ଭାବରେ ଯାହା ସୋଭିଏତ୍ ୟୁନିୟନ ମଧ୍ୟରେ ମୂର୍ତ୍ତିମନ୍ତ ହୋଇଥିଲା ତାହା ବର୍ତ୍ତମାନ ବାଜିରେ । ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନକୁ ପ୍ରଥମେ ଚୀନ୍ ଗୁରୁତ୍ୱପୂର୍ଣ୍ଣ ବିଭାଜନ କଲା

ଯାହା କମ୍ୟୁନିଷ୍ଟବାଦର ସୁନାମରେ ଓ ମାନବଜାତିର ଭବିଷ୍ୟତ ଉପରେ କ୍ଷତି ପହଞ୍ଚାଇଲା ଏବଂ ସାମ୍ରାଜ୍ୟବାଦକୁ ନୂତନ ଜୀବନ ପ୍ରଦାନ କଲା ।"

ସେହି ଲେଖାରେ ସେ ଲେଖିଥିଲେ,

"ଆମର ପାର୍ଟି ନେତୃତ୍ୱ କ'ଣ ନୈତିକ ଦାୟିତ୍ୱ ନେଇ ସିପିଏସ୍‌ୟୁ ଓ ବିଶ୍ୱର ସମସ୍ତ କମ୍ୟୁନିଷ୍ଟ ପାର୍ଟିମାନଙ୍କର ଏକ ଜରୁରୀକାଳୀନ ପରାମର୍ଶ ଅଧିବେଶନ ଡାକିବାକୁ ଦାବି କରିପାରିବେ ଯାହାଫଳରେ ସୋଭିଏତ୍‌ର ସ୍ଥିତି ଓ ଚେକୋସ୍ଲୋଭାକିଆ ଉପରେ ତା'ର ଆକ୍ରମଣ ସମ୍ପର୍କରେ ଆଲୋଚନା କରାଯାଇ ପାରିବ ? କମ୍ୟୁନିଷ୍ଟବାଦ ପାଇଁ ଏହା ଜରୁରୀକାଳୀନ ଦାବି ।"[୨୫]

ଯୋଷୀ ଯେପରି ଭାବରେ ସୋଭିଏତ୍ ୟୁନିୟନ ତା'ର ଭୁଲ୍ ସୁଧାରି ପାରିଲା ସେଥିରେ ସନ୍ତୋଷ ପ୍ରକାଶ କରିଥିଲେ । ସେଥିରୁ ପରିଷ୍କାର ହୋଇଥିଲା ଯେ "ଲେନିନ୍‌ଙ୍କର ନୈତିକ ଦୃଷ୍ଟିଭଙ୍ଗୀ ଓ ଶିକ୍ଷା ମୃତ ନୁହେଁ ବରଂ ଜୀବନ୍ତ ଏବଂ ସୋଭିଏତ୍ ସମଷ୍ଟିଗତ ନେତୃତ୍ୱ ମଧ୍ୟରେ କ୍ରିୟାଶୀଳ ।" କିନ୍ତୁ ସେ ଅନୁଭବ କରିଥିଲେ ଯେ ଏହି ଭୁଲ୍ ସୋଭିଏତ୍ ୟୁନିୟନକୁ ସେହି ତୁଳୀରେ ଚିତ୍ରିତ କରିବ ଚୀନ୍‌କୁ ଯେପରି କରିଥିଲା ଏବଂ ପ୍ରଚାରିତ ହେବ ଯେ ସବୁ ବୃହତ ଶକ୍ତି, ତାହା ସାମ୍ରାଜ୍ୟବାଦୀ ଆମେରିକା ହେଉ କିମ୍ବା ସମାଜବାଦୀ ସୋଭିଏତ୍ ୟୁନିୟନ ଓ ଜନଗଣଙ୍କ ଚୀନ୍ ସବୁ ଏକାପରି ।"[୨୬] ଏବଂ ତାହାହିଁ ଥିଲା ଯୋଷୀଙ୍କର ସବୁଠାରୁ ବଡ଼ ଦୁଃଖ।

ଯଦିଓ ଯୋଷୀ ବହୁ ସମୟରେ ଅସୁସ୍ଥ ରହୁଥିଲେ, ସେ ପାର୍ଟିର ଉତ୍ତର ପ୍ରଦେଶ ରାଜ୍ୟ ପରିଷଦରେ ଥିଲେ ଏବଂ ତାହାହିଁ ତାଙ୍କୁ ଆଗାମୀ ଦିନର ଆସୁଥିବା ନେତୃତ୍ୱ ସହିତ ସମ୍ପର୍କ ସ୍ଥାପନରେ ସାହାଯ୍ୟ କରିଥିଲା । ଏହାପରେ ସେ ଅଲମୋଡ଼ା ନୈନିତାଲରେ ପାର୍ଟି ସଂଗଠନ ଗଢ଼ିବାକୁ ସ୍ଥିର କଲେ ଏବଂ ପାର୍ବତ୍ୟାଞ୍ଚଳକୁ ପରିଦର୍ଶନରେ ଗଲେ ଯାହା ତାଙ୍କ ପାଇଁ ଆମୋଦଦାୟକ ଥିଲା । ସେ ଏ ସମ୍ପର୍କରେ ଉଲ୍ଲେଖ କରିଛନ୍ତି, "ପ୍ରତି ସପ୍ତାହରେ ଏହି ଜିଲ୍ଲାମାନଙ୍କୁ ଯିବା ମୋତେ ସତେଜ ଓ ଜୀବନ୍ତ ରଖିଥିଲା ।" ସେ ପାର୍ବତ୍ୟାଞ୍ଚଳର ଦାରିଦ୍ର୍ୟ ଓ ପଛୁଆପଣ ସମ୍ପର୍କରେ କହିଲେ ଏବଂ ଉତ୍ତର ପ୍ରଦେଶର ଏହି ଅଞ୍ଚଳକୁ ମିଶାଇ ସ୍ୱୟଂଶାସିତ ଶାସନଗତ ଅଞ୍ଚଳ ଦାବି କଲେ, ଯାହାଫଳରେ ସ୍ଥାନୀୟ ଲୋକମାନଙ୍କ ହାତକୁ କ୍ଷମତା ଆସିବ। ସେ ମଧ୍ୟ ପାର୍ବତ୍ୟ ଅଞ୍ଚଳର ସମସ୍ୟା ସମାଧାନ ପାଇଁ ଏକ ଆନ୍ଦୋଳନ ସଂଗଠିତ କଲେ। ୧୯୭୦ ମସିହାରେ ତାଙ୍କର ଥିବା ଦୂରଦୃଷ୍ଟି ପ୍ରଣିଧାନଯୋଗ୍ୟ ।

"ଏହା ସ୍ପଷ୍ଟ ସୂଚୀତ କରୁଥିଲା ଯେ କେବଳ ସକ୍ରିୟ ରାଜନୈତିକ କର୍ମୀ ନୁହଁନ୍ତି,

---

୨୫. ପି.ସି.ଯୋଷୀ, "ଲେସନ୍ ଅଫ୍ ଦି ଚେକ୍ କ୍ରାଇସିସ୍", ନ୍ୟାସନାଲ ହେରାଲ୍ଡ, ସେପ୍ଟେମ୍ବର ୪, ୧୯୬୮ ।
୨୬. ତତ୍ରୈବ।

ବରଂ ବହୁ ସଂଖ୍ୟାରେ ପ୍ରାଥମିକ, ମାଧ୍ୟମିକ ଓ କଲେଜ ଶିକ୍ଷକ ଏହା ବ୍ୟତୀତ ପୂର୍ବତନ ସୈନିକ ଏବଂ ପୂର୍ବତନ ସେନା ଅଧିକାରୀ ଏହି ନୂତନ ଦାବି ପ୍ରତି ସମର୍ଥନ ଜ୍ଞାପନ କଲେ । ଏହା ନିର୍ଭରୋକ୍ତି ଦେଲା ଯେ ପରବର୍ତ୍ତୀ ପର୍ଯ୍ୟାୟ ଆନ୍ଦୋଳନ ଉତ୍ତର ପ୍ରଦେଶର ଆଠଗୋଟି ପାର୍ବତ୍ୟ ଜିଲ୍ଲାରେ ଅଭୂତପୂର୍ବ ଜନଜାଗରଣ ଆଣିବ ।"[୨୨]

ତାଙ୍କର ଗଭୀର ମମତା ଓ ବିଶେଷ ଭଲ ପାଇବା ଏହି ପାର୍ବତ୍ୟ ଅଞ୍ଚଳ ପ୍ରତି ଥିଲା ଯେଉଁଠାରେ ସେ ନିଜର ବାଲ୍ୟକାଳରେ ପଦଚାରଣା କରୁଥିଲେ ଏବଂ ସେ ବୃଦ୍ଧ ହେବା ପର୍ଯ୍ୟନ୍ତ ଏହି ପରିଚ୍ଛନ୍ନ ପ୍ରାକୃତିକ ପରିବେଶରେ ଚାଲୁଥିଲେ ଓ ବୁଲୁଥିଲେ ।

ତାଙ୍କର ଜଣେ ବାଲ୍ୟବନ୍ଧୁ, ଯେ କି ଆୟୁର୍ବେଦ କବିରାଜ ଥିଲେ, ଅଲମୋଡ଼ାଠାରୁ କିଛି ଦୂରରେ ତାଙ୍କ ପାଇଁ ଏକ ବିରାଟ ଜାଗା ଦେଇଥିଲେ । ତାଙ୍କର ଭାରତୀୟ ଗଣନାଟ୍ୟ ସଂଘର ସଭ୍ୟ ବଲରାଜ ସାହଣୀ, ବଲରାଜ-ଦମୟନ୍ତୀ ନ୍ୟାସ ପ୍ରତିଷ୍ଠା କରିଥିଲେ ଯାହା ଜୋଷୀଙ୍କର ଥିଲା ଶେଷ ସନ୍ତାନ- ହିମାଳୟର ସମାଜବାଦୀ ଆଶ୍ରମ ପାଇଁ ସେ ଅର୍ଥ ଦେଇଥିଲେ । ଏହା ବିନସାର ଜଙ୍ଗଲ ମଧ୍ୟରେ ଥିବା ପଡ଼ୋଶୀ ଅଞ୍ଚଳର ସିରକଟ୍ ଗ୍ରାମରେ ଅବସ୍ଥିତ । ଉତ୍ତର ପ୍ରଦେଶର ପୂର୍ବତନ ମୁଖ୍ୟମନ୍ତ୍ରୀ ଏଚ୍.ଏନ୍. ବହୁଗୁଣା ତାଙ୍କୁ ଏହି ପ୍ରଚେଷ୍ଟାରେ ଅଯାଚିତ ସାହାଯ୍ୟ କରିଥିଲେ । ସେଠାରେ ଗୋଟିଏ କୁଟୀର ନିର୍ମାଣ କରାଗଲା । ତାଙ୍କ ଜୀବନର ଶେଷ ପ୍ରକଳ୍ପ ପାର୍ବତ୍ୟ ଅଞ୍ଚଳରେ ରାଜନୈତିକ ପୁନଃ ଉତ୍ଥାନ ପାଇଁ ସମାଜବାଦୀ ଆଶ୍ରମ ପ୍ରତିଷ୍ଠା ଥିଲା ତାଙ୍କ ନିଜ ମୂଳସ୍ଥାନକୁ ଫେରିଆସିବା । ହିମାଳୟ ଅଞ୍ଚଳ ସହିତ ତାଙ୍କର ସମ୍ପର୍କ ଆଦୌ ଭାଙ୍ଗି ନ ଥିଲା ।

ତାଙ୍କ ଜୀବନର ଶେଷ ଦିନଗୁଡ଼ିକ ଉତ୍ତରାଖଣ୍ଡରେ, ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ ବାମପନ୍ଥୀ ଆନ୍ଦୋଳନ ଇତିହାସ ଲେଖିବା ଯୋଜନାରେ କଟିଥିଲା । ସେ କେ. ଦାମୋଦରନ୍‌ଙ୍କ ସହିତ ମିଶି ସମସ୍ତ ସମୟ ଭାରତରେ ବାମ ଆନ୍ଦୋଳନ ସମ୍ପର୍କରେ ଗବେଷଣା କରିବା ପାଇଁ ଏକ ଅଭିଲେଖାଗାର ନିର୍ମାଣ କରିବାରେ ନିୟୋଜିତ କରିଥିଲେ । ଜୋଷୀ ବହୁ ସମୟ ଜାତୀୟ ଅଭିଲେଖାଗାରରେ କଟାଉଥିଲେ ଏବଂ ତାଙ୍କର କାର୍ଯ୍ୟ ଭାରତରେ କମ୍ୟୁନିଷ୍ଟବାଦ, (୧୯୧୭-୪୭) ସମ୍ପୂର୍ଣ୍ଣ କରିବା ପାଇଁ ଦଶନ୍ଧି ଦଶନ୍ଧି ଧରି କଠୋର ପରିଶ୍ରମ କରୁଥିଲେ । ସେ ତଥ୍ୟ ସଂଗ୍ରହ କରୁଥିଲେ, ବର୍ଲିନ ଓ ମସ୍କୋକୁ ସେଥିପାଇଁ ଯାଉଥିଲେ ଏବଂ ଦେଶ ଭିତରେ ବୁଲି ପୁରୁଣା ସାଥୀମାନଙ୍କଠାରୁ ପୁରୁଣା ଫାଇଲ୍, ପ୍ରଚାର ପତ୍ର, ପତ୍ରିକା ସଂଗ୍ରହ କରୁଥିଲେ । ଜୋଷୀଙ୍କର ଇତିହାସ ସମ୍ପର୍କରେ ଗଭୀର ଅବବୋଧ ଥିଲା ଯାହା ଖୁବ୍ କମ୍ କମ୍ୟୁନିଷ୍ଟ ନେତାଙ୍କ ପାଖରେ ଥିଲା । ସେଇଥିପାଇଁ ସେ ଦୁଃଖପ୍ରକାଶ କରିଥିଲେ ଯେ ଯେପରି

୨୨. ପି.ସି. ଜୋଷୀ, "ଜଷ୍ଟ ଡିମାଣ୍ଡ ଅଫ୍ ଗଡ଼ୱାଲ ଆଣ୍ଡ୍ କୁମାଅନ", ମେନ୍‌ଷ୍ଟ୍ରିମ୍, ଡିସେମ୍ବର ୧୨, ୧୯୭୦ ।

ଭାବରେ ଅପର୍ଯ୍ୟାପ୍ତ ଦସ୍ତାବିଜ, ସମସ୍ତ ପୁରାତନ ଅଭିଲେଖାଗାର ପଦାର୍ଥ କୋମିନ୍‌ଟର୍ନର ପ୍ରଚାର ପୁସ୍ତିକା, ସିପିଆଇ ଓ ଅନ୍ୟାନ୍ୟ ବାମଦଳର ଅତୀତଠାରୁ ୧୯୫୦ ମସିହା ପର୍ଯ୍ୟନ୍ତ – ଯାହାସବୁ ଆନ୍ଦୋଳନର ଇତିହାସ ଗଠନ ପାଇଁ ଅତ୍ୟନ୍ତ ମୂଲ୍ୟବାନ ହୋଇଥାନ୍ତା, ତାହାକୁ ଦାୟିତ୍ୱରେ ଥିବା ସାଥୀମାନେ ୧୯୪୮ରୁ ୧୯୫୦ ମଧ୍ୟରେ ପାର୍ଟି ଶୃଙ୍ଖଳାକୁ କାର୍ଯ୍ୟକାରୀ କରିବା ପାଇଁ ନଷ୍ଟ କରିଦେଲେ । "ତେଣୁ ତଥ୍ୟ ସଂଗ୍ରହ କରିବାରେ ମୋର କାର୍ଯ୍ୟ ଅବର୍ଣ୍ଣନୀୟ ଭାବରେ କଷ୍ଟକର ଥିଲା", ଯୋଶୀ ଲେଖିଥିଲେ ।

ଯୋଶୀ ଆମ ସମୟର ସବୁଠାରୁ ଶ୍ରେଷ୍ଠ ଐତିହାସିକ ହୋଇଥାନ୍ତେ ଯଦି ରାଜନୀତିରେ ନ ଥାନ୍ତେ । ସେ ଅତ୍ୟନ୍ତ ଅସାମାନ୍ୟ ପୁସ୍ତକ ପ୍ରକାଶ କରିଥିଲେ – ଯାହାକୁ ଇତିହାସ ବୁଝିବାରେ ମାର୍ଗ ଉନ୍ମୋଚନ କୁହାଯାଇପାରିବ – ୧୮୫୭ ବିପ୍ଲବର ବିଶ୍ଲେଷଣ ଏବଂ ସେହି ବିପ୍ଳବ ସମ୍ପର୍କରେ ଲୋକଗୀତର ସଂଗ୍ରହ । ବିପ୍ଳବ ସମ୍ପର୍କରେ ମାର୍କ୍ସଙ୍କର ବିଚାର ଥିଲା ଏହା "ଜାତୀୟ ବିଦ୍ରୋହ ।" ବାସ୍ତବରେ ଯୋଶୀଙ୍କୁ ଏହା ପ୍ରଭାବିତ କରିଥିଲା । ସେ ବିପ୍ଳବର ଶତାବ୍ଦୀ ବର୍ଷରେ ଏକ ପ୍ରବନ୍ଧ ସଂକଳନ ପ୍ରକାଶିତ କରିଥିଲେ । ଏଥିରେ ବିଭିନ୍ନ ଭାରତୀୟ ଓ ବିଦେଶୀ ଲେଖକ, ସମାଲୋଚକ ଓ ଐତିହାସିକମାନଙ୍କର ଲେଖା ପ୍ରକାଶ ପାଇଥିଲା । ଯୋଶୀଙ୍କ ଦ୍ୱାରା ଏକ ମୁଖବନ୍ଧ ସହିତ ବ୍ୟାଖ୍ୟାମୂଳକ ଟିପ୍ପଣୀ ଥିଲା ନୂତନ ଇତିହାସ ରଚନା ।

> "ଯେତେସବୁ ବିବଦମାନ ପ୍ରସଙ୍ଗ ୧୮୫୭ ବିଦ୍ରୋହକୁ ଆଚ୍ଛାଦିତ କରି ରଖିଛି, ସେ ସବୁକୁ ମୁଁ ଆଲୋଚନାର ପରିସର ଭୁକ୍ତ କରିଛି । ମୁଁ ଜଣେ ପେସାଦାର ଐତିହାସିକ ନୁହେଁ; ତେଣୁ ମୋତେ ଦୀର୍ଘ ଉଦ୍ଧୃତି ମାଧ୍ୟମରେ ବକ୍ତବ୍ୟ ରଖିବାର ସେଇ ପୁରାତନ ଶୈଳୀଟିର ସାହାଯ୍ୟ ନେବାକୁ ପଡ଼ିଥିଲା । ଯଦି ମୁଁ ଆଧୁନିକ ଶୈଳୀର ପୃଷ୍ଠପୋଷକମାନଙ୍କୁ କ୍ଷୁଣ୍ଣ କରିଥାଏ ତେବେ ମୋ ଆତ୍ମରକ୍ଷା ପାଇଁ ଯୁବପିଢ଼ିର ପାଠକ ଗୋଷ୍ଠୀକୁ ମୁଁ ଏତିକି କହିବି ଯେ, ଏଥିରେ ମୁଁ ପ୍ରାଚୀନ ଗ୍ରନ୍ଥମାନଙ୍କରୁ ସଂଗୃହୀତ ବହୁ ବହୁ ଦୁଷ୍ପ୍ରାପ୍ୟ ଉପାଦେୟ ତଥ୍ୟାବଳୀ ଯୋଗାଇଦେଇଛି, ଯେଉଁଗୁଡ଼ିକ ସେମାନଙ୍କ ପାଇଁ ସହଜରେ ଉପଲବ୍ଧ ହେବନାହିଁ ।"

୧୮୫୭ ବିଦ୍ରୋହ ସମ୍ପର୍କରେ ଲୋକଗୀତି ସଂଗ୍ରହ ପ୍ରାରମ୍ଭରେ ଲୋକକଳା ରୂପ ସମ୍ପର୍କରେ ବିଶେଷ ପସନ୍ଦକୁ ସେ ଜନଗଣଙ୍କ ନିକଟକୁ ଯିବାପାଇଁ ପାରମ୍ପରିକ ମାଧ୍ୟମ ବୋଲି ବିଚାର କରିଛନ୍ତି । ତାଙ୍କର ହୃଦରୋଗ ସମସ୍ୟା ତାଙ୍କ ଜୀବନକୁ ସଂକ୍ଷିପ୍ତ କରିଦେଲା ନଚେତ୍ ଆମେ ଐତିହାସିକ ଯୋଶୀ ପରିପ୍ରକାଶ ହେବାର ଦେଖିଥାନ୍ତୁ ଯେକି ଏହିପରି ବହୁ ମୂଲ୍ୟବାନ ବିଶ୍ଲେଷଣାତ୍ମକ ଲେଖା ପ୍ରକାଶ କରିଥାନ୍ତେ ।

ଯୋଶୀ ଥିଲେ ଐତିହାସିକ, ସେ ଥିଲେ ସାମ୍ବାଦିକ, କିନ୍ତୁ ଏହା ବ୍ୟତୀତ ସେ ପ୍ରାଥମିକ ଭାବରେ ଲୋକମାନଙ୍କ ନିକଟରେ ଥିଲେ ଜଣେ ରାଜନୈତିକ ବ୍ୟକ୍ତି । ବାସ୍ତବରେ ସେ ଥିଲେ ଜନଗଣଙ୍କ ମଣିଷ । ଜାତୀୟ ଓ ଆନ୍ତର୍ଜାତୀୟ ଘଟଣା ତାଙ୍କ ମନରେ ଆଲୋଡ଼ନ

ସୃଷ୍ଟି କରୁଥିଲା। ତାଙ୍କ ନିକଟରେ ହେଉଥିବା ସାମ୍ପ୍ରଦାୟିକ ଦଙ୍ଗା କିମ୍ବା ଚୀନ୍ ଆକ୍ରମଣ କିମ୍ବା ଚେକୋସ୍ଲୋଭାକିଆ ସମସ୍ୟା କିମ୍ବା ବଙ୍ଗଳାଦେଶର ମୁକ୍ତି ସଂଗ୍ରାମ, ସେ ଘରେ ସର୍ବଦା ଅସ୍ଥିର ଅନୁଭବ କରୁଥିଲେ ଏବଂ ଯଦି ତୁରନ୍ତ ସେହି ନିର୍ଦ୍ଦିଷ୍ଟ ସ୍ଥାନକୁ ଯିବା ସମ୍ଭବ ହେଉନଥିଲା । ନିଜର ପ୍ରତିକ୍ରିୟାକୁ ଲେଖା ମାଧ୍ୟମରେ ପ୍ରକାଶ କରୁଥିଲେ । ସେ କେବେହେଲେ ନିରବ ଦ୍ରଷ୍ଟା ହୋଇ ରହୁନଥିଲେ। ୬୪ବର୍ଷ ବୟସରେ ଭଗ୍ନ ହୃଦୟ ସହିତ ଦାରୁଣ ସ୍ୱାସ୍ଥ୍ୟ ସମସ୍ୟା ସତ୍ତ୍ୱେ, ସେ ଉତ୍ତର ପୂର୍ବ ପାର୍ବତ୍ୟାଞ୍ଚଳ ବୁଲିଥିଲେ। ତ୍ରିପୁରା, ଦଉକି ସୀମା ଅତିକ୍ରମ କରି ସେ ପୂର୍ବପାକିସ୍ଥାନ ଅଞ୍ଚଳକୁ ଯାଇ ଲୋକମାନଙ୍କ ସହିତ ଛିଡ଼ା ହୋଇଥିଲେ ଏବଂ ସେମାନଙ୍କର ସମସ୍ୟା ସମୟରେ ସେମାନଙ୍କ ପାଇଁ କିଛି କରିବାକୁ ଚାହିଁଥିଲେ । ତାଙ୍କର ତତ୍ତ୍ୱାବଧନାରେ ପଶ୍ଚିମବଙ୍ଗରେ ଗୋଟିଏ କ୍ଷୁଦ୍ରଗୋଷ୍ଠୀ ଗଠନ କରାଗଲା । ମେଘାଳୟ ଓ ମଇମନ ସିଂହ ସୀମା ଅଞ୍ଚଳକୁ ଯିବାପାଇଁ ତାଙ୍କ ସହିତ ସୁନୀଲ ମୁନ୍‌ସୀ ଓ ପ୍ରସୁନ ମଜୁମଦାର ଓ ଅନ୍ୟମାନେ ଯାଇଥିଲେ । ଦକ୍ଷିଣ ଓ ପୂର୍ବ ମେଘାଳୟଠାରେ ବିଛାଡ଼ି ହୋଇ ପଡ଼ିଥିବା ବିବାଦମାନ ପାଣି ମଧଦେଇ ସେ ଡେଇଁ କୁଦି ସେଗୁଡ଼ିକୁ ଅତିକ୍ରମ କରିଥିଲେ ।

ସେହିଦିନଗୁଡ଼ିକର ସ୍ମୃତିଚାରଣ କରି ସୁନୀଲ ମୁନ୍‌ସୀ ଜୋଷୀଙ୍କର ଉଚ୍ଚ ପ୍ରଶଂସା କରିଛନ୍ତି । ଖରାପ ପାଗ, ବର୍ଷା ଋତୁ ଏବଂ ଭୟଙ୍କର ରାସ୍ତାର ପ୍ରତିକୂଳ କଠିନ ପରିସ୍ଥିତି ସତ୍ତ୍ୱେ ତାଙ୍କର ଖାପଖୁଆଇ ଚଳିବା ଓ ଧୈର୍ଯ୍ୟ ପାଇଁ ସେ ପ୍ରଶଂସନୀୟ । ତାଙ୍କୁ ମଧ୍ୟାହ୍ନ କିମ୍ବା ରାତ୍ର ଭୋଜନରେ ଦିଆଯାଉଥିବା ପେଜ ଗ୍ରହଣ କରିବାକୁ ସେ କେବେ ମନା କରିନାହାଁନ୍ତି। ଯେଉଁଠାରେ ଯାହା ମିଳିଲା ଖାଇବାକୁ, ଯେଉଁଠାରେ ସମ୍ଭବ ଏପରିକି ଦରକାର ହେଲେ କାରରେ ମଧ ଶୋଇବାକୁ ସେ ସଦାସର୍ବଦା ପ୍ରସ୍ତୁତ ଥିଲେ । ଛୋଟିଆ କାର୍ ମଧରେ ଗେଞ୍ଜି ହୋଇ, ଚାରିକଡ଼ରେ ମଶାମାନଙ୍କର ଭଣ ଭଣ ଶବ୍ଦ, ବସିବା ପାଇଁ ଅସହ୍ୟ ସତ୍ତ୍ୱେ ଜୋଷୀଙ୍କର ହସହସ ମୁହଁରେ କେବେହେଲେ ଅସୁବିଧା ଚିହ୍ନ ପ୍ରକାଶ ପାଉନି । ଦିଲ୍ଲୀକୁ ଫେରିଆସିବା ପରେ, ସେ ଅନେକଗୁଡ଼ିଏ ଲେଖା, "ବଙ୍ଗଳାଦେଶ ଯାତ୍ରା - ଗୋଟିଏ ରାଜନୈତିକ ତୀର୍ଥ ଯାତ୍ରା", ଲେଖିଥିଲେ । ସେ ଆରମ୍ଭ କରିଥିଲେ,

> "କୋଡ଼ିଏ ବର୍ଷ ବୟସରୁ କମ୍ୟୁନିଷ୍ଟ ପାର୍ଟିରେ ରହି ଜୀବନସାରା କାମ କରି ମୁଁ ବର୍ତ୍ତମାନ ଭାରତରେ କମ୍ୟୁନିଷ୍ଟବାଦ ସମ୍ପର୍କରେ ଗବେଷଣା କରୁଛି ଏବଂ ଭାରତୀୟ କମ୍ୟୁନିଷ୍ଟ ପାର୍ଟିରେ ରହି ମୋର ଦୈନନ୍ଦିନର ପାର୍ଟି କାର୍ଯ୍ୟ କରୁଛି । ଏକଦା ଆମର ରକ୍ତମାଂସ ଓ ବର୍ତ୍ତମାନ ଆମର ନିକଟତମ ପଡ଼ୋଶୀ ଏବଂ କାର୍ଯ୍ୟରେ ଆମର ସର୍ବଶ୍ରେଷ୍ଠ ଭାଇ ଭାବରେ ପ୍ରମାଣ କରୁଥିବା ବଙ୍ଗଳାଦେଶରେ ଯେତେବେଳେ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ଗଣତାନ୍ତ୍ରିକ ଆନ୍ଦୋଳନ ଜାଗ୍ରତ ହେଉଛି, ସେତେବେଳେ ମୁଁ ଗବେଷଣା ପାଇଁ ଜେଏନ୍‌ୟୁରେ ଥିବା ମୋର ଆରାମଦାୟକ କୋଠରିରେ ବସିବା ବାସ୍ତବରେ ମୋ ପାଇଁ ଅସମ୍ଭବ ହୋଇ ପଡୁଛି । ମୋର ଅସ୍ଥିରତା ଅସହ୍ୟ ହେଉଛି ଯେତେବେଳେ ମୁଁ ଅନୁଭବ କରୁଛି ଯେ ଆମର ଶାସକବର୍ଗ ନୂତନ ବୁଦ୍ଧିଦୀପ୍ତ

ଶବ୍ଦସମୂହ ଗଠନ କରି ଖୁସି ହେଉଛନ୍ତି ଏବଂ ଆମର ଜାତୀୟ ରାଜନୈତିକ ଦଳ କେବଳ ଗୁଣ୍ଡାଗିରି ଓ ବକ୍ତୃତା କରିବାରେ ଲିପ୍ତ, କିନ୍ତୁ ବଙ୍ଗଳାଦେଶ ଲୋକମାନଙ୍କ ପାଇଁ କିଛିହେଲେ କରୁନାହାନ୍ତି ।"[୨୮]

ସେହି ଦେଶ ସ୍ୱାଧୀନ ହେବାର ଦିନକ ପରେ ୧୯୭୧ ଡିସେମ୍ବର ୧୭, ଏକ ନୂତନ ରାଷ୍ଟ୍ର ହେବାରୁ "ସ୍ୱାଧୀନତା ଓ ବଙ୍ଗଳାଦେଶ ବିପ୍ଲବ" ସମ୍ପର୍କରେ ସେ ଭାଷଣ ଦେଇ କହିଥିଲେ,

"ଯେତେବେଳେ ଏହା ଏକ ଉଲ୍ଲସିତ ହେବାର ଘଟଣା, ଆମେ ବଡ଼ଭାଇ ଦୃଷ୍ଟିଭଙ୍ଗୀରେ କାମ କରିବା ନାହିଁ ଯାହା ଆମ ପକ୍ଷରେ ସ୍ୱାଭାବିକ, ଯେପରି ଅହଂବାଦୀ ବ୍ରାହ୍ମଣମାନେ କୃତଜ୍ଞତାରେ ନମ୍ର ହୋଇଥାନ୍ତି । ଚାଲ, ଆମେ ସେମାନଙ୍କର ଜାତୀୟ ଗର୍ବକୁ ଆକ୍ଷେପ କରିବା ନାହିଁ କାରଣ ତାହା ଆମର ଅକାର୍ଯ୍ୟ ହେବ । ବଙ୍ଗଳାଦେଶ ଆମକୁ ଭଲପାଇବ ଯଦି ଆମେ ସେମାନଙ୍କୁ ସମ୍ମାନ ଦିଅନ୍ତେ । ଯେଉଁ ମୁକ୍ତି ବାହିନୀ ଯୁଦ୍ଧ କଲେ, ତାହାର ଅବମୂଲ୍ୟାୟନ କରିବା ନାହିଁ । ସେମାନେ ସଫଳତା ପାଇଁ ପ୍ରସ୍ତୁତି କାର୍ଯ୍ୟ କରିଛନ୍ତି ଏବଂ ଭାରତୀୟ ସୈନିକ ଯିବାପାଇଁ ମାର୍ଗ ଉନ୍ମୋଚନ କରିଛନ୍ତି ।"

ସେ ହୁଏତ ଦଳଗତ ରାଜନୀତିରେ ନ ଥିଲେ, କିନ୍ତୁ ତାଙ୍କର ରାଜନୈତିକ ମନ ଲୋକମାନଙ୍କଠାରୁ କେବେହେଲେ ଦୂରେଇ ଯାଇ ନ ଥିଲା । ତାହା ହିଁ ହେଉଛନ୍ତି ପି.ସି. ଜୋଷୀ ।

୨୮. ନିଜ ଏଜ୍, ଭଲ୍ୟୁମ ୧, ନମ୍ବର ୧, ଇଣ୍ଡିପେଣ୍ଡେନ୍ସ ଡେ ନମ୍ବର, ୧୯୭୧ ।

## ୬

# ମାନବତାବାଦୀ

ଜୋଷୀ ଥିଲେ ବହୁମୁଖୀ ବ୍ୟକ୍ତିତ୍ୱ । ବାସ୍ତବରେ, ତାଙ୍କ ଭିତରେ ଅନେକ ଉଲ୍ଲେଖନୀୟ ଗୁଣ ଥିଲା । ସେ ଥିଲେ କମ୍ୟୁନିଷ୍ଟ, ସଂଗଠକ, ସ୍ୱାଧୀନତା ସଂଗ୍ରାମୀ, ଜାତୀୟତାବାଦୀ, ଲେଖକ, ସାମ୍ବାଦିକ, କଳା ସମାଲୋଚକ - ସବୁର ମିଶ୍ରଣରେ ଏକ, କିନ୍ତୁ ସର୍ବୋପରି ସେ ଅତି ମାତ୍ରାରେ ଦୟାଳୁ, ସହୃଦୟ, କୃପାଳୁ ଏବଂ ସମ୍ବେଦନଶୀଳ ବ୍ୟକ୍ତି ।

ପି.ସି. ଜୋଷୀ ଖୁବ୍ ସହଜରେ ଅନ୍ୟର ହୃଦୟକୁ ସ୍ପର୍ଶ କରି ପାରୁଥିଲେ ଯାହା ସମ୍ପର୍କରେ ସେ ଆସୁଥିଲେ । ବାସ୍ତବରେ, ସେ ପାର୍ଟି ସାଥୀମାନଙ୍କୁ ନିଜର ଭଉଣୀ ଓ ଭାଇ ବୋଲି ବିଚାର କରୁଥିଲେ ଏବଂ ସେମାନଙ୍କ ପ୍ରତି ତାଙ୍କର ଅତ୍ୟନ୍ତ ଅକୃତ୍ରିମ ପ୍ରେମ ଓ ଯତ୍ନ ହେତୁ ସେ ଏକ ସୁସଂହତ ପାର୍ଟି ପରିବାରର ମୁଖ୍ୟ ହୋଇପାରିଥିଲେ।* ଜୋଷୀ ବାଲ୍ୟାବସ୍ଥାରୁ ମା'ଛେଉଣ୍ଡ ହେବାର ଅନୁଭବି ଥିଲେ ଏବଂ ତାହାହିଁ ତାଙ୍କର ଗଭୀର ଅନୁଭବ ଥିଲା ଯାହାଫଳରେ ଯେଉଁମାନେ ତାଙ୍କୁ ଜାଣୁଥିଲେ ସେମାନଙ୍କ ପ୍ରତି ସ୍ନେହ ଓ ଶ୍ରଦ୍ଧା ବିଚ୍ଛୁରିତ କରୁଥିଲେ। ବାସ୍ତବରେ ତାଙ୍କ ପିଲାଦିନ ହିଁ ପ୍ରମାଣ କରୁଥିଲା କମ୍ୟୁନିଷ୍ଟ ପାର୍ଟିକୁ ଏକ ପରିବାର ଭାବରେ ଗଠନ କରିବାରେ ତାଙ୍କର ଆଗ୍ରହ ।

ଚାଳିଶ ଦଶକରେ ପାର୍ଟି ଭିତରେ, ସମସ୍ତେ ସମାନ ଥିଲେ ଏବଂ ସମସ୍ତଙ୍କ ପ୍ରତି ସମାନ ବ୍ୟବହାର କରାଯାଉଥିଲା । ଏକଦା ଜୋଷୀଙ୍କ ନିକଟରେ ଥିବା ଟାଇପିଷ୍ଟ ଓ ବ୍ୟକ୍ତିଗତ ସଚିବ ଈଶ୍ୱର ଭଟ୍ଟ ବମ୍ବେରେ ଥିବା ସିପିଆଇର ମୁଖ୍ୟ କାର୍ଯ୍ୟାଳୟ ରାଜଭବନରେ "ପାର୍ଟି ସେମାନଙ୍କର ସମସ୍ତ ଆବଶ୍ୟକତା ଓ ଖର୍ଚ୍ଚକୁ ପୂରଣ କରୁଥିଲା ଏବଂ ବ୍ୟକ୍ତିଗତ ଖର୍ଚ୍ଚ ପାଇଁ କେବଳ ମାସକୁ ଦଶଟଙ୍କା ଦେଉଥିଲା । ଏହା ଏକ ବିରାଟ ପ୍ରୟୋଗ ଥିଲା ।" ସମସ୍ତେ

---

* ଦୁର୍ଭାଗ୍ୟବଶତଃ ଯାହା ତାଙ୍କର ସକାରାତ୍ମକ ବୋଲି ବିଚାର କରାଯାଉଥିଲା, ପାର୍ଟିରେ ତାହା ସମାଲୋଚନାର ମାଧ୍ୟମ ହୋଇଥିଲା । ୧୯୪୮ ମସିହାରେ ତାଙ୍କର ଅନେକ ବିରୋଧୀ ଏହାକୁ ପ୍ରୟୋଗ କରି ତାଙ୍କୁ ଏକଲା କରିଦେଲେ, ଏହା କହି ଯେ ପାର୍ଟି ବନ୍ଧୁମାନଙ୍କର ପରିବାର ନୁହେଁ ବରଂ ଏକ ସଂଗ୍ରାମରତ ବିପ୍ଳବୀ ସଂଗଠନ।

ଶୃଙ୍ଖଳିତ ମନୋଭାବ ନେଇ କାର୍ଯ୍ୟ କରୁଥିଲେ । ଜୋଷୀଙ୍କର ନିୟନ୍ତ୍ରଣ କ୍ଷମତା ଥିଲା, କିନ୍ତୁ ତାହା ଏକଛତ୍ରବାଦ ପରି ନ ଥିଲା । ପାର୍ଟି ଭିତରେ ସମସ୍ତଙ୍କୁ ସମାନ ବ୍ୟବହାର କରାଯାଉଥିଲା। ସେହି ସମୟରେ ଯେଉଁମାନେ ତାଙ୍କ ସହିତ କାମ କରୁଥିଲେ ସେହି ସହଯୋଗୀମାନେ ରାଜଭବନର ଜୀବନ ସମ୍ପର୍କରେ ସମ୍ମାନର ସହ ମନେ ରଖିଥିଲେ।

ରାଜଭବନ କୋଠାରେ ଥିବା ପାର୍ଟି ରୋଷେଇ ଘର ଥିଲା ଏକ ବିରାଟ ଏକତ୍ର ଭୋଜନ କକ୍ଷ ଯେଉଁଠାରେ କେନ୍ଦ୍ରୀୟ ପ୍ରତିଷ୍ଠାନର ସାଥୀମାନେ ଭୋଜନ କରୁଥିଲେ । ମାଇ, ଦିଲସାଦ ଚାରୀଙ୍କର ମା (ଦିଦି) ଏବଂ ପି.ସୁନ୍ଦରାୟଙ୍କ ସ୍ତ୍ରୀ-ଲଲିଲା ସୁନ୍ଦରାୟ ରୋଷେଇ ବିଭାଗର ଦାୟିତ୍ୱରେ ଥିଲେ। ସାଥୀ ଗନୁ ଥିଲେ ମୁଖ୍ୟ ରୋଷେୟା । ଖାଦ୍ୟ ଥିଲା ନିରାମିଷ, କିନ୍ତୁ ରବିବାର ଦିନ ଯେଉଁମାନେ ଚାହୁଁଥିଲେ, ସେମାନଙ୍କୁ ଆମିଷ ଖାଦ୍ୟ ପରିବେଷଣ କରାଯାଉଥିଲା। ଖାଦ୍ୟ ସକାଳ ୧୦ଟାବେଳେ ଓ ସନ୍ଧ୍ୟା ୭ଟାବେଳେ ଏବଂ ଚା' ସକାଳ ୭ଟାବେଳେ ଓ ମଧ୍ୟାହ୍ନ ୨ଟାବେଳେ ପରିବେଷଣ ହେଉଥିଲା । ନିର୍ଦ୍ଦିଷ୍ଟ ସମୟରେ ଘଣ୍ଟା ବାଜିବା ପରେ, ସାଥୀମାନେ ଧାଡ଼ିବାନ୍ଧି ସେମାନଙ୍କର ଖାଦ୍ୟ ଓ ଚା' ନେବାପାଇଁ ଠିଆ ହେଉଥିଲେ । ଖାଇ ସାରିବା ପରେ ନିଜର ବାସନ ନିଜେ ସଫା କରୁଥିଲେ । ସୁବ୍ରତ ଲେଖିଛନ୍ତି :

> "ମୁଁ ଯେତେବେଳେ ପାର୍ଟି ମୁଖ୍ୟ କାର୍ଯ୍ୟାଳୟକୁ କାମ କରିବାକୁ ଆସିଲି, ଯାହା ମୋର ଦୃଷ୍ଟିକୁ ଆକର୍ଷିତ କରିଥିଲା, ତାହା ଥିଲା ନେତା ଓ କର୍ମୀମାନଙ୍କ ମଧ୍ୟରେ ଅତ୍ୟନ୍ତ ସୌହାର୍ଦ୍ଦପୂର୍ଣ୍ଣ ସମ୍ପର୍କ । ସାଥୀ ଜୋଷୀଙ୍କର ନିଜର ଜୀବନ ଏବଂ ବ୍ୟକ୍ତିଗତ ଆଚରଣ ଆମ ଏକତ୍ର ସହାବସ୍ଥାନ ଜୀବନ, ଏକ ଯୌଥ ପରିବାରର ପରିବେଶ ଥିଲା। ଆମେ ଏକାଠି ବସି ଖାଦ୍ୟ ଖାଉଥିଲୁ । ଆମେ ଆମ ନିଜର ବାସନ ଧୋଇ ଠିକଣା ସ୍ଥାନରେ ରଖୁଥିଲୁ ।"

ମାଇ ମାଙ୍ଗାଲୋରର ସାରସ୍ୱତ ମହିଳା । ସେ ହାଇଦ୍ରାବାଦର ଜଣେ ମୁସଲମାନ ସାଥୀଙ୍କୁ ବିବାହ କରିଥିଲେ । କ୍ୟାନ୍‌ସରରେ ତାଙ୍କର ମୃତ୍ୟୁ ହେଲା । ହସପିଟାଲକୁ ଯିବା ପର୍ଯ୍ୟନ୍ତ ସେ ପାର୍ଟି କମ୍ୟୁନ୍‌ରେ କାର୍ଯ୍ୟ କରୁଥିଲେ । ପାର୍ଟି କାର୍ଯ୍ୟ ଭାବରେ ସେ ରୋଷେଇଶାଳାରେ କାର୍ଯ୍ୟ କରିବାର ଦାୟିତ୍ୱ ନେଉଥିଲେ । ଈଶ୍ୱର ଦତ୍ତ ଗୋଟିଏ ଘଟଣାର ବର୍ଣ୍ଣନା କରିଥିଲେ ଯେଉଁଥିରୁ ଜୋଷୀ କିପରି ଭାବରେ କମ୍ୟୁନ୍‌କୁ ଏକ ଯୌଥ ପରିବାର ଭାବରେ ଗଠନ କରିଥିଲେ ଯେଉଁଠାରେ ପରସ୍ପର ସହିତ ଭାବପ୍ରବଣ ବନ୍ଧନ ରହିଥିଲା ତାହା ବୁଝାପଡ଼େ । ଶ୍ମଶାନରେ ମାଇଙ୍କର ଚିତା ନିଆଁ ନିକଟରେ ପି.ସି. ଜୋଷୀ ଭୋ ଭୋ କରି କାନ୍ଦିଥିଲେ; ଏହା ତାଙ୍କ ପାଇଁ ତାଙ୍କ ମା'ଙ୍କର ମୃତ୍ୟୁ ପରି ଥିଲା ।

ଏହା କ୍ରମଶଃ ଅନୁଭବ କରାଗଲା ଯେ ପାର୍ଟି ମୁଖ୍ୟ କାର୍ଯ୍ୟାଳୟର ଚାରିକାନ୍ଥ ମଧ୍ୟରେ ରହି, ସେଠାକାର ଅନ୍ତେବାସୀମାନେ ଲୋକମାନଙ୍କର ଜୀବନ, ସମସ୍ୟା, ଯନ୍ତ୍ରଣାଠାରୁ ଦୂରେଇ ଯାଉଛନ୍ତି । ଜୋଷୀଙ୍କର ଭୟ ହେଲା ଯେ ହୁଏତ ସାଥୀମାନେ ମାନବିକ ସ୍ପର୍ଶ ବିନା ଯନ୍ତ୍ର ପାଲଟି

ଯିବେ । ତେଣୁ ପରବର୍ତ୍ତୀ ସମୟରେ, ବହୁ ସାଥୀଙ୍କୁ ପାରିବାରିକ ଜୀବନ ବିତାଇବାକୁ ଉତ୍ସାହିତ କରାଗଲା, ଲୋକମାନଙ୍କ ଗହଣରେ ରହି ପାର୍ଟି କାର୍ଯ୍ୟ କରିବାକୁ କୁହାଗଲା ।

ଯୋଷୀ କେନ୍ଦ୍ରୀୟ ପାର୍ଟି କାର୍ଯ୍ୟାଳୟ ପରିଚାଳନା କରିବାରେ ଅତ୍ୟନ୍ତ ଯତ୍ନଶୀଳ ଥିଲେ। ତାଙ୍କର ନିକଟତମ ଓ ବିଶ୍ୱସ୍ତ ସହଯୋଗୀ ଯଥା ଗୋବିନ୍ଦ ବିଦ୍ୟାର୍ଥୀ, ଏମ୍.ସି. ଆଚାର୍ଯ୍ୟ ଏବଂ ଆର୍.କେ. ବୋଧା ରାଓ ସମସ୍ତ ବିଷୟକୁ ତନ୍ନ ତନ୍ନ କରି ଦେଖୁଥିଲେ ଯାହା ସାଥୀ ଘାଟେଙ୍କର ନିରୀକ୍ଷଣରେ ଥିଲା ।

> ଜଣେ ସମର୍ଥକଙ୍କ ଗୃହରେ ଏକ ଗୁପ୍ତ ଅସ୍ଥାୟୀ ଗୋଦାମ ଥିଲା ଯେଉଁଠାରେ ସମସ୍ତ ଅଭିଲେଖ ସମ୍ପର୍କୀୟ ଦସ୍ତାବିଜ ଓ ଫାଇଲ ରଖାଯାଉଥିଲା । ଯାହା କିଛି ଭବିଷ୍ୟତ ପାଇଁ ଆବଶ୍ୟକ ତାହାକୁ ରାଜଭବନରୁ ବାହାର କରି ନିଆଯାଉଥିଲା ଏଇଥିପାଇଁ ଯେ କାଳେ ତନଖି ସମୟରେ ପୁଲିସ ହାତରେ ପଡ଼ିଯିବ ।[୧]

ଯୋଷୀ ଥିଲେ କ୍ଲାନ୍ତିହୀନ ଶ୍ରମିକ ଯାହାଙ୍କର ଅତ୍ୟଧିକ ଶାରୀରିକ ଓ ମାନସିକ ଭାବରେ ସହ୍ୟ କରିବାର କ୍ଷମତା ଥିଲା । ବିଶ୍ରାମ କ'ଣ ସେ ଜାଣି ନ ଥିଲେ । ସେ ରାତ୍ରିର ବହୁସମୟ ପର୍ଯ୍ୟନ୍ତ କାର୍ଯ୍ୟ କରୁଥିଲେ, କେନ୍ଦ୍ରୀୟ ପାର୍ଟି ପତ୍ରିକା ପାଇଁ ଲେଖା ଲେଖୁଥିଲେ । କେନ୍ଦ୍ରୀୟ କମିଟି ସଭ୍ୟମାନଙ୍କ ପାଇଁ ଓ ପାର୍ଟି ନେତାଙ୍କ ପାଇଁ ନିର୍ଦ୍ଦେଶନାମା ଲେଖୁଥିଲେ । ସେଥିରେ ସଦାସର୍ବଦା ଏକ ମୁଖ୍ୟ ଟିପ୍ପଣୀ ଦେଇ ନିର୍ଦ୍ଦିଷ୍ଟ ଅଞ୍ଚଳର ନିର୍ଦ୍ଦିଷ୍ଟ ସ୍ଥିତିରେ କିପରି ତାକୁ କାର୍ଯ୍ୟକାରୀ କରାଯାଇପାରିବ, ତାହା ବର୍ଣ୍ଣନା କରାଯାଉଥିଲା । ଏଥିରୁ ସ୍ପଷ୍ଟ ବୁଝାପଡ଼େ ଯେ ସବୁ ଅଞ୍ଚଳ ସମ୍ପର୍କରେ ସେ ନଖଦର୍ପଣରେ ଦେଖିବା ପରି ଜାଣିଥିଲେ ଓ ଲୋକମାନଙ୍କୁ ବ୍ୟକ୍ତିଗତ ଭାବରେ ଜାଣିଥିଲେ । ସେ ମୁଖ୍ୟ ଟିପ୍ପଣୀ ଓ ଚିଠି ଲେଖିବା ପାଇଁ ବହୁ ସମୟ ବିତାଉଥିଲେ ଯାହାକୁ ସେ ଭାରତବ୍ୟାପୀ ସମସ୍ତ ସମର୍ଥକମାନଙ୍କୁ ପ୍ରେରଣ କରୁଥିଲେ । ପ୍ରତ୍ୟେକ ବ୍ୟକ୍ତିଗତ ପରିବାର ପ୍ରତି ପାର୍ଟି ସମ୍ପର୍କ ରକ୍ଷା କରୁଥିଲା ।

ଈଶ୍ୱର ଭଟ୍ଟ ମନେପକାଇ କହିଛନ୍ତି, ସେ ଥିଲେ ଅଯସସାଧ ଲେଖକ ।

> "ତାଙ୍କର ଥିଲା ଗଭୀର ଏକାଗ୍ରତା ଏବଂ ଥରେ ସେ ଲେଖିବାକୁ ଆରମ୍ଭ କଲେ ସେ ନିଜର ପରିବେଶ ପ୍ରତି ରହୁଥିଲେ ସମ୍ପୂର୍ଣ୍ଣ ବିସ୍ମୃତ । ଏହିପରି ଏକ ଅବସ୍ଥା ମଧ୍ୟରେ ଲେଖୁଥିବାବେଳେ, ସେ ହଠାତ୍ ଉଠିପଡ଼ିବେ, କୋଠରି କିମ୍ବା ବାରଣ୍ଡାର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ପଦଚାରଣା କରି ମୁଣ୍ଡକୁ ହଲାଉଥିବେ, ହାତକୁ ହଲାଉଥିବେ ଏବଂ ନିଜକୁ ନିଜେ କଥା ହେଉଥିବାର ଏବଂ ହଠାତ୍ ପୁନଶ୍ଚ ନିଜର ଚୌକି ପାଖକୁ ଫେରିଯାଇ ଆଦୌ ବନ୍ଦ ନହୋଇ ଲେଖିବାକୁ ଆରମ୍ଭ କରିଦେବେ । ନିଜ ହାତ

୧. ଗଣେଶ ଶୁକ୍ଳା, ପୃଷ୍ଠା -୯୩।

ପାପୁଲିରେ କଣ୍ଟା ଦୋକଟାକୁ ଆଙ୍ଗୁଠିରେ ମକଚି ତାହାକୁ ପାଟିରେ ପକାଇ ଚୋବାଇବେ।"

ପୁରାତନ ସାଥୀମାନେ ଯୋଷୀଙ୍କର ସରଳତା ଓ ଲୋକମାନଙ୍କୁ ଆକର୍ଷଣ କରିବାର ଚୁମ୍ବକୀୟ ଶକ୍ତି ସମ୍ପର୍କରେ କହନ୍ତି । ସତ୍ୟପାଲ ଡାଙ୍ଗ ଲେଖିଛନ୍ତି,

"ମୁଁ ପ୍ରଥମ ଥର ପାଇଁ ଯେତେବେଳେ ଯୋଷୀଙ୍କୁ ଦେଖିଲି, ମୁଁ ତାଙ୍କର ସରଳତା ଦେଖି ଅତ୍ୟନ୍ତ ଅଭିଭୂତ ହୋଇପଡ଼ିଲି । ତାଙ୍କର ପୋଷାକ ଥିଲା ହାତକଟା ଜାମା ଓ ପ୍ୟାଣ୍ଟ। ସେ ଏତେ ଶୀଘ୍ର କହୁଥିଲେ ଯେ ସେ ଯାହାକିଛି କହିଲେ ତାହା ବୁଝିବା ମୋ ପକ୍ଷରେ କଷ୍ଟକର ହେଲା । ତଥାପି ମୁଁ ତାଙ୍କ ନିକଟକୁ ଆକର୍ଷିତ ହେଲି ଏବଂ ମୋର ବିଚଳିତ ଅବସ୍ଥା କ୍ରମଶଃ ଦୂରେଇ ଗଲା ।"[୨]

ତାଙ୍କର ସରଳତା ଥିଲା ତାଙ୍କ ଚରିତ୍ରର ମୁଖ୍ୟ ଅଂଶ । ତାଙ୍କର ରୁଚିବୋଧ ତାଙ୍କ ମନର ସୃଷ୍ଟିଶୀଳତାକୁ ପ୍ରକାଶ କରୁଥିଲା । ସେ ଯେତେବେଳେ ଦିଲ୍ଲୀର ଆସଫ୍ ଅଲ୍ଲୀ ରୋଡ଼ରେ ଥିବା କ୍ଷୁଦ୍ର କୋଠରିରେ ରହୁଥିଲେ ସେ ଜଣେ ସରଦାରଜୀଙ୍କ ସାହାଯ୍ୟରେ କେତେକ ଆସବାବପତ୍ର ପ୍ରସ୍ତୁତ କରିଥିଲେ । ବାକ୍ସ ଥିବା ଗୋଟିଏ ଖଟ, ଗୋଟିଏ ଭଙ୍ଗାଯାଇ ପାରୁଥିବା ଟେବୁଲ ଏବଂ ତିନି ଚାରୋଟି ବାକ୍ସ । ସେ ଅର୍ଥନୀତିଜ୍ଞ କନିଷ୍ଠ ପି.ସି. ଯୋଷୀଙ୍କୁ ସେହି ସମୟରେ କହିଥିଲେ, "ଯେଉଁଠାରେ ସ୍ଥାନ ଅଭାବ ଅଛି, ସେଠାରେ ସ୍ଥାନ ସୃଷ୍ଟି କର ।" ତାହା ଯୋଷୀଙ୍କର ଦାର୍ଶନିକ ମନକୁ ବୁଝାଏ ।

ଯୋଷୀ କୌଣସି ପ୍ରକାର ବିଳାସକୁ ପ୍ରଶୟ ଦେଉନଥିଲେ । ଜୀବନର ଶେଷ ସମୟ ପର୍ଯ୍ୟନ୍ତ ସେ କେବଳ କନା ସଞ୍ଚୟ କରିବା ପାଇଁ କେବଳ ହାଫ୍ ପ୍ୟାଣ୍ଟ ଓ ହାଫ୍ ସାର୍ଟ ପିନ୍ଧୁଥିଲେ, ଶୀତଦିନେ ସେ ଗରମ ପୋଷାକ କିମ୍ବା ବେକ ପର୍ଯ୍ୟନ୍ତ ବନ୍ଦଥିବା କୋଟ୍ ପିନ୍ଧୁଥିଲେ।

ଯେଉଁମାନେ ତାଙ୍କ ସହିତ କାର୍ଯ୍ୟ କରୁଥିଲେ ସେ କିପରି ଭାବରେ ସ୍ପଷ୍ଟବାଦୀ ବ୍ୟକ୍ତି ଥିଲେ, ସେ ସମ୍ପର୍କରେ ଈଶ୍ୱର ଭଟ୍ଟ ସ୍ମୃତିଚାରଣରେ କହିଛନ୍ତି,

"ତାଙ୍କ ମନକୁ ଜାଣିବାର ମୋର ସୁଯୋଗ ଥିଲା । ସାଥୀ ଯୋଷୀଙ୍କ ସହିତ ମୋର ବିତାଇଥିବା ସମୟରେ ସେ କେବେହେଲେ କୌଣସି ପଲିଟବ୍ୟୁରୋ ସଦସ୍ୟଙ୍କୁ ଅନ୍ୟ ପଲିଟବ୍ୟୁରୋ ସଦସ୍ୟଙ୍କ ବିରୁଦ୍ଧରେ କହୁନଥିଲେ ଏବଂ ସେ ଅନ୍ୟମାନଙ୍କ ମତ ପ୍ରତି ସମ୍ମାନ ପ୍ରଦର୍ଶନ କରୁଥିଲେ।

ଯୋଷୀଙ୍କୁ କେହି ପ୍ରଭୁତ୍ୱ ପରାୟଣ କିମ୍ବା ସ୍ୱେଚ୍ଛାଚାରୀ ଶାସକ ବୋଲି କହିପାରିବ

---

୨. ସତ୍ୟପାଲ ଡାଙ୍ଗ।

ନାହିଁ। ବରଂ ଅନ୍ୟପ୍ରକାର ଅଭିଯୋଗ ହୁଏ ଯେ ସେ ଥିଲେ ଅତ୍ୟନ୍ତ ନମ୍ର ଏବଂ ଓଲଟା ଲଢ଼େଇ କରିପାରୁ ନ ଥିଲେ ଏବଂ ଆନ୍ତଃପାର୍ଟି ସଂଘର୍ଷରେ ସେ ପ୍ରତିରକ୍ଷା ଭୂମିକା ଗ୍ରହଣ କରୁଥିଲେ।"

ସେ ନିଜର ସହକର୍ମୀମାନଙ୍କ ନିକଟରେ ସହଜଲଭ୍ୟ, ପାଖାପାଖି ଓ ନମ୍ର ଥିଲେ। ପି.ସି. ଜୋଷୀଙ୍କର ଥିଲା ଅତ୍ୟଧିକ ପ୍ରତ୍ୟୁତ୍ପନ୍ନମତିତା ଓ ହାସ୍ୟରସ । ସେ ଶ୍ରଦ୍ଧାର ସହ ଯାହାକୁ ଭଲପାଉଥିଲେ ତାଙ୍କୁ ଚିଡ଼ାଉଥିଲେ ଏବଂ ପରେ ପରେ ଖୁବ୍ ଜୋର୍‌ରେ ହସୁଥିଲେ। ମୋହିତ ସେନ୍ ନିଜର ଆତ୍ମଜୀବନୀରେ ଏହିପରି ଏକ ହାଲୁକା ସମୟର ସ୍ମୃତିଚାରଣ କରି ଲେଖିଛନ୍ତି,

"ମୁଁ ପାଠାଗାର ମଧ୍ୟରେ ବସି କମ୍ୟୁନିଷ୍ଟ ମାନିଫେଷ୍ଟୋ ସହିତ ସଂଘର୍ଷ କରୁଥିଲି ଯେତେବେଳେ ମୋ କାନ୍ଧ ଉପରେ କାହାର ହାତର ସ୍ପର୍ଶ ପାଇଲି । ମୁଁ ଉପରକୁ ମୁଣ୍ଡ ଉଠାଇ ଚାହିଁଲି ଏବଂ ଦେଖିଲି ତଦାନୀନ୍ତନ ସିପିଆଇର ସାଧାରଣ ସମ୍ପାଦକ ପି.ସି. ଜୋଷୀଙ୍କର ହସକୁରା ଗୋଲ ମୁହଁ । ତାଙ୍କର ଚିରାଚରିତ ସାମାନ୍ୟ ଖନା ଢଙ୍ଗରେ କ'ଣ ପଢୁଛି ବୋଲି ପଚାରିଲେ। ଯେତେବେଳେ ମୁଁ କ'ଣ କରୁଛି ବୋଲି ତାଙ୍କୁ କହିଲି, ସେ ବୌଦ୍ଧିକ ଥଟ୍ଟାରେ କହିଲେ, ମୁଁ ତତ୍‌କ୍ଷଣାତ୍ ଏହି ପ୍ରଚେଷ୍ଟାକୁ ବନ୍ଦ କରିଦେବା ଉଚିତ । ସେ ପୁଣି କହିବାକୁ ଆରମ୍ଭ କଲେ, "ମାର୍କ୍ସ ଲେନିନ୍‌ଙ୍କ ପାଇଁ ଲେଖିଥିଲେ, ଲେନିନ୍ ଷ୍ଟାଲିନ୍‌ଙ୍କ ପାଇଁ ଲେଖିଥିଲେ, ଷ୍ଟାଲିନ୍ ମୋ ପାଇଁ ଲେଖିଲେ, ମୁଁ ତୁମ ପାଇଁ ଲେଖିଲି, ମୋତେ ପଢ଼।" "ତା'ପରେ ସେ ମୁଣ୍ଡକୁ ବୁଲେଇ ନେଇ ଖୁବ୍ ଜୋରରେ ହସିବାକୁ ଲାଗିଲେ।"[୩]

ବନ୍ଧୁମାନଙ୍କୁ ତାଙ୍କର ପତ୍ର ମଧ୍ୟ ପ୍ରତ୍ୟୁତ୍ପନ୍ନମତି ଥିଲା । ସେ ଏକ ଖୁସି ଚରିତ୍ରର ବ୍ୟକ୍ତି ଥିଲେ ଏବଂ ତାଙ୍କ ମୁହଁରେ ସଦାସର୍ବଦା ହସ ଲାଗି ରହିଥିଲା ।

ଗୋଟିଏ କଥା ସ୍ପଷ୍ଟ ଥିଲା ତାହା ହେଉଛି ଜୋଷୀ ନିମ୍ନସ୍ତର ଆଲୋଚନାରେ ସମ୍ପୃକ୍ତ ହେଉ ନଥିଲେ । ଯାହାଙ୍କ ସହିତ ତାଙ୍କର ମତୈକ୍ୟ ହେଉ ନ ଥିଲା ସେ ତାଙ୍କ ବିରୁଦ୍ଧରେ କୁତ୍ସା କିମ୍ବା ଅପବାଦ କରୁନଥିଲେ । ସେ ତାଙ୍କ ମତର ସଠିକତାକୁ ଗ୍ରହଣୀୟ କରାଇବା ପାଇଁ ସଂଗ୍ରାମ କରୁଥିଲେ, କିନ୍ତୁ କ୍ଷୁଦ୍ର ଅପବାଦ କରିବାରେ ବ୍ୟାପୃତ ହେଉନଥିଲେ ଯାହା ପ୍ରତ୍ୟେକ ରାଜନୈତିକ ଦଳମାନଙ୍କରେ ଅଧିକାଂଶ ସମୟରେ ଦେଖାଯାଏ।

ପାର୍ଟିର ସାଧାରଣ ସମ୍ପାଦକ ଥିବା ସମୟରେ ଜୋଷୀଙ୍କର ଯେ କି ବଙ୍ଗଳାର ବୈପ୍ଳବିକ ଆନ୍ଦୋଳନ ସମୟର କିମ୍ବଦନ୍ତୀ ପ୍ରସିଦ୍ଧ କଳ୍ପନା ଦତ୍ତଙ୍କ ସହିତ ସାକ୍ଷାତ ହୋଇଥିଲା । ସେ

୩. ମୋହିତ ସେନ୍, ପୃଷ୍ଠା-୨୦।

୧୯୩୦ ଚିଟ୍ଟାଗଙ୍ଗ ବିଦ୍ରୋହରେ ଅଂଶଗ୍ରହଣ କରିଥିଲେ ଏବଂ ଯାବତ୍ ଜୀବନ ଜେଲଦଣ୍ଡରେ ଦଣ୍ଡିତ ହୋଇଥିଲେ ଯେଉଁଥିପାଇଁ ତାଙ୍କର ଦୁଇଜଣ ସହଯୋଗୀ ସୂର୍ଯ୍ୟସେନ ଓ ତାରକେଶ୍ୱର ଦସ୍ତିଦାରଙ୍କୁ ଫାଶୀ ଦିଆଯାଇଥିଲା। ପରବର୍ତ୍ତୀ ସମୟରେ ଏକ ବ୍ୟାପକ ଗଣ ଆନ୍ଦୋଳନ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିବା ପାଇଁ ଆରମ୍ଭ ହେଲା । ରବୀନ୍ଦ୍ରନାଥ ଟାଗୋର ଏବଂ ସି.ଏଫ୍. ଆଣ୍ଡ୍ରୁଜ ତାଙ୍କ ପକ୍ଷରୁ ହସ୍ତକ୍ଷେପ କଲେ। ଯାହାଫଳରେ ତାଙ୍କର ଜେଲ୍‌ଦଣ୍ଡକୁ କମାଇ ଦିଆଗଲା। ସେ ମୁକ୍ତିଲାଭ କରିବା ପରେ ତାଙ୍କର ଚିଟ୍ଟାଗଙ୍ଗ ସହଯୋଗୀମାନେ କମ୍ୟୁନିଷ୍ଟ ପାର୍ଟି ପାଇଁ କାର୍ଯ୍ୟ କରୁଥିବାର ଦେଖିବାକୁ ପାଇଲେ। କମ୍ୟୁନିଷ୍ଟ ଆଦର୍ଶ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ସେ ମଧ ପାର୍ଟି ପ୍ରତି ଆକର୍ଷିତ ହେଲେ ଏବଂ ଚିଟ୍ଟାଗଙ୍ଗଠାରେ ପାର୍ଟିର ଜଣେ ସମର୍ପିତ କର୍ମୀ ହେଲେ। ୧୯୪୨ ଡିସେମ୍ବରରେ ଏକ ପାର୍ଟି ଶିକ୍ଷା ଶିବିରରେ ଯୋଗଦେବା ପାଇଁ ବମ୍ବେ ଗଲେ ଏବଂ ସେଠାରେ ଯୋଶୀଙ୍କ ସହିତ ସାକ୍ଷାତ ହେଲା । ୧୯୪୩, ଅଗଷ୍ଟ ୧୪ ତାରିଖରେ ସେମାନଙ୍କର ବିବାହ ହେଲା। ପାର୍ଟି ମୁଖ୍ୟ କାର୍ଯ୍ୟାଳୟରେ ବିବାହ ଅନୁଷ୍ଠିତ ହେଲା । କନ୍ୟାପକ୍ଷରୁ ମୁଜାଫର ଅହମ୍ମଦ ଓ ବରପକ୍ଷରୁ ବି.ଟି. ରଣଦିଭେ ଏହି ବିବାହରେ ଯୋଗ ଦେଇଥିଲେ। ଏହା ଥିଲା ଏକ ଐତିହାସିକ ବିବାହ ଯେଉଁଥିରେ ଦୁଇଟି ପାର୍ବତ୍ୟ ଅଞ୍ଚଳ ଚିଟ୍ଟାଗଙ୍ଗ ଓ ଅଲମୋଡ଼ାର ଦୁଇଜଣ ବିପ୍ଳବୀଙ୍କୁ ନିକଟତମ କରିଥିଲା। ଏହି ଉତ୍ସବ ଉପଲକ୍ଷେ ବିସ୍କୁଟ ଓ ଚା' ପରିବେଷଣ କରାଯାଇଥିଲା। ପାର୍ଟି ମୁଖ୍ୟ କାର୍ଯ୍ୟାଳୟର ଖୋଲା ଛାତ ଉପରେ ଏହି ବିବାହ ସମ୍ପାଦନ କରାଯାଇଥିଲା। ବିନୟ ରାୟ ଓ ପାର୍ଟି ସାଂସ୍କୃତିକ ସ୍କ୍ୱାର୍ଡ଼ର ସଭ୍ୟମାନେ କେତେଗୁଡ଼ିଏ ବୈପ୍ଳବିକ ସଙ୍ଗୀତ ଗାନ କରିଥିଲେ। ଯୋଶୀଙ୍କର କେହି ଜଣେ ଆତ୍ମୀୟ କଳ୍ପନାଙ୍କ ପାଇଁ ଏକ ଲାଲ ଶାଢ଼ି ପଠାଇଥିଲେ। ଏହା ପରବର୍ତ୍ତୀ ସମୟରେ ଖଣ୍ଡ ଖଣ୍ଡ କଟାଯାଇ କେତେଗୁଡ଼ିଏ ଲାଲ ପତାକା ତିଆରି ହୋଇଥିଲା।

ମହାନ୍ ବଙ୍ଗଳା ଦୁର୍ଭିକ୍ଷ ସମୟରେ (ଯାହା ସେହି ବର୍ଷ ଘଟିଥିଲା) କଳ୍ପନା ରିଲିଫ୍ କାର୍ଯ୍ୟ ସଂଗଠନ କରିବାରେ ନିଜକୁ ନିୟୋଜିତ କରିଥିଲେ ଏବଂ ମହିଳା ଆତ୍ମରକ୍ଷା ସମିତିର କର୍ମୀ ଭାବରେ ଚିଟ୍ଟାଗଙ୍ଗରେ ଖାଦ୍ୟ ବଣ୍ଟନ ପ୍ରଚାରରେ ଲାଗିଥିଲେ । ଉଭୟ ସ୍ୱାମୀ ଓ ସ୍ତ୍ରୀ ଏକାନ୍ତ ଭାବରେ ପାର୍ଟି କାର୍ଯ୍ୟରେ ଲାଗିଥିଲେ, ସେମାନଙ୍କ ପାଖରେ ପାରିବାରିକ ଜୀବନ ପାଇଁ ପ୍ରାୟ ସମୟ ନଥିଲା । ସେମାନଙ୍କର ପ୍ରଥମ ସନ୍ତାନ ସୁରଜ ୧୯୪୬ରେ ଜନ୍ମଲାଭ କଲା । ଯୋଶୀଙ୍କ ପରିବାର ପକ୍ଷରୁ ହଜେ ସୁନାଖଡୁ ପିଲାଟି ପାଇଁ ପଠାଯାଇଥିଲା, କିନ୍ତୁ ତାହାକୁ ପାର୍ଟି ପାଣ୍ଠି ପାଇଁ ପଠାଇ ଦିଆଗଲା । ଯୋଶୀ ନିଜେ ସମ୍ପର୍କୀୟମାନଙ୍କଠାରୁ, ବନ୍ଧୁମାନଙ୍କଠାରୁ ପାର୍ଟି ପାଣ୍ଠି ସଂଗ୍ରହ କରୁଥିଲେ ଏବଂ ନୂତନ ଭାବରେ ଜଣାଶୁଣାଙ୍କଠାରୁ ମଧ୍ୟ ସୁଯୋଗ ଦେଖି ପାଣ୍ଠି ସଂଗ୍ରହ ହେଉଥିଲା।

ଯୋଶୀ ଯେତେବେଳେ ମୋହିତ ସେନଙ୍କ ପିତାଙ୍କୁ ସାକ୍ଷାତ କଲେ, ସେମାନଙ୍କର ପ୍ରାୟ ଘଣ୍ଟାଏ କାଳ ଆଲୋଚନା ଶେଷରେ ଯୋଶୀ କହିଥିଲେ, "ନ୍ୟାୟଧୀଶ, ଆପଣ ଆମକୁ କିଛି ଦେଇନାହାନ୍ତି ।" ତତ୍‌କ୍ଷଣାତ୍ ମୋହିତଙ୍କ ପିତା ତାଙ୍କ ଟଙ୍କାଥଳି ଆଣି ଟେବୁଲ ଉପରେ

ରଖି ଦେଇଥିଲେ।[୪] ୧୯୪୭ରେ ଜୋଷୀଙ୍କର ଦ୍ୱିତୀୟ ପୁତ୍ର ଜନ୍ମ ଲାଭ କଲା । ସେ ସମୟକୁ ଜୋଷୀଙ୍କୁ ପାର୍ଟି ମଧ୍ୟରେ ଏକଘରିକିଆ କରିଦିଆଯାଇଥିଲା, କିନ୍ତୁ କଳ୍ପନା ତାଙ୍କର ଏହି ଦୁର୍ଦ୍ଦିନରେ ତାଙ୍କ ନିକଟରେ ଛିଡ଼ା ହୋଇଥିଲେ । ତାଙ୍କର ଦଳତ୍ୟାଗୀ ସ୍ୱାମୀଙ୍କୁ ପରିତ୍ୟାଗ କରିବା ପାଇଁ ପାର୍ଟି ପକ୍ଷରୁ ହେଉଥିବା ଚାପକୁ ସେ ସହ୍ୟ କରିଥିଲେ, କିନ୍ତୁ ଜୋଷୀଙ୍କ ପ୍ରତି ତାଙ୍କର ଆନୁଗତ୍ୟ ରହିଥିଲା । ଜୋଷୀ ଓ କଳ୍ପନାଙ୍କ ପାଇଁ ପାର୍ଟି ମୁଖ୍ୟ କାର୍ଯ୍ୟାଳୟରେ ରହିବା କଷ୍ଟକର ହୋଇପଡ଼ିଲା ଏବଂ ସେମାନଙ୍କୁ ସେହି ସ୍ଥାନ ଖାଲି କରିବାକୁ ହେଲା । ତାହାପରେ ସେମାନେ କଲିକତାକୁ ସ୍ଥାନ ପରିବର୍ତ୍ତନ କରି ନିଜର ଖଣ୍ଡେ ଆଶ୍ରା ପାଇବା ପାଇଁ ଖୋଜିବାକୁ ଲାଗିଲେ । ସେ କିଛିଦିନ ସୁନିଲ ଜାଣହାଙ୍କ ଘରେ ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥା ଭାବେ ସେଠାରେ ରହିବା ପରେ ଏଲଗିନ୍ ରୋଡ଼ରେ ଥିବା ପ୍ରଫେସର ସୁଶୋଭନ ସରକାରଙ୍କ ଘରେ ରହିଲେ । ଏହାର କିଛିମାସ ପରେ ଜୋଷୀଙ୍କୁ ପାର୍ଟିରୁ ସମ୍ପୂର୍ଣ୍ଣ ଭାବେ ବହିଷ୍କାର କରାଗଲା ଏବଂ ପାର୍ଟିର ସବୁ ସାଥୀ ଓ ସମର୍ଥକମାନଙ୍କୁ ଜୋଷୀଙ୍କ ସହିତ କୌଣସି ପ୍ରକାର ସମ୍ପର୍କ ନ ରଖିବାକୁ ନିର୍ଦ୍ଦେଶ ଦିଆଗଲା । ଏହାପରେ ସେ ହାଓଡ଼ାଠାରେ ଗୋଟିଏ ଭଡ଼ା ଘରେ ରହିଲେ ।

ଯେଉଁଥିପାଇଁ ସେ ଗଭୀର ଭାବରେ ଆଗ୍ରହ ରଖିଥିଲେ - ଏକ ରାଜନୈତିକ ମାର୍ଗ ଯାହା ଏକ ଜାତୀୟ ଗଣତାନ୍ତ୍ରିକ ଫ୍ରଣ୍ଟ ପ୍ରସ୍ତୁତ କରିବ, ଯାହା ଶାସକ ଜାତୀୟ ବୁର୍ଜୁଆର ବ୍ୟାପକ ନୀତି ବିରୁଦ୍ଧରେ ସଂଗ୍ରାମ କରିବା ସହିତ ତାହାର ସଠିକ୍ ମାର୍ଗ ଅର୍ଥାତ୍ ସ୍ୱାଧୀନ, ମିଳିତ, ସ୍ୱାବଲମ୍ବନଶୀଳ ଏବଂ ସାମ୍ରାଜ୍ୟବାଦ ବିରୋଧୀ ରାଷ୍ଟ୍ରସଂଘ ନିର୍ମାଣ ପାଇଁ ଏକ ଆପୋଷହୀନ ଦକ୍ଷିଣପନ୍ଥୀ ଏପରିକି ସମସ୍ତ ପ୍ରକାର ଗୁପ୍ତ ସାମ୍ପ୍ରଦାୟିକତା ବିରୁଦ୍ଧରେ ସଂଗ୍ରାମ କରିବ ଏଥିପାଇଁ ତାଙ୍କର ନିରବଚ୍ଛିନ୍ନ ସଂଗ୍ରାମ ତାଙ୍କୁ କମ୍ୟୁନିଷ୍ଟ ଆନ୍ଦୋଳନର ମୁଖ୍ୟ ସ୍ରୋତରୁ ଅଲଗା କରିଦେଲା। ସେ ଦେଶ ପାଇଁ, ଲୋକମାନଙ୍କ ପାଇଁ, ପାର୍ଟି ଓ ପାର୍ଟିର ସଭ୍ୟମାନଙ୍କ ପାଇଁ ହୃଦୟ ଓ ଆତ୍ମା ଦେଇ ନିଜକୁ ସମର୍ପିତ କରିଥିଲେ; ତେଣୁ ସେ ତାଙ୍କର ନିକଟ ଆତ୍ମୀୟ ଏବଂ ନିଜ ପରିବାର ପାଇଁ ଖୁବ୍ ଅଳ୍ପ ସମୟ ଦେଇପାରିଥିଲେ । ତାଙ୍କ ଦୁଇପୁଅ ପିତାର ସାନ୍ନିଧ ଓ ମାର୍ଗ ଦର୍ଶନ ପାଇବାରୁ ବଞ୍ଚିତ ହୋଇଥିଲେ ଯାହାକି ସେମାନେ ସେମାନଙ୍କର କୈଶୋର ଅବସ୍ଥାରେ ଆବଶ୍ୟକ କରୁଥିଲେ। ତାଙ୍କ ସ୍ତ୍ରୀ କଳ୍ପନା କେବଳ ରୋଜଗାର କରୁନଥିଲେ - ଯାହା ପାର୍ଟିର ସଦାବେଳିଆ କର୍ମୀମାନଙ୍କ ନିକଟରେ ଘଟୁଥିଲା - ବରଂ ତାଙ୍କର ବର୍ଦ୍ଧିତ ପରିବାରର ସେ ଥିଲେ ମୁଖିଆ। ସେ ଆସ୍ତେ ଆସ୍ତେ ପାର୍ଟିର ସକ୍ରିୟ କାର୍ଯ୍ୟରୁ ଦୂରେଇ ଯାଇଥିଲେ ଏବଂ ଅନ୍ୟ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ।

ଜୋଷୀଙ୍କର ସାଥୀମାନଙ୍କ ସହିତ ବ୍ୟକ୍ତିଗତ ଭାବରେ ସମ୍ପର୍କ ଥିଲା । ସେ ସେମାନଙ୍କର ବ୍ୟକ୍ତିଗତ ସମସ୍ୟା ପ୍ରତି ଯତ୍ନ ନେଉଥିଲେ । ସେ ସାଥୀମାନଙ୍କୁ ଯେଉଁମାନେ ରକ୍ଷଣଶୀଳ ପରିବାରରୁ ବାଧା ପାଉଥିଲେ ଓ ଅସୁବିଧାଜନକ ସ୍ଥିତିରେ ଥିଲେ, ସେମାନଙ୍କୁ ମାର୍ଗ ଦର୍ଶନ

୪. ମୋହିତ ସେନ, ପୃଷ୍ଠା-୨୦।

କରାଉଥିଲେ। ସେ ସେମାନଙ୍କୁ ପାରିବାରିକ ସମ୍ପର୍କ ତୁଟାଇବାକୁ ଆଦୌ କହୁନଥିଲେ ବରଂ ତା'ଭିତରେ ରହି ସଂଗ୍ରାମ କରିବାକୁ କହୁଥିଲେ । ଭାରତୀୟ ଗଣନାଟ୍ୟ ସଂଘର କର୍ମୀ ରେଖାଜୈନ ଯେକି ତାଙ୍କ ସ୍ୱାମୀ ନେମିଚାନ୍ଦ ଜୈନଙ୍କ ଦ୍ୱାରା ପାର୍ଟିର ସାଂସ୍କୃତିକ ସ୍କ୍ୱାର୍ଡ଼କୁ ଅଣାଯାଇଥିଲେ, ଉତ୍ତର ପ୍ରଦେଶର ଏକ ରକ୍ଷଣଶୀଳ ପରିବାରରୁ ଆସିଥିଲେ । ତାଙ୍କର ଶାଶୁ ବୋହୂ ନାଟଗ୍ରୁପରେ ନାଚୁ ଥିବାର ଜାଣି ଭୟଙ୍କର ରାଗିଗଲେ ଯାହାକୁ ସେ ଭାବୁଥିଲେ ପରିବାର ପାଇଁ ଅତ୍ୟନ୍ତ ଲଜ୍ଜା ଆଣିବ । ସେ ଯେତେବେଳେ ଏହା ଜୋଷୀଙ୍କ ଆଗରେ ବର୍ଣ୍ଣନା କଲେ, ସେ ତାଙ୍କୁ ଉପଦେଶ ଦେଲେ ଯେ ସେ ଧୈର୍ଯ୍ୟର ସହିତ ଶାଶୁଙ୍କୁ ମନାଇବାକୁ ଚେଷ୍ଟା କରନ୍ତୁ ଏବଂ ଦରକାର ପଡ଼ିଲେ, ତାଙ୍କ ଆଗରେ ନଇଁଯାନ୍ତୁ । ସେ ମଧ ତାଙ୍କୁ କହିଲେ ଯେ ତାଙ୍କ ଆଡୁ ତାଙ୍କ ନିକଟକୁ ଏପରି କଠୋର ଚିଠି ଲେଖିବାର କାରଣ ତାଙ୍କର ବୋହୂ ପ୍ରତି ଥିବା ସ୍ନେହ ହେତୁ ତାହା ବୁଝିବା ଦରକାର । ରେଖାଙ୍କ ପ୍ରତି ଜୋଷୀଙ୍କର ଏହି ଉପଦେଶ କାମ କଲା ଏବଂ ଭବିଷ୍ୟତରେ ସେ ତାଙ୍କ ଶାଶୁଙ୍କର ଆଦରଣୀୟା ବୋହୂ ହୋଇ ପାରିଥିଲେ ଯଦିଓ ସେ ଭାରତୀୟ ଗଣନାଟ୍ୟ ସଂଘ କାର୍ଯ୍ୟରେ ଅଂଶଗ୍ରହଣ କରୁଥିଲେ । ଜୋଷୀ ଚାହୁଁଥିଲେ ପ୍ରତ୍ୟେକ କର୍ମୀ ନିଜ ନିଜ କାର୍ଯ୍ୟକ୍ଷେତ୍ରରେ ଅତ୍ୟଧିକ ସଫଳତା ପାଆନ୍ତୁ । ତାହା ଅନ୍ୟମାନଙ୍କୁ ସେହି ବ୍ୟକ୍ତି ନିକଟକୁ ଆକର୍ଷିତ କରିବ ଏବଂ ତାଙ୍କୁ ପାର୍ଟି କାର୍ଯ୍ୟରେ ଦେଶ ଓ ସମାଜ କାର୍ଯ୍ୟରେ ଯୋଗ ଦେବାପାଇଁ ଆକର୍ଷିତ କରିବ। ଜୋଷୀଙ୍କର ଯେକୌଣସି ବ୍ୟକ୍ତିର ଗୁଣ ଓ ଦକ୍ଷତାକୁ ଆକଳନ କରିବାର ଅସାଧାରଣ ଦକ୍ଷତା ଥିଲା ଏବଂ ସେହି ଭାବରେ ସେ ତାଙ୍କୁ – ପୁରୁଷ ବା ସ୍ତ୍ରୀ ଯେ ହେଉ ତାଙ୍କର ସୃଷ୍ଟିଶୀଳ କାର୍ଯ୍ୟ କରିବାକୁ ପ୍ରୋତ୍ସାହିତ କରୁଥିଲେ ।

> "ଏପରିକି କୌଣସି ପାର୍ଟି କର୍ମୀ କିମ୍ବା ସମର୍ଥକଙ୍କର କ୍ଷଣିକ ସାକ୍ଷାତ୍ ତାଙ୍କର ହୃଦୟ ଓ ମନର ଗୁଣ ଜାଣିବା ତାଙ୍କ ପାଇଁ ଯଥେଷ୍ଟ ଥିଲା ଏବଂ ସେମାନଙ୍କୁ କେଉଁପରି ଭାବରେ ବ୍ୟବହାର କରାଯାଇ ପାରିବ, ତାହା ସେ ଜାଣିପାରୁଥିଲେ । ସେ ମୁହୂର୍ତ୍ତକ ମଧରେ ସେମାନଙ୍କର ଶ୍ରଦ୍ଧା ପାଉଥିଲେ ଏବଂ ଯାହାକୁ ଭେଟୁଥିଲେ, ତାକୁ ଆପଣାର କରୁଥିଲେ। ତାଙ୍କର ହୃଦୟ ଓ ମସ୍ତିଷ୍କର ଏହି ଗୁଣ ଯୋଗୁଁ ସେ ସିପିଆଇକୁ ଭାରତର ସାଂସ୍କୃତିକ ନବଜାଗରଣର ପ୍ରବର୍ତ୍ତକ କରିପାରିଥିଲେ ।"[୫]

ତାଙ୍କର ଦୈନନ୍ଦିନ ପ୍ରୋତ୍ସାହନ ଫଳରେ ସେ ପାର୍ଟି ସାଥୀମାନଙ୍କୁ ନିଜର ଲୁକ୍କାୟିତ ପ୍ରତିଭା ଓ ବିକାଶରେ ସାହାଯ୍ୟ କରିଥିଲେ । ସେଇଥିପାଇଁ, ଏଥିରେ କୌଣସି ଆଶ୍ଚର୍ଯ୍ୟ ହେବାର ନାହିଁ ଯେ ଜୋଷୀଙ୍କ ସମୟରେ ପାର୍ଟି ଅନେକ ଫଟୋଗ୍ରାଫର, ନର୍ତ୍ତକୀ, ଶିଳ୍ପୀ, ଲେଖକ ଓ ସାମ୍ବାଦିକମାନଙ୍କୁ ପ୍ରୋତ୍ସାହିତ କରି ବିକଶିତ କରି ପାରିଥିଲା । ପାର୍ଟି ପତ୍ରିକା ଯଥା- ପିପୁଲ୍‌ସ ଏଜ୍ ଏବଂ ପିପୁଲ୍‌ସ ୱାର୍ ଚାଳିଶ ଦଶକରେ ସୃଷ୍ଟିଶୀଳ କାର୍ଯ୍ୟର ଗନ୍ତାଘର ଥିଲା – ହୁଏତ ଏହା

---

୫. ଗଣେଶ ଶୁକ୍ଳା, ପୃଷ୍ଠା-୯୩।

କାର୍ଟୁନ୍, ରେଖାଚିତ୍ର, ଫଟୋ, ଲୋକଙ୍କ ଜୀବନ ସମ୍ବନ୍ଧୀୟ ଟିପ୍ପଣୀ କିମ୍ବା ସଂଗ୍ରାମ ହୋଇଥାଇପାରେ । ଯେଉଁ କାର୍ଯ୍ୟ ସେ କରୁଥିଲେ ସେଥିରେ ଜୋଷୀ ଥିଲେ ପରାକାଷ୍ଠାସିଦ୍ଧ ଏବଂ ଶ୍ରେଷ୍ଠ ପେଶାଦାର ଏବଂ ତାହା ସେ ତାଙ୍କର ସହଯାତ୍ରୀମାନଙ୍କଠାରୁ ଆଶା କରୁଥିଲେ।

ଜୋଷୀଙ୍କର ବ୍ୟକ୍ତିଗତ ବ୍ୟବହାର ଏକତ୍ର ସହାବସ୍ଥାନ ମଧ୍ୟରେ ଏକ ପାରିବାରିକ ଅନୁଭୂତି ସୃଷ୍ଟି କରିଥିଲା । ସମସ୍ତେ ଏକାଠି ମିଶି ଭୋଜନ କରିବା, ବାସନକୁସନ ଧୋଇବା ଇତ୍ୟାଦି। ଜୋଷୀ ସେହି ଜୀବନର ଏକ ଅଂଶ ହୋଇଥିଲେ । ସେ ସାଥୀମାନଙ୍କ ସହିତ ମିଶି ଇଂରାଜୀ, ହିନ୍ଦୀ, ଉର୍ଦ୍ଦୁ ପତ୍ରିକା ବମ୍ବେର ରାସ୍ତାରେ ବିକ୍ରି କରୁଥିଲେ । ଏହା ତାଙ୍କୁ ପାର୍ଟି କର୍ମୀଙ୍କର ନିକଟବର୍ତ୍ତୀ କରିଥିଲା । ବର୍ତ୍ତମାନ ମଧ୍ୟ ଯେଉଁମାନେ ବଞ୍ଚିଛନ୍ତି, ସେମାନେ ସେହି ଦିନଗୁଡ଼ିକୁ ଏକ ପ୍ରଶଂସନୀୟ ଅନୁଭବର ସହିତ ମନେପକାନ୍ତି ।

ତାଙ୍କ ପରି ପ୍ରତିଷ୍ଠା ସମ୍ପନ୍ନ ନେତାଙ୍କ ନିକଟରେ ଦୟା ଓ କରୁଣା ଏକ ଅସାମାନ୍ୟ ଗୁଣ । ପାର୍ଟିର ପୁରୁଣା ସହଯୋଗୀ, ସୁବ୍ରତ ବାନାର୍ଜୀ ବମ୍ବେର ପାର୍ଟି ମୁଖ୍ୟ କାର୍ଯ୍ୟାଳୟରେ ଥିବା ସମୟରେ ଏକ ବିଶେଷ ସନ୍ଧ୍ୟା ସମୟର କଥା ମନେ ପକାନ୍ତି,

> "ମୋତେ ଜ୍ୱର ହୋଇଥାଏ । ମୁଁ ଅସୁସ୍ଥ ଗୃହରେ ଥିବା ବିଛଣାରେ ଶୋଇଥାଏ। ଜୋଷୀ କୋଠରୀ ବାହାରେ ଏପାଖ ସେପାଖ ଚାଲୁଥାନ୍ତି, ତାଙ୍କ ଆଙ୍ଗୁଳି ସାହାଯ୍ୟରେ ବିଭିନ୍ନ ପ୍ରକାର ସଂକେତ କରୁଥାନ୍ତି, ଯାହା ସେ ଗଭୀର ଚିନ୍ତା ମଧ୍ୟରେ କରିଥାନ୍ତି। ହଠାତ୍ ତାଙ୍କ ଆଖି ମୋ ଉପରେ ପଡ଼ିଲା । ସେ ତାଙ୍କର ସମସ୍ତ ଚିନ୍ତାକୁ ଅଲଗା ରଖି ମୋ ପାଖରେ ଆସି ବସିଲେ। ତାଙ୍କର ହାତ ପାପୁଲି ମୋ ମଥାରେ ରଖି ଉତ୍ତାପ କେତେ ମାପିଲେ ଏବଂ କିଛି ସମୟ ପରେ କହିଲେ, 'ମାନସିକ ଏକଲା ଅନୁଭବ କରୁଛ କି ? କିନ୍ତୁ ଆମେ ତୁମ ପାଖରେ ଅଛୁ । ଏହା ମଧ୍ୟ ତୁମର ପରିବାର ଏବଂ ଆମେ ସବୁ ତାହାର ଅଂଶବିଶେଷ ।' ସେହି ସନ୍ଧ୍ୟାରେ ଏହି ପଦକ କଥା ମୋ ପାଇଁ ଥିଲା ଅତ୍ୟନ୍ତ ଆରାମପ୍ରଦ ।"

ଜୋଷୀ ମହିଳା ସାଥୀମାନଙ୍କ ପ୍ରତି ଥିଲେ ଅତ୍ୟନ୍ତ ବିଚାରଶୀଳ । ସେ ସେମାନେ ରୋଷେଇ ଘରେ ସମୟ କାଟନ୍ତୁ ଆଦୌ ଚାହୁଁ ନଥିଲେ। ଏଲାହାବାଦ ସମୟ ସମ୍ପର୍କରେ ମନେପକାଇ ରେଖା ଜୈନ ଲେଖିଛନ୍ତି ଯେ ଥରେ ସେ ଜୋଷୀଙ୍କ ପାଇଁ ତିନି ଚାରି ପ୍ରକାର ରାନ୍ଧିଥିଲେ । ସେହି ଖାଦ୍ୟକୁ ଦେଖି ସେ ତାଙ୍କୁ ଏତେ ସମୟ ରୋଷେଇ କରିବାରେ ନଷ୍ଟ ନ କରି ବରଂ ଗୋଟିଏ ପାତ୍ରରେ ସବୁ ରଖି ଗରମ କରିବାକୁ କହିଥିଲେ। ସରଳଜୀବନ ସମ୍ପର୍କରେ ଏହି ଦୃଷ୍ଟିକୋଣ ଏବଂ କାର୍ଯ୍ୟ ପ୍ରତି ପ୍ରାଥମିକ ଗୁରୁତ୍ୱ ରେଖାଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା।[୬] ଜଣେ ସାଧାରଣ ସାଥୀଙ୍କର ସ୍ତ୍ରୀ ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ଏକଥା ମନେ ରଖିଥିଲେ ଯେ

୬. ରେଖା ଜୈନ, "ସ୍ମୃତି ଚାରଣ", "କଥାଦେଶ", ଡିସେମ୍ବର ୨୦୦୬, ପୃଷ୍ଠା-୧୬।

ଜୋଷୀ ହେଉଛନ୍ତି ସ୍ୱଳ୍ପସଂଖ୍ୟକ ନେତାମାନଙ୍କ ମଧ୍ୟରୁ ଜଣେ ଯେ ତାଙ୍କୁ ଆଦୌ ବିରକ୍ତ କରୁନଥିଲେ ଯଦିଓ ରାତ୍ରିର ବିଳମ୍ବିତ ପ୍ରହରରେ ସେ ଆସୁଥିଲେ। ସେ ପକେଟ୍‌ରେ ଚୁଡ଼ା ଭର୍ତ୍ତିକରି ନେଉଥିଲେ, ତାକୁ ନିଜେ ଧୋଉଥିଲେ ଏବଂ ଖାଉଥିଲେ। ଘରର ସ୍ତ୍ରୀ ଲୋକମାନଙ୍କୁ ପୁଣି ରୋଷେଇ କରିବାକୁ ଅନୁମତି ଦେଉନଥିଲେ । ଏହି ପ୍ରକାର ବିଚାରବୋଧ ମହିଳା ଓ ସାଥୀମାନଙ୍କର ସ୍ତ୍ରୀମାନଙ୍କ ପ୍ରତି କ୍ୱଚିତ ନେତାମାନଙ୍କ ପାଖରେ ଦେଖାଯାଏ ଯେଉଁମାନେ ସାଧାରଣତଃ ସାଥୀମାନେ ନେତାମାନଙ୍କର ଦେଖାଶୁଣା କରନ୍ତୁ ବୋଲି ଆଶା ରଖନ୍ତି।

ସେ ଷାଠିଏ ବର୍ଷ ପରେ ୧୨ ମୀନାବାଗରେ ରହୁଥିଲେ, ଯେତେବେଳେ କଳ୍ପନା ଇଣ୍ଡିଆନ୍ ଷ୍ଟାଟିସ୍‌ଟିକାଲ ଇନ୍‌ଷ୍ଟିଚ୍ୟୁଟ୍‌ରେ ନୂଆ ଦିଲ୍ଲୀରେ କାର୍ଯ୍ୟ କରୁଥିଲେ। କଳ୍ପନା ତାଙ୍କର ପିଲାମାନଙ୍କର ସୁରକ୍ଷା ପ୍ରତି ଅତ୍ୟଧିକ ଯତ୍ନଶୀଳ ଥିଲେ ଏବଂ ଜୋଷୀ ମଧ୍ୟ ସେମାନଙ୍କର ଯତ୍ନ ନେବାରେ ଥିଲେ କଠୋର। ବହୁ ସମୟରେ ଦ୍ୱନ୍ଦ୍ୱ ଓ ଉତ୍ତେଜନାର ଘଟଣାମାନ ଘଟୁଥିଲା କାରଣ କଳ୍ପନା ମଧ୍ୟ ଥିଲେ ସମାନ ଭାବରେ ଅତ୍ୟନ୍ତ ବଳିଷ୍ଠ ବ୍ୟକ୍ତିତ୍ୱ । ମୀନାବାଗରୁ ଜୋଷୀ ଆର୍-୧୨, ହଜଖାସ୍‌ର ବସସାଡିରେ ଏକ ଭଡ଼ାଘରକୁ ଗଲେ ଏବଂ ୧୯୭୫ ପରେ ଜେଏନ୍‌ୟୁର ୨୭, ଦକ୍ଷିଣପୁରମ୍‌ରେ ରହିଲେ। ୧୯୭୩ ନଭେମ୍ବର ୧୭ ତାରିଖରେ ଜୋଷୀ ଈଶ୍ୱର ଭଟ୍ଟଙ୍କୁ ଏକ ପତ୍ର ଲେଖିଥିଲେ, "ମୋର ପରିବାର ଠିକ୍ ଅଛନ୍ତି, କିନ୍ତୁ ସମସ୍ତେ ନିଜ ନିଜ ଜୀବନ ବଞ୍ଚୁଛନ୍ତି। ମୁଁ ଅଯୋଗ୍ୟ, ମୁଁ ମୋର ଏକତ୍ର ସହବାସସ୍ଥାନ ଅଭ୍ୟାସରୁ ମୁକୁଳି ପାରିବି ନାହିଁ।"

ତାଙ୍କର ହୃଦରୋଗ ତାଙ୍କ ଜୀବନକୁ ସଂକ୍ଷିପ୍ତ କରିଦେଲା । ଷାଠିଏ ବର୍ଷ ପରଠାରୁ ଜୋଷୀ ଅନେକ ଥର ହୃଦ୍‌ରୋଗରେ ଆକ୍ରାନ୍ତ ହେଲେ । ୧୯୭୫ରେ ତାଙ୍କର ଆଉ ଏକ ହୃଦ୍‌ଘାତ ହେଲା ଏବଂ ତାଙ୍କୁ ନୂଆ ଦିଲ୍ଲୀରେ ଥିବା ଅଲ୍ ଇଣ୍ଡିଆ ଇନଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍ସରେ ଭର୍ତ୍ତି କରାଗଲା । ସେ ସେଠାରେ ସେପ୍ଟେମ୍ବର ମାସ ତମାମ ରହିଲେ । ପରେ ସେହି ବର୍ଷ ତାଙ୍କୁ ଚିକିତ୍ସା ପାଇଁ ମସ୍କୋ ପଠାଗଲା, କିନ୍ତୁ ଏହା କୌଣସି କାମରେ ଆସିଲା ନାହିଁ। ସେ ଠିକ୍‌ଭାବରେ ନିଜକୁ ପ୍ରକାଶ କରିପାରିଲେ ନାହିଁ, କିନ୍ତୁ ତାଙ୍କ ଚକ୍ଷୁ କହୁଥିଲା, ତାଙ୍କ ମୁଖମଣ୍ଡଳରେ ବିଷାଦର ଛାୟା ଘୋଟିଥିଲା । ସେ ସଦାସର୍ବଦା ବଞ୍ଚିବାକୁ ଚାହୁଁଥିଲେ ଏବଂ ଲୋକମାନଙ୍କ ପାଇଁ ବହୁତ କାମ କରିବାକୁ ଇଚ୍ଛା କରୁଥିଲେ । ୧୯୭୮ ଭାତିଣ୍ଡା ଠାରେ ପାର୍ଟି କଂଗ୍ରେସରେ ତାଙ୍କର ଶେଷ ଯୋଗଦାନ ଥିଲା । ତାଙ୍କୁ ସେଠାକୁ ଗୋଟିଏ ଘୁରା ଚେୟାରରେ ଅଣାଯାଇଥିଲା। ତାଙ୍କୁ ଦେଖିବା ମାତ୍ରେ ସାଥୀମାନେ ଉଲ୍ଲସିତ ହୋଇଥିଲେ ଏବଂ ତାଙ୍କୁ ମଞ୍ଚ ଉପରକୁ ଆଣିଥିଲେ।

ଜେଏନ୍‌ୟୁର ଦକ୍ଷିଣପୁରମ୍‌ଠାରେ ସେ ତାଙ୍କର ଶେଷଜୀବନ କଟାଇଥିଲେ। ତାଙ୍କୁ ସାକ୍ଷାତ କରିବାକୁ କେହି ଗଲେ, ସେ ଖୁସି ହେଉଥିଲେ । ରାଜନୈତିକ ବିରୋଧୀଙ୍କ ପ୍ରତି ତାଙ୍କର ସଦିଚ୍ଛାରୁ ତାଙ୍କର ମହନୀୟତା ଜଣାପଡ଼େ । ସେ ଅତୀତକୁ ଭୁଲିଯାଇ କ୍ଷମା କରିଦେଇଥିଲେ। ୧୯୮୦ ନଭେମ୍ବର ୯ ତାରିଖରେ ୭୩ ବର୍ଷ ବୟସରେ ସେ ମୃତ୍ୟୁବରଣ କଲେ। ତାଙ୍କର ଅନେକ କାର୍ଯ୍ୟ ଏପରିକି ବାମପନ୍ଥୀ ଆନ୍ଦୋଳନ ସମ୍ପର୍କରେ ତଥ୍ୟ ସଂଗ୍ରହ

ଅସମ୍ପୂର୍ଣ୍ଣ ରହିଗଲା । ଅଲମୋଡ଼ାଠାରେ ହିମାଳୟାନ୍ ସମାଜବାଦୀ ଆଶ୍ରମ ଅପୂରଣୀୟ ରହିଲା । ତାଙ୍କର ଶେଷଦିନରେ ସେ ତାଙ୍କର ମୂଳ ସ୍ଥାନକୁ ଫେରିଆସି କାର୍ଯ୍ୟ କରିବାକୁ ଚାହିଁଥିଲେ । ତାହା ଘଟି ନ ଥିଲା ।

ତାଙ୍କର ନିଷ୍ପାପ ପହାରି ହସ ପ୍ରତ୍ୟେକଙ୍କ ସ୍ମୃତିରେ ଚିରଦନ ଲାଖି ରହିଥିବ । ଆମ ରାଷ୍ଟ୍ରର ଇତିହାସରେ ସେ ଜଣେ ଅନନ୍ୟ ପ୍ରକାର କମ୍ୟୁନିଷ୍ଟ ଦେଶପ୍ରେମୀ ଭାବରେ ମନେ ରହିବେ ।

Printed at: Rakino Press Pvt. Ltd. C-59 Okhla Phase-1, New Delhi-110020



ଏହି ପୁସ୍ତକଟି ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ ଏବଂ ଅଗ୍ରଣୀ ସାମ୍ୟବାଦୀ ନେତା ପି.ସି.ଯୋଶୀଙ୍କ ଜୀବନ ସଂପର୍କରେ ଯେପରି ବିଶ୍ଳେଷଣାତ୍ମକ, ସେପରି ଭାରତରେ ସାମ୍ୟବାଦୀ ଆନ୍ଦୋଳନର ଅଗ୍ରଗମନ, କମ୍ୟୁନିଷ୍ଟ ପାର୍ଟି ଗଠନ ଓ ବିକାଶ ସହିତ ସଂଶ୍ଳିଷ୍ଟ ସଂକଟ ଉପରେ ଆଧାରିତ । ତିରିଶ ଓ ଚାଳିଶ ଦଶକରେ ଏହି ଦୂରଦୃଷ୍ଟିସଂପନ୍ନ ନେତାଙ୍କର ଅନବରତ ପ୍ରଚେଷ୍ଟା କିପରି ବିଭିନ୍ନ ରାଜନୈତିକ ସ୍ରୋତର ପ୍ରଗତିଶୀଳ ଓ ଧର୍ମନିରପେକ୍ଷ ବ୍ୟକ୍ତିମାନଙ୍କୁ ଏକ ସାଧାରଣ ଭୂମିକୁ ଆଣି ଉଭୟ ସାମ୍ରାଜ୍ୟବାଦୀ ତଥା ସାମ୍ପ୍ରଦାୟିକ ଓ ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କ ବିରୋଧରେ ସଂଗ୍ରାମ କରିଛି, ପୁସ୍ତକଟିରେ ତାହାହିଁ ବିଶେଷ ଭାବେ ଆଲୋଚିତ ହୋଇଛି । ସମଭାବାପନ୍ନ ରାଜନୈତିକ ଦଳଗୁଡ଼ିକ ସହଯୋଗରେ ନୂତନ ସ୍ୱାଧୀନ ରାଷ୍ଟ୍ର ନିର୍ମାଣ ଓ ସ୍ୱାଧୀନତାର ସୁରକ୍ଷା ପରି ଯୋଶୀଙ୍କ ବିଚାର, ଯାହା ୧୯୪୮ରେ ଗ୍ରହଣୀୟ ହୋଇନାହିଁ, ସାଂପ୍ରତିକ ଭାରତ ପାଇଁ ତାହାର ପ୍ରାସଙ୍ଗିକତା ତାଙ୍କ ରାଜନୈତିକ, ସାଂସ୍କୃତିକ ଓ ସାମାଜିକ ଦୂରଦୃଷ୍ଟିକୁ ପ୍ରମାଣିତ କରୁଛି । ତାଙ୍କର ଜନ୍ମ ଶତବାର୍ଷିକୀ ପାଳନ କରିବା ଅବସରରେ ବିଶେଷ ଭାବରେ ପ୍ରକାଶିତ ହୋଇଥିବା ଏହି ପୁସ୍ତକରେ ତାଙ୍କ ବହୁମୁଖୀ ବ୍ୟକ୍ତିତ୍ୱ ଓ ଭାରତରେ କମ୍ୟୁନିଷ୍ଟ ଆନ୍ଦୋଳନର ସଠିକ ଐତିହାସିକ ଭୂମିକା ରୂପାୟିତ ହୋଇଛି ।

ଗାର୍ଗୀ ଚକ୍ରବର୍ତ୍ତୀ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ମୈତ୍ରେୟୀ କଲେଜରେ ଇତିହାସ ଅଧ୍ୟାପିକା ଭାବେ କାର୍ଯ୍ୟ କରୁଛନ୍ତି । 'Gandhi : A Challenge to Communalism (୧୯୮୭) ଓ 'Coming out of Partition : Refugee Women of Bengal'(୨୦୦୫) ତାଙ୍କର ଦୁଇଟି ଉଲ୍ଲେଖଯୋଗ୍ୟ ପୁସ୍ତକ । ଅନୁବାଦକ ଶ୍ରୀ ସୌରୀବଂଧୁ କର ଓଡ଼ିଆ ଭାଷାରେ ଜଣେ ବିଶିଷ୍ଟ ଗଳ୍ପକାର ଓ ପ୍ରାବନ୍ଧିକ ଭାବେ ସୁପରିଚିତ ।



ଟ.50.00

ISBN 978-81-237-5590-8

ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ